# ମୋ ଗାଁ, ମୋ ମାଟି



ଡ଼. ବାସୁଦେବ ସାହୁ

ମୋ ଗାଁ, ମୋ ମାଟି

ଲେଖକ:
ଡ. ବାସୁଦେବ ସାହୁ

ପ୍ରକାଶକ :
ଡ. ବାସୁଦେବ ସାହୁ
ଏ/ଏମ୍, ୩୯, କପିଳପ୍ରସାଦ
ଭୁବନେଶ୍ୱର-୨

ପ୍ରଚ୍ଛଦ :
ଡଃ. ଦିନନାଥ ପାଠୀ

ମୁଦ୍ରଣ :
ଡୁଡୁଲି ପ୍ରୋସେସ୍ ଆଣ୍ଡ ଅଫ୍‌ସେଟ୍
୨୩୧, ବାପୁଜୀ ନଗର,
ଭୁବନେଶ୍ୱର

ଅକ୍ଷରସଜ୍ଜା:
ଚିତ୍ତରଞ୍ଜନ ଶତପଥୀ
୮୦ - ଖାରବେଳନଗର,
ଭୁବନେଶ୍ୱର

ପ୍ରଥମ ପ୍ରକାଶ :୨୦୦୬

ମୂଲ୍ୟ : ୫୦.୦୦

MO GAAN MO MATI

AUTHOR :
Dr. Basudeb Sahoo

PUBLISHED BY :
Dr. Basudeb Sahoo
A/M- 39, Kapilaprasad
Bhubaneswar -2

COVER DESIGN :
Dr. Dinanath Pathy

PRINTED AT :
Duduly Process & Offset,
231, Bapuji Nagar,
Bhubaneswar

D.T.P :
Chita Ranjan Satapathy
80, Kharavela Nagar,
Bhubaneswar

FIRST EDITION : 2006

PRICE : Rs. 50.00

## ଗାଁ ଲୋକଙ୍କୁ

ଯେଉଁମାନଙ୍କ ଅକୃତ୍ରିମ ସ୍ନେହ, ଶ୍ରଦ୍ଧା

ମୋତେ ଭାବବିହ୍ୱଳ କରେ ।

॥ ବାପୁ ॥

# ମୋ ଗାଁ, ମୋ ମାଟି

ଗାଁ ରୁ ଚିଠି ପାଇଲି, ପୁତୁରା ଲେଖିଛି; ତା ବୋଉର ଦେହ ଭୀଷଣ ଖରାପ, ତା ବୋଉ ଅର୍ଥାତ୍ ମୋ ନୂଆବୋଉ ତା ଆଦରର ଦିଅର 'ବାସୁ'କୁ ଦେଖିବାକୁ ଚାହୁଁଛି। ମୋ ସ୍ତ୍ରୀ, ତାର ଗେହ୍ଲା ଛୁଆବୋଉକୁ ସଙ୍ଗରେ ନେଇ ଗାଁକୁ ଯିବାକୁ ହେବ। ଏହି ରକମ ଏକ ଡାକରାରେ ୪/୫ ବର୍ଷ ତଳେ ଗାଁକୁ ଧାଇଁଥିଲି। ଚିରବିଦାୟ ଦେଇଆସିଥିଲି ଭାଉଜଙ୍କି। ମନରେ ଛନକା ପଶିଗଲା, ଏଥର ନୂଆବୋଉଙ୍କ ପାଳି କି ? ଅତି ଭାବନା-ବ୍ୟଥିତ ଚିତ୍ତରେ ମୁଁ ଓ ମୋର ସ୍ତ୍ରୀ ଗାଁକୁ ଗଲୁ। ଗାଁଟି ମୋର ଅତିପ୍ରିୟ ସ୍ଥଳୀ। ଏହାକୁ ଏକ ଉନ୍ନତ ଆଦର୍ଶ ସ୍ଥାନ କରିବା ପାଇଁ ପିଲାଟିବେଳୁ ମୋର ସ୍ୱପ୍ନ ଥିଲା। ବୟସ ବଢ଼ିବା ସଙ୍ଗେ ସଙ୍ଗେ ଗାଁ ସ୍କୁଲ ପାଠ ସାରି ଭଦ୍ରକ ହାଇସ୍କୁଲ ଓ କୋଲକାତା କଲେଜରେ ପଢ଼ିଲି। ସ୍ୱପ୍ନ ମୋର ଗାଁ ମାଟିରୁ ସାରା ରାଜ୍ୟକୁ ସଞ୍ଚରି ଯାଇଥିଲା, ନିଷ୍ଠୁର ବାସ୍ତବତା ଓ ମୋର ଅକ୍ଷମତା ମୋର ସ୍ୱପ୍ନ ଚରିତାର୍ଥ ହେବା ପଥରେ ଅନ୍ତରାୟ ହୋଇଛି। ଜୀବନରେ ରହିଗଲା ଏକ ଅବଶୋଷ। ମରିବା ପୂର୍ବରୁ ମୋ ରାଜ୍ୟକୁ ଉଦ୍ଦାମ ଯୌବନର ସ୍ୱପ୍ନିଳ ରାଜ୍ୟ ରୂପେ ଦେଖି ଯାଇପାରିବି ନାହିଁ। ତେବେ ଗାଁର ମମତା, ରାଜ୍ୟ ଓ ମାତୃଭାଷା ପ୍ରତି ମୋର ଗଭୀର ଅନୁରକ୍ତି ମୁଁ ହରେଇ ନାହିଁ। ଏବେ ମଧ୍ୟ ସହରରେ ରହି ଗାଁ କଥା ଶୁଣିଲେ ବା ଗାଁ ଲୋକଙ୍କୁ ଭେଟିଲେ ମୋ ଦେହରେ ଏକ ଅନାବିଳ ଶିଶୁସୁଲଭ ଆନନ୍ଦ ଖେଳିଯାଏ। ସଚ୍ଚି ରାଉତରାୟଙ୍କ ଲଳିତ ପଦଟି ଗୁଞ୍ଜରି ଉଠେ: 'ଛୋଟ ମୋର ଗାଆଁଟି, ଭୂଗୋଳ ପୋଥି ପଛେ ତାର ନ ଥାଉ ତା'ର ନାଆଁଟି' - ସେହି ଅନାମିକା ଗାଆଁ ଭଦ୍ରକ ଠାରୁ ପ୍ରାୟ ୨୦ ମାଇଲ ଦୂରରେ ଆଖମଣ୍ଡଳମଣି ରାସ୍ତାରେ ଗଲେ ପଡ଼େ। ବେଶ୍ ଜଣାଶୁଣା। ଧୁଷୁରୀହାଟଠାରୁ ଦେଢ଼ ମାଇଲ ଦୂର। ଗାଁରେ ପହଞ୍ଚି ନୂଆବୋଉଙ୍କୁ ଜୁହାର ହେଲି। ଦାଣ୍ଡପିଣ୍ଡାରେ ସେ ବସିଥିଲେ। ତାଙ୍କର ସ୍ମୃତିଶକ୍ତି କମିଆସିଲାଣି। ବେଳେ ବେଳେ ଅନ୍ୟକୁ ଚିହ୍ନିପାରୁ ନାହାନ୍ତି। ତେବେ ମୋତେ ଓ ତାଙ୍କର ଛୁଆବୋଉକୁ ଭଲଭାବରେ ଚିହ୍ନିପାରିଲେ। ଖୁସିରେ ଆମ ଦେହରେ ହାତ ବୁଲେଇ ଆଣିଲେ। ମୁଁ ପିଲାଟିଏ ହୋଇଥିଲି। ସୁନ୍ଦରୀ ସ୍ୱାସ୍ଥ୍ୟବତୀ ତରୁଣୀଟି ଆସିଥିଲା ଆମ ଘରକୁ। କେଉଁ ଏକ ଦୁର୍ବାର ଆକର୍ଷଣରେ ସେହି ତରୁଣୀ-ନବବଧୂ ପାଖକୁ ଆଉଜି ପଡୁଥିଲି। ଭାଇ କୋଲକାତାର ବ୍ୟବସାୟରେ ରହିଲାବେଳେ ମୁଁ ତାଙ୍କ ପାଖରେ ମା ପାଖରେ ପୁଅ ଭଳି ଆହ୍ଲାଦ ପାଇ ଶୋଇପଡୁଥିଲି। ସେହି ନୂଆବୋଉ ୧୦ଟି ସନ୍ତାନର ଜନନୀ। ଏବେ କ୍ଷୀଣ

ଦୁର୍ବଳା ଯେଉଁ ଦାଣ୍ଡପିଣ୍ଡାରେ ବସି ସେ ଗେହ୍ଲା ଗଉଡୁଣୀ ଠାରୁ ପ୍ରତିଦିନ ଛେନା ଦହି ମୁଆଁ ଲଡୁ କିଣି ଖାଉଥିଲେ, ସେହି ପିଣ୍ଡାରେ ବସି ସେ ଅନାଗତ କାଳକୁ ଅପେକ୍ଷା କରିଛନ୍ତି। ଦାଣ୍ଡରେ ଯାଉଥିବା ଲୋକଙ୍କ ପାଦଶବ୍ଦ ଓ ପିଲାଙ୍କ କୋଳାହଳ ଶୁଣି ପୂର୍ବାହ୍ଣର ସୂର୍ଯ୍ୟକିରଣ ପାଇ ଜୀଇ ରହିଛନ୍ତି ବୋଲି ଅନୁଭବ କରୁଛନ୍ତି। ତାଙ୍କର ଏ ପରିବର୍ତ୍ତିତ ରୂପ ଦେଖି ମନରେ ଆସିଲା ବ୍ୟଥା। ମନେପଡ଼ିଗଲା କେତେବର୍ଷ ତଳେ ତାଙ୍କ ପାଇଁ ଲେଖିଥିବା କବିତା ପଡ୍‌କ୍ତି କେତୋଟି - 'ଯେତେ ଦୂରେ ରହିଲେ ବି ମନେହୁଏ, ଅଛ ପାଶେ ମୋର।' ବାଡ଼ି ପିଜୁଳି ଗଛରୁ ବନିଲା ବନିଲା ପିଜୁଳି ତୋଳି ତାଙ୍କର ପଣତ କାନିକୁ ପିଲାବେଳେ ଗଛଡାଳ ଉପରୁ ଫିଙ୍ଗୁଥିବା ଦୃଶ୍ୟ ଆଖି ଆଗରେ ଭାସିଉଠିଲା। ଆଖି ମୋର ଛଳ ଛଳ ହୋଇଗଲା।

ଜୀବନର ଅବଶ୍ୟମ୍ଭାବୀ ଚିନ୍ତାରେ ଘରେ ଜିନିଷପତ୍ର ରଖିଦେଇ ଛୁଟିଲି ଗାଁ ହାଇସ୍କୁଲକୁ ନୂତନ ଗୃହ ଦେଖିବା ପାଇଁ। ଅଘୋଷିତ ଭାବେ ମୋ ପହଞ୍ଚିବା ସ୍କୁଲର ଶିକ୍ଷକମାନଙ୍କୁ ଆନନ୍ଦ-ବିସ୍ମିତ କରିଦେଲା। ଆଦରରେ ମୋତେ ଚା, ବିସ୍କୁଟ ଖୁଆଇଲେ। କେନ୍ଦ୍ର ସରକାରଙ୍କ ସାହାଯ୍ୟରେ ଗୋଟିଏ ସ୍କୁଲ ଏବଂ ବନ୍ୟା ବାତ୍ୟା- ଆଶ୍ରୟ ଗୃହ ନିର୍ମାଣ ହେଉଛି। ସ୍କୁଲର ପ୍ରଧାନଶିକ୍ଷକ ବେଶ୍ ଦକ୍ଷ ଯୁବକଟିଏ, ପାଠରେ ଏବଂ ଉନ୍ନୟନ କର୍ମରେ। ତାଙ୍କୁ ନିଯୁକ୍ତି ଦେବାରେ ଥିବା ମୋର ବିଜ୍ଞତାରେ ମୁଁ ଆତ୍ମସନ୍ତୋଷ ଲାଭ କଲି। ସ୍କୁଲରେ ପ୍ରତ୍ୟେକ ବର୍ଷ ଏକ ସାଂସ୍କୃତିକ ଉତ୍ସବ ପାଳନ କରିବାକୁ ପରାମର୍ଶ ଦେଲି। ସେମାନଙ୍କ ପ୍ରତିଶ୍ରୁତି ମୋତେ ଆନନ୍ଦ ଦେଲା।

ଅପରାହ୍ଣରେ ଗ୍ରାମ ପରିକ୍ରମାରେ ବାହାରି ପଡ଼ିଲି। ଗାଁରେ ଅଳ୍ପ କେତେଜଣ ମୋର ସାଙ୍ଗ ଓ ମୋ ବୟସର ଲୋକ ଜୀବିତ ଅଛନ୍ତି। ଅଭାବ ଏବଂ ପରିବାରର ଜଞ୍ଜାଳ, ଚିକିତ୍ସାର ଅଭାବ ଅପେକ୍ଷାକୃତ ଅଳ୍ପ ବୟସରେ ସେମାନଙ୍କୁ ଇହଧାମରୁ ବିତାଡ଼ିତ କରିଦେଉଛି। ଯେଉଁ କେତେଜଣ ପିଲାଦିନର ସାଥୀଙ୍କୁ ଭେଟିଲି, ସେମାନେ ଅପେକ୍ଷାକୃତ ସ୍ୱଚ୍ଛଳ, ସୁସ୍ଥ ଅଛନ୍ତି। ସେମାନେ ମୋତେ ଗାଁରେ ପାଇ ବେଶ୍ ଖୁସିହେଲେ। ମୁଁ ବି ଅପାର ଆନନ୍ଦ ପାଇଲି। ସବୁଠୁଁ ବିମୋହିତ କଲା ମୋର ଭାଉଜ ସଂପର୍କୀୟ। ବ୍ରାହ୍ମଣ ଓ କରଣ ଘରର ଦୁଇଜଣ ପ୍ରୌଢ଼ା ନାରୀ। ସେମାନଙ୍କ ଦେହର ଚିକ୍‌କଣ ଗୌର ରଙ୍ଗ ମୁଁ ତରୁଣ ବୟସରେ ସ୍ପଷ୍ଟ ରୂପେ ଦେଖିବାକୁ ପାଇ ନଥିଲି। ସୁନ୍ଦର ସୁଗୋଲ ମୁହଁ ମଧ୍ୟ ଅର୍ଦ୍ଧସ୍ପଷ୍ଟ ରହୁଥିଲା ସେତେବେଳେ। ବୟସ ବୃଦ୍ଧି ସହ ସେମାନେ ଅଧିକ ମୁକ୍ତ ହୋଇ ଯାଇଛନ୍ତି। ଜଣଙ୍କର ସ୍ୱାମୀ ଘରେ ନ ଥିଲେ। ସେ ଏକୁଟିଆ। ପୁଅ ବିଦେଶରେ ଚାକିରି, ଝିଅ ଶାଶୁଘରେ। ଚା ଆଣି ସେ ଦେଲେ। ନାନା ଗପ କଲେ। ଆଉ ଜଣେ ନାରୀ ମୋତେ ଦେଖି ଏତେ ଖୁସି ହୋଇଗଲେ ଯେ ମୋ ପିଠିରେ ସରାଗରେ ହାତ ବୁଲେଇ ଆଣି କହିପକେଇଲେ -'ବାପୁ, ତୁମେ ଆସିଛ। ହାଇସ୍କୁଲଟେ କରିଦେଇଛ। ଗାଁଲୋକେ ସବୁଦିନେ ତୁମକୁ ମନେପକାଉଥିବେ।' ଏହି ନୂଆବୋଉମାନଙ୍କ ଠାରୁ ଚାନ୍ଦା ଆଦାୟ କରି ତରୁଣ ବୟସରେ ସ୍କୁଲ ଓ ପାଠାଗାର ଗଢୁଥିଲି। ଗାଁ ପିଲାଙ୍କୁ ନେଇ ଯାତ୍ରା ଥିଏଟର କରୁଥିଲି। ଆଜି ମୁହଁ ଉପରୁ ଓଢ଼ଣା ଉଠିଯାଇଛି।

ପିଲାମାନଙ୍କ ପ୍ରଗତିର ଆଲୋକରେ ସେମାନେ ଉଦ୍‌ଭାସିତ। ମୁଁ ଅନୁଭବ କଲି ଜୀବନ ମୋର ଧନ୍ୟ ହୋଇଛି। ଭାର୍ଗବୀ ନଦୀବାଲିରେ ସତ୍ୟବାଦୀର ପଞ୍ଚସଖା ଏକଦା ସ୍ୱପ୍ନ ଦେଖିଥିଲେ- ମରିବା ପୂର୍ବରୁ ଦେଖିଯିବେ ଉତ୍କଳ ମାଟିର ଅନ୍ୟ ରୂପ- ମୁଁ ମୋ ଗାଁର ଅନ୍ୟ ରୂପ ଦେଖିସାରିଥିବାର ଅବ୍ୟକ୍ତ ଆନନ୍ଦ ଅନୁଭବ କଲି।

କିନ୍ତୁ ହାୟ। ରାତିରେ ପଡ଼ୋଶୀ ଭାଇଟି ସଙ୍ଗେ କଥାବାର୍ତ୍ତା କରି ଯାହା ଜାଣିବାକୁ ପାଇଲି ତାହା ମୋତେ ବ୍ୟଥିତ କଲା। ଗାଁର ସାମଗ୍ରିକ ଉନ୍ନତି ଘଟିଛି। ମାତ୍ର ବୈଷମ୍ୟ ବଢ଼ିଯାଇଛି। ଖଟିଖିଆ ଗରିବ ମୂଲିଆ ଦଳିତ, ବଢ଼େଇ, ବଣିଆ, ଛୋଟଚାଷୀ ଓ କେଉଟମାନଙ୍କର ଅବସ୍ଥାର ଅବନତି ଘଟିଛି। ସ୍ଥାୟୀ ଜଳସେଚନ ବ୍ୟବସ୍ଥା ନ ଥିବାରୁ କୃଷିର ଅବନତି ଘଟିଛି। କୌଳିକ ବୃତ୍ତିର ଆଧୁନିକ ରୂପାନ୍ତର ହୋଇନି। ସଂପ୍ରତି ଚାକିରି ଅଭାବରୁ ପାଠପଢ଼ା ପୁଅ, ଝିଅମାନେ ଉପାର୍ଜନହୀନ ହୋଇ ବିପଥଗାମୀ ହେଉଛନ୍ତି। ଧିକ୍କାର କଲି ମୋର ଅର୍ଥଶାସ୍ତ୍ରରେ ପାଣ୍ଡିତ୍ୟ ଓ ଅଧ୍ୟାପକପଣିଆକୁ।

(୨)

ଯାହା ଅବଶ୍ୟମ୍ଭାବୀ ତାହା ଘଟିଲା, ନୂଆବୋଉ ଚାଲିଗଲେ। ଗାଁ ସହିତ ନିବିଡ଼ ମମତାର ଏକ ଗଣ୍ଠି ଛିଣ୍ଡିଗଲା। ସହରରେ ବରଫ ଦେଇ ଶବକୁ ଦିନେ ଦୁଇଦିନ ରଖିବାର ପ୍ରଥା ଗାଁରେ ଏଯାବତ୍ ଚଳିନାହିଁ। ପଡ଼ୋଶୀ ଘରେ ଶବସତ୍କାର ନ ହେଲା ପର୍ଯ୍ୟନ୍ତ କେହି ରୋଷେଇ କରିବେ ନାହିଁ। ତେଣୁ ସନ୍ଧ୍ୟାରେ ନୂଆବୋଉ ଶେଷନିଃଶ୍ୱାସ ତ୍ୟାଗ କଲାର କେତୋଟି ଘଣ୍ଟା ଭିତରେ ସେହି ଶୀତୁଆ ଅନ୍ଧାର ରାତିରେ ଗାଁ ମୁଣ୍ଡ ଶ୍ମଶାନରେ ତାଙ୍କର ମରଶରୀରକୁ ଦାହ କରାଗଲା। ମୁଁ ହତଭାଗା ତାଙ୍କର ଶେଷଦର୍ଶନ କରିବାକୁ ଯାଇପାରିଲି ନାହିଁ ଭୁବନେଶ୍ୱରରୁ ରାତିରେ। ମନରେ ଅବଶୋଷ ଦୁଃଖ। ତିନି ଚାରି ଦିନ ତଳେ ତାଙ୍କୁ ଦେଖିବାକୁ ଯାଇଥିଲାବେଳେ ତାଙ୍କର ସ୍ନେହଭରା ଅନୁନୟ 'ବାପୁରେ ମୋତେ ଭୁବନେଶ୍ୱର ନେଇ ଯାଆ' ମୋ ମର୍ମରେ ଗୁଞ୍ଜରିତ ହେଲା। ସୁଖର କଥା ଗାଁରେ ଶେଷଜୀବନ କଟାଇ ଚାରି ପାଞ୍ଚ ପୁଅ ବୋହୂଙ୍କ ହାତରୁ ଅନ୍ତିମ ଜଳ ପିଇ ଗଲେ। ପ୍ରୌଢ଼ ଦିଅର, ଛୁଆବୋଉ, ପୁତୁରା, ପୁତୁରାବୋହୂଙ୍କ ହାତର ଶେଷଜଳ କଣ ଏତେ ଶାନ୍ତି ଦେଇପାରିଥାନ୍ତା।

ନୂଆବୋଉଙ୍କର ଦଶାହ-ଏକଦଶାହ କର୍ମ। ଗାଁଲୋକଙ୍କର ଆମ ଘର ପ୍ରତି ବିଶେଷତଃ ଭାଇ ନୂଆବୋଉଙ୍କ ପ୍ରତି ଅଗାଧ ସ୍ନେହ, ଶ୍ରଦ୍ଧା ଓ ଭକ୍ତି। ଗାଁର ସବୁ ଜାତିର ଲୋକେ ଆମ ଘରର ବିବାହାଦି କର୍ମରେ ଯୋଗ ଦେଇ ବେଶ୍ ପରିତୃପ୍ତ ହୁଅନ୍ତି। ବାଛବିଚାର ନ କରି ନୂଆବୋଉଙ୍କ ଶୁଦ୍ଧିକ୍ରିୟା ଭାଇଙ୍କ ଶୁଦ୍ଧିକର୍ମ ଭଳି ସୁନ୍ଦର ସରସ ଓ ସମୁଚିତ ରୂପେ କରିବାକୁ ହେବ। ଭାଇ ନୂଆବୋଉଙ୍କ ଭଳି ତାଙ୍କର ପୁଅମାନେ ଉଚ୍ଚମନା, କୃପଣତା ଆମ ପରିବାରକୁ ସ୍ପର୍ଶ କରିନାହିଁ। 'ମହାଜନ' ଘର ହେଲେ ହେଁ ସ୍ୱାଭାବିକ ଅର୍ଥପିପାସା ଆମର

ନ ଥିଲା, ନାହିଁ ମଧ୍ୟ। ତାଙ୍କର ବଡ଼ପୁଅ ଜଣେ ବ୍ୟାଙ୍କ ଅଫିସର। ଏହି ହାତରେ ପାଠପଢ଼ାଇ ନିଜର ପୁଅ ଭଳି ଯତ୍ନ ନେଇ ତାକୁ କୃଷି ଇଞ୍ଜିନିୟର କରିଦେଇଥିଲି। ସେ ତ ଏବେ ପରିବାରର ମୁଖ୍ୟ। ଅନ୍ୟ ଭାଇମାନେ ସହଯୋଗ କଲେ ମଧ୍ୟ ସଂପୂର୍ଣ୍ଣ ଦାୟିତ୍ୱ ସେ ଅକୁଣ୍ଠିତ ଚିତ୍ତରେ ବହନ କଲା। ଦିବଂଗତ ଆତ୍ମାକୁ ଶ୍ରଦ୍ଧା ସମ୍ମାନ ଜଣାଇବା ପାଇଁ ତାଙ୍କ ସୂର୍ଯ୍ୟବନ୍ଧୁ ଓ ପୁଅଝିଅ ବୋହୂ ଜ୍ଞାତିକୁଟୁମ୍ବଙ୍କ ପାଇଁ ଧୋତି ଶାଢ଼ି ମୋ ଶ୍ରୀମତୀ ଭୁବନେଶ୍ୱରରୁ କିଣି ନେଲେ। ମୋ ହୃଦୟର ଆବେଗ ଆମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଜଣାଇବା ପାଇଁ କବିତାଟିଏ ତାଙ୍କ ସ୍ମୃତିରେ ଲେଖି ତାକୁ ଜେରକ୍ସ କରି ବାଣ୍ଟିବାକୁ ନେଲି। ନିଜର ଆତ୍ମୀୟ ଲୋକ ଚାଲିଗଲେ ଯେଉଁ ଦୁଃଖ ଜାତ ହୁଏ ଏବଂ ମନରେ ନାନା ସ୍ମୃତି ଜଡ଼ିତ ଭାବାବେଗ ଉଚ୍ଛୁଳି ଉଠେ, ତାର ସଂକେତ ଦେବା ପାଇଁ ମୋ ଲେଖା ଓ ମୋ ସ୍ତ୍ରୀଙ୍କ ଲେଖା କବିତାର ପଂକ୍ତି ଦୁଇଟି ଏଠାରେ ଉଦ୍ଧାର କରୁଛି:- "କିଏ ସେ କହିବ ଆଉ

'ବାପୁ ମୋତେ ନେଇ ଯାଆ ଭୁବନେଶ୍ୱର'

ମୁଁ ତ ସହରୀ ବାବୁ

କାହିଁ ମୋ ସରାଗ

ନେଇଯିବି ରାଜଧାନୀ କରିବି ଶୁଶ୍ରୂଷା।

ଅନ୍ତୁଡ଼ିଶାଳର ନିଆଁ ମନେପଡ଼େ ନାହିଁ।

ସନ୍ନିକଟ ଯାତ୍ରା ଶେଷ ଅଗ୍ନି ଲେଲିହାନ ପୋଡ଼ିଯାଏ।

ଦେହ ସିନା ଖୋଜେ ସ୍ମୃତି କମ୍ପ ପୁଲକିତ ନିଟୋଳ

ଯୌବନ କାନ୍ତି ସ୍ନେହଭରା ମାତୃତ୍ୱର ଚିତ୍ର।" (ସ୍ମୃତି)

ନୂଆବୋଉଙ୍କ ଆଦରର ଛୁଆବୋଉ, ମୋର ସ୍ତ୍ରୀ, ଲେଖିଥିଲେ :-

ଚୁପ୍‌ଚାପ୍ ତୁମେ କରିଯାଉଥିଲ

ଘରର ସବୁ ପାଇଟି

ଚାହିଁ ରହୁଥିଲ ରାତି ଅଧ ଯାଏ

'ଭାଇ' ଫେରିବାକୁ ନିତି

ଭାଇ ଫେରିଲେନି ତୁମେ ଗଲ ଖୋଜି

ଶ୍ରୀହୀନ ହେଲା ଏ ଘର

କାହା ସ୍ନେହ ଡୋରରେ ଟାଣି ହୋଇ ଆମେ, ଆସିବୁ ନ ଭାବି ଦୂର ?

ଦଶାହ ଦିନ ମୁଁ ମୋର ସ୍ତ୍ରୀ, ସାନ ପୁଅ ମଧ୍ୟାହ୍ନ ୧୨ଟା ବେଳେ ଗାଁରେ ପହଞ୍ଚିଲୁ। ଗାଁ ନଈ ପଦା ତୁଠରେ ପୁଅମାନେ ନଣ୍ଡା ହେଲେ। ବୋହୂ ଓ ଅନ୍ୟ ସ୍ତ୍ରୀଲୋକମାନେ ନଖ

କାଟି ଅଳତା ଲଗାଇ ନଈପାଣିରେ ବୁଡ଼ ଦେଲେ। ମୁଁ ନୂଆବୋଉଙ୍କ ଦାହସ୍ଥଳୀକୁ ଯାଇ ମରଦେହ ଦାହର ପାଉଁଶ ମୁଣ୍ଡରେ ମାରିଲି। ପାଖକୁ ଲାଗି ବାପା, ବୋଉ ଓ ଭାଇଙ୍କ ସମାଧି। ମନ ଆକାଶରେ ଅତୀତର ମଧୁର ଛବି, ସେମାନଙ୍କ ସ୍ନେହ ସୋହାଗଭରା ବ୍ୟବହାର ଭାସିଉଠିଲା। ନୂଆବୋଉ ସେମାନଙ୍କ ସ୍ଥାନରେ ତାଙ୍କୁ ପୋଡ଼ିଦେବାକୁ କହିଥିଲେ। ବିଶ୍ୱାସ ପରଜଗତରେ ମଧ ସେମାନଙ୍କ ଗହଣରେ ସେ ଆଦରଣୀୟା ବୋହୂ ଭଳି ରହିଯିବେ। ଧନ୍ୟ ଏ ପରିବାର ସୃଷ୍ଟି। ପରିବାରର ସ୍ନେହ ମମତା ମଣିଷକୁ ଦେଉଛି ବଞ୍ଚିବାର ସ୍ୱାଦ। ପରିବାର ମାଧମରେ ବାନ୍ଧି ଦେଉଛି ସମାଜ ସହିତ। ଦେଉଛି କର୍ମଶକ୍ତି ଓ ପ୍ରେରଣା। ସଭ୍ୟତାର ତାଜ ଗଢ଼ିଉଠିଛି। ପାରିବାରିକ ସ୍ନେହ, ପ୍ରେମ ଓ ଭକ୍ତିର ଶିଳାଦୃଢ଼ ଭିତ୍ତି ଉପରେ। ମିଛରେ କଣ ଭକ୍ତକବି କହିଥିଲେ - 'ବୈକୁଣ୍ଠ ସମାନ ଆହା ଅଟେ ସେହି ଘର'।

ନଈପାଣିରେ ବୁଡ଼ଦେଇ ଘରକୁ ଫେରିଲୁ। ଘରେ ପୁରୋହିତ ଦଶାହର ପୂଜାକର୍ମ କଲେ। ମନ୍ତ୍ର ପଢ଼ି ମୃତବ୍ୟକ୍ତିର ଆତ୍ମାର ସଦ୍‌ଗତି କାମନା କଲେ। ଶୋକ ସନ୍ତପ୍ତ ପରିବାର ଓ ଜ୍ଞାତିମାନଙ୍କୁ 'ମାର୍ଜନ' କଲେ। ଭକ୍ତିରେ ଦିବଂଗତଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ପୁରୋହିତଙ୍କ ଆଶୀର୍ବାଦ ନେଇ ଜଳପାନ ପାଇଁ ପ୍ରସ୍ତୁତ ହେଲୁ। ପୁରୋହିତ ମୁକୁନ୍ଦ ନନାଙ୍କୁ ମୁଁ ପିଲାବେଳୁ ଦେଖିଆସୁଛି। ତାଙ୍କର ବାପା ଗୋସପା ଆମ ବାପା ଗୋସପା ଅମଳରେ ପୌରୋହିତ୍ୟ କରୁଥିଲେ। ଏହି ପୁରୋହିତ ପରିବାରଟି ସଂସ୍କୃତ ଶ୍ଳୋକ ଉତ୍ତମ ରୂପେ ଉଚ୍ଚାରଣ କରିପାରନ୍ତି, ଯଜମାନଙ୍କ କାମ ସ୍ନେହ ଶ୍ରଦ୍ଧାର ସହ କରନ୍ତି। ମୁକୁନ୍ଦ ନନା ବେଶ୍ ଶାନ୍ତ, ଭଦ୍ର ଓ ସ୍ନେହୀ। ତାଙ୍କ ବାପା ମଧ ସେହିଭଳି ଥିଲେ। ତାଙ୍କ ଠାରେ ଲୋଭ ଓ ଅସନ୍ତୋଷ ମୁଁ କେବେହେଁ ଲକ୍ଷ୍ୟ କରିନାହିଁ। ଏପରି ଆଦର୍ଶ ବ୍ରାହ୍ମଣ ପରିବାର ନିକଟରେ ଆପଣାଛାଏଁ ମୁଣ୍ଡ ନଇଁଯାଏ। ସେମାନଙ୍କ ଜୀବନ ପରହିତାୟ। ତାଙ୍କର ସାନଭାଇ ମୁରାରିବାବୁ ହାଇସ୍କୁଲର ସଂସ୍କୃତ ପଣ୍ଡିତ ଥିଲେ। ସେ ଯଜମାନ କାମ କରନ୍ତି ନାହିଁ। ନୂତନ ଶିକ୍ଷାରେ ଚାକିରୀ କରିବା ପିଲାଏ ଏବଂ ମିଥ୍ୟା ଆଭିଜାତ୍ୟ ଓ ଆଧୁନିକତାରେ ବଶବର୍ତ୍ତୀ ଦାୟାଦମାନେ ଆଉ କଣ ହିନ୍ଦୁସମାଜର ଦେହ ମନ ପବିତ୍ରୀକରଣର ସୁସ୍ଥ ବୈଦିକ ପରମ୍ପରା ରଖିବେ ?

ଶୁଦ୍ଧକ୍ରିୟା ପରେ ଅନ୍ନପାକ ହେବ, ଭାତ ଖାଇବା ଡ଼େରିଅଛି। ତା ପୂର୍ବରୁ ପୁରି ତରକାରୀର ବ୍ୟବସ୍ଥା କରିବାକୁ ବଡ଼ ପୁତୁରା ଦ୍ୱିତୀୟ ପୁତୁରାକୁ କହିଥିଲା। କୌଣସି କାରଣବଶତଃ ତାହା ହୋଇପାରି ନଥିଲା। ଶୁଦ୍ଧି ପୂର୍ବରୁ ଚୂଲି ଜଳିବ ନାହିଁ ଆମ ବାଡ଼ି ଘରେ। ଅନ୍ୟ ପଡ଼ୋଶୀ ଘରେ ରାନ୍ଧିବାରେ ଅସୁବିଧା ହୋଇଥିଲା ବୋଧହୁଏ। ତେଣୁ ଦହିଚୁଡ଼ା ବୁନ୍ଦିଆ ଖାଇଲୁ। ଏହାକୁ କେନ୍ଦ୍ର କରି ଦି ଭାଇଙ୍କ ଭିତରେ ବଚସା ହେଲା। ସେହି ରାଗରେ ସାନଭାଇ (ଦ୍ୱିତୀୟ) ଦୂରେଇ ରହୁଥାଏ। ମାତ୍ର ସନ୍ଧ୍ୟା ଭୋଜନ ପରେ ରାତିରେ ପରଦିନ ଗ୍ରାମଲୋକଙ୍କୁ ଭୋଜି ଦେବା ପାଇଁ ଯେତେବେଳେ ରାତିରୁ ପରିବା କଟା ବୁନ୍ଦିଆ ଛଣା କାମ ଆରମ୍ଭ ହେଲା, ସେଥିରେ ବିନା ଡାକରାରେ ରାଗିଥିବା ସାନଭାଇଟି ପୂରାଦମ୍‌ରେ କାମରେ ଲାଗିଗଲା। ଏହି ଭାଇଟି ତା ବାପଭଳି ବିବାହ ଭୋଜି କାମ ସୁଚାରୁରୂପେ କରେ। ଗାଁ କାମରେ ଆଗଭର।

କାମିକା ଲୋକ କଣ କେବେ ଦୂରେଇ ରହିପାରେ ? ନାଗେଶ୍ୱରୀ ବାଜିଲେ ନାଗସାପ ଗାତରୁ ବାହାରି ଆସିଲା ଭଳି କାମ ସୁରୁ ହେଲେ କାମିକା ଲୋକ ଯୋଗ ଦେବାକୁ ଅସ୍ଥିର ହୁଏ। ସେଦିନ ରାତିସାରା ପାଞ୍ଚଭାଇ ଓ ଢୋଙ୍କ ଅନିଦ୍ରା ହୋଇ କାମ କରୁଥିଲେ।

ମୁଁ ଶୋଇ ଶୋଇ ଭାବୁଥିଲି, କାମର ଆହ୍ୱାନ ଆସିଲେ ଅନେକ ଅଣ୍ଡାଭିଡ଼ି ବାହାରି ପଡ଼ିବେ। ସବୁ କ୍ଷେତ୍ରରେ ଉପଯୁକ୍ତ ଆହ୍ୱାନ ଦେବା ଲୋକଟି ଲୋଡ଼ା, ଘରର ହେଉ ବା ସମାଜର ହେଉ ଭଲ କାମଟିଏ ଆରମ୍ଭ କରିଦିଅ। ସମାପନ କରିବାକୁ ଲୋକବଳ କି ଅର୍ଥବଳର ଅଭାବ ରହିବ ନାହିଁ।

(୩)

ଦଶଦିନ ରାତିରେ, ମୁଁ ଶୋଇଛି ଭାଇ ନୂଆବୋଉଙ୍କ ଶୋଇବା ଘରେ। ବିବାହର କିଛି ବର୍ଷ ପରେ ନିଜ ବରାଦରେ ସେ କାଳର ଗ୍ରାମର ଜନୈକ ଦକ୍ଷ କାଠମିସ୍ତ୍ରୀ ତିଆରି କରିଦେଇଥିବା ପଲଙ୍କ ଉପରେ। ବିଗତ ଦିନର କଥାଗୁଡ଼ିକ ମୋତେ ବିବଶ କରିଦେଉଥାଏ। ଏଡ଼େ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ପଲଙ୍କର ମାଲିକ କୁଆଡ଼େ ଗଲେ। ବାପ ଅନ୍ତେ ପୁଅ ବ୍ୟବହାର କରୁଛି ଏହି ଘର ଓ ତାର ଆସବାସ। ଗୃହକର୍ମ ନିପୁଣା ଅତିଥିପରାୟଣା ପୁତ୍ରବଧୂଟି ମୋରି ପାଦସେବା କରୁଛି। ଏହି ପୁତୁରା ବୋହୂଟି ସବୁବେଳେ ଗାଁରେ ରହେ। ଅଳ୍ପ ପାଠ ପଢ଼ିଛି। ଆଜକୁ ପ୍ରାୟ ୨୫ ବର୍ଷ ହେଲା ଏ ପରିବାରର ସମସ୍ତ ଚର୍ଚ୍ଚା, ବନ୍ଧୁବାନ୍ଧବଙ୍କ ଦାୟିତ୍ୱ ସେ ବହନ କରିଆସିଛି ଅକୁଣ୍ଠିତ ଚିତ୍ତରେ। ଆଜିକାଲିର ଶିକ୍ଷିତା ବୋହୂମାନଙ୍କ ଦୃଷ୍ଟିରେ ଶାଶୁ ଶଶୁରଙ୍କ ପାଦସେବା କର୍ତ୍ତବ୍ୟ ବାହାରର କଥା। ସେଥିପ୍ରତି ସେମାନଙ୍କର ନିଘା ନ ଥାଏ। କେତେବେଳେ କିମିତି ବୋହୂ ମୋର ଗୋଡ଼ ଘଷିଦେଲା ବେଳେ ମୁଁ ପିତୃତ୍ୱର ହଜି ଯାଉଥିବା ଗୌରବ ଫେରିପାଇ ଆନନ୍ଦିତ ହୁଏ। ଗାଁରେ ମୋ ସେବାରେ ତତ୍ପର ଥିବା ଏହି ପୁତୁରାବୋହୂ ପାଖରେ କିଛିଦିନ ରହିବାକୁ ମନବଳେ, କିନ୍ତୁ ରହିପାରେନା।

ମାଘ ଶେଷରେ ମୃଦୁଶୀତରେ ପଶମ ଚଦରଟିଏ ଘୋଡ଼ାଇ ଆରାମରେ ଶୋଇପଡ଼ିଲି। ଏଗାର ଦିନ ସକାଳୁ ସମସ୍ତେ କାର୍ଯ୍ୟରେ ଲାଗିପଡ଼ିଲେ। ଏକାଦଶାହର ଉପଚାର, ବ୍ରାହ୍ମଣ ଭୋଜନ ଓ ଗ୍ରାମ ଲୋକଙ୍କ ପାଇଁ ଭୋଜି। ଟେଣ୍ଟହାଉସ୍ ଲୋକ ନିକଟସ୍ଥ ଧୁଷୁରୀ ହାଟରୁ ଆସି ଦାଣ୍ଡ ଓ ଖଳାବାଡ଼ି ଘେର କରି ସାମିଆନା ଟାଙ୍ଗି ଦେଇଗଲା, ବିଜୁଳିବତୀ ଖଞ୍ଜି ଦେଇଗଲା। ଘର ପଛ ବାଡ଼ିରେ ଖନ୍ଦା ଖୋଳା ହୋଇ ୪/୫ଟି ଚୁଲାରେ ଡାଲି ତରକାରୀ ରନ୍ଧା ଚାଲିଲା ସକାଳ ୯ଟାଠାରୁ। ପୁରୋହିତ ଆସିନାହାନ୍ତି ଏକାଦଶାହ କର୍ମ ଡେରିରେ ହେବ। ପଶ୍ଚିମପଟେ ଥିବା ଗାଁ ମୁଣ୍ଡ ପଡ଼ିଆରେ ହାଇସ୍କୁଲର ନୂତନ ଗୃହ ତିଆରି ହେଉଛି। ଗୋଟିଏ ପକ୍କା ଘରେ ଓ ମାଟି ଘରେ ଶ୍ରେଣୀ ଅଫିସ୍ ଚାଲିଛି। ସ୍କୁଲ ସମୟ ହୋଇଗଲାଣି। ଶିକ୍ଷକ ଓ

ପିଲାମାନଙ୍କୁ ଦେଖିବାକୁ ଗଲି। ପୂର୍ବଦିନ ସରସ୍ୱତୀ ପୂଜା ଥିଲା। ଆଜି ସ୍କୁଲ ବନ୍ଦ। କେହି ସ୍କୁଲରେ ନାହାନ୍ତି। ପଡ଼ିଆର ଦକ୍ଷିଣ-ପୂର୍ବ ଦିଗକୁ ଯାଇଥିବା ନୂତନ ଗୋଡ଼ିମାଟି ରାସ୍ତାରେ କିଛି ବାଟ ଗଲି। ସାଇକେଲ ଓ ଡାଲିଚାଉଳ ଦୋକାନ ଦୁଇଟି ସଡ଼କ କଡ଼ରେ। ଏ ରାସ୍ତାଟି ନୂଆ ହୋଇଛି। ଦୂର ଗାଁ ଲୋକଙ୍କ ଯାତାୟତ ସୁବିଧା ଏବଂ ଉନ୍ନତିର ଲକ୍ଷଣ। ବୁଢ଼ାଟିଏ ଧୋତିଟିଏ ପିନ୍ଧି ବେକରେ ନାଲିଗାମୁଛା ପକେଇ ଗାଈଟିଏ ପଡ଼ିଆରେ ବାନ୍ଧୁଥାଏ ଘାସ ଖୋଇବା ପାଇଁ। ଗାଁର ମହାଦେବ ସାହିର ଲୋକ ହୋଇଥିବ ଭାବି ପାଖକୁ ଗଲି। ଚିହ୍ନିପାରିଲି, ମାତ୍ର ତାଙ୍କ ନାମ ମନେପଡ଼ିଲା ନାହିଁ। ତାଙ୍କର ସାନଭାଇ ନାମ ମନେଥିଲା। ସାନଭାଇ ଇହଧାମ ଛାଡ଼ି ଗଲେଣି। ବଡ଼ ଭାଇ କଲିକତାରେ ରେଳବିଭାଗରେ ରୋଷେୟା କାମ କରୁଥିଲେ। ଅବସର ପରେ ଗାଁରେ। ମୋର ପରିଚୟ ଦେବାରୁ ସେ ଜାଣିପାରିଲେ ମୁଁ କିଏ। ସମୟର ସଂଘାତରେ ଉଦାମ ସ୍ୱପ୍ନିଲ ତାରୁଣ୍ୟ ଅନ୍ତିମଯାତ୍ରା ପାଇଁ ଅପେକ୍ଷାମାଣ ଘୋସରା ଜୀବନ ମୋ ଆଗରେ ମୂର୍ତ୍ତିମନ୍ତ ହୋଇଉଠିଲା। ଟପା ଦୀର୍ଘନିଃଶ୍ୱାସ ପକାଇ ତାଙ୍କଠାରୁ ବିଦାୟ ନେଲି।

ପଡ଼ିଆର ପଶ୍ଚିମ ଦିଗ ମୁଣ୍ଡରେ ଚାରି ପାଞ୍ଚ ଘର ବ୍ରାହ୍ମଣ ପରିବାର ରହନ୍ତି। ପରିବାରର ମୁଖ୍ୟମାନଙ୍କର ନାମ ମନେ ନାହିଁ। ଏହି ସାହିକୁ ମୁଁ ଯୁବକ ଥିଲାବେଳେ ବୈଶାଖ ସଂକ୍ରାନ୍ତିରେ ବୁଢ଼ୀକାଳନ୍ଦୀ ଯାତ୍ରା ପାଇଁ ଚାନ୍ଦା ଆଦାୟ କରିବାକୁ ଯାଉଥିଲି। ଅନ୍ୟ ସମୟରେ ସଂପର୍କ ପ୍ରାୟ ନ ଥିଲା। ମନରେ କୌତୂହଳ ଜାତ ହେଲା ଜାଣିବା ପାଇଁ କିପରି ଅଛନ୍ତି ଏ ସାହିର ବ୍ରାହ୍ମଣ ପରିବାର। ମୋର ମନେପଡୁଛି ଏହି ସାହିର ଗୋଟିଏ ଦୁଇଟି ପରିବାରର ପୁରୁଷ କଲିକତା ଘାଟ କାମ କରି ଅର୍ଥାତ୍ ଗଙ୍ଗାନଦୀ ଘାଟରେ ସ୍ନାନାନ୍ତେ ଲୋକମାନଙ୍କୁ ଫୁଲଚନ୍ଦନ ଦେଇ ବେଶ୍ ରୋଜଗାର କରୁଥିଲେ। ସେପରି ଏକ ପରିବାରର ନୂଆ ବୋହୂଟି ତରୁଣୀ ଅବସ୍ଥାରେ ବିଧବା ହୋଇଥିଲା। ଘରେ ସାନ ଦିଅର ୧୦/୧୨ ବର୍ଷର। ତାକୁ ନେଇ ନିଃସଙ୍ଗ ଉଦାସ ଜୀବନ, ଯପୁଥିଲା ଗୋରା ସୁନ୍ଦରୀ ସ୍ତ୍ରୀଲୋକଟିଏ। ନିଛାଟିଆ ଜାଗାରେ ଘର। ଅଳ୍ପ କେତୋଟି ପଡ଼ିଶା ଘରେ ମଧ୍ୟ ପୁରୁଷ ବେଶି ନ ଥାଆନ୍ତି। ପାଖ ମହାଦେବ ସାହି ଓ ଅନ୍ୟ ସାହିର ରସିକ ପରିଚିତ ତିରିଶ ବର୍ଷ ବା ତଦୁର୍ଦ୍ଧ୍ୱ ବୟସର ଯୁବକ ଜଣେ ଦି' ଜଣଙ୍କର ଆଡ୍ଡାସ୍ଥଳୀ ଥିଲା ଏହି ଘରଟି। ସୁନ୍ଦରୀ ପ୍ରେମଶିଳା ନାରୀଟି ଆକର୍ଷଣର କେନ୍ଦ୍ରବିନ୍ଦୁ। କିଶୋର ଅବସ୍ଥାରେ କାହିଁକି କେଜାଣି ସେହି ବିଧବା ତରୁଣୀ ବୋହୂଟି ଘରକୁ ଚାନ୍ଦା ଆଦାୟ କରି ଗଲାବେଳେ ମୋ ମନରେ ଏକ ଅହେତୁକ ଆନନ୍ଦ ଜାତ ହେଉଥିଲା। ବୋହୂଟିର ବ୍ୟବହାର ମଧ୍ୟ ମଧୁର ଥିଲା ମୋ ପ୍ରତି। କିଛି-ନା-କିଛି ଆଦରରେ ଖାଇବାକୁ ଦେଇ କଅଁଳ ସ୍ୱରରେ କେତେ କଥା ସେ ପଚାରୁଥିଲେ ମୋତେ। ସମ୍ଭବତଃ ମୋ ବଡ଼ଭାଇଙ୍କ ସହିତ ତାଙ୍କର ସୁସମ୍ପର୍କ ଥିଲା। ଭାଇ କଲିକତାରେ ରହୁଥିବାରୁ ତାଙ୍କ ମୃତ ସ୍ୱାମୀଙ୍କର ବନ୍ଧୁ ଥିଲେ ବୋଧହୁଏ। ସେତେବେଳେ ମୁଁ ଆକର୍ଷିତ ହେବାର କାରଣ ସ୍ପଷ୍ଟ ଜାଣି ନଥିଲି। ଆଜି ଭାବିଲାବେଳେ ବିଶ୍ୱକବିଙ୍କ କବିତା ମନେ ପଡ଼ିଯାଉଛି:-

"ନାରୀର ପ୍ରାଣର ପ୍ରେମ ମଧୁର କୋମଳ,
ବିକଶିତ ଯୌବନର ବସନ୍ତ ସମୀରେ,
କୁସୁମିତ ହୋଇ ଏହା ଫୁଟୁଛି ବାହାରେ,
ସୌରଭ ସୁଧାରେ କରେ ପରାଣ ପାଗଳ।"

ମୁଁ ଜାଣେ ସେ ସ୍ନେହମୟୀ ନାରୀ ଆଉ ଇହଧାମରେ ନ ଥିବେ। ତଥାପି ତାଙ୍କର ବାସସ୍ଥଳୀ ଦେଖିବା ପାଇଁ ଆଗ୍ରହରେ ଆଗେଇଗଲି। କିଛି ବାଟ ଗଲା ପରେ ପଡ଼ିଆର ଗୋଟିଏ ସ୍ଥାନରେ କିଶୋରୀ ଝିଅଟିଏ ବସିଛି। ସୁଠାମ ସୁନ୍ଦର ଗୌରବର୍ଣ୍ଣା। ସଙ୍ଗରେ ୫/୬ ବର୍ଷର ପିଲାଟିଏ। ପାଖରେ ବାଛୁରୀଟିଏ ବନ୍ଧା ହୋଇ ଚରୁଛି। ପ୍ରଶସ୍ତ ଘାସପଡ଼ିଆରେ ଜନଶୂନ୍ୟ ଜାଗାରେ ଝିଅଟିଏକୁ ଦେଖି ମୋର ସୌନ୍ଦର୍ଯ୍ୟପିପାସୁ କବି ମନ ପ୍ରଫୁଲ୍ଲିତ ହେଲା। କୌତୂହଳବଶତଃ ପଚାରିଲି - ତୋ ଘର କେଉଁଠି ? କ'ଣ ସେ ଉତ୍ତର ଦେଲା ଜାଣିହେଲାନି। ତେବେ ତାର ମଧୁର ସ୍ୱର ପବନରେ ଖେଳିଗଲା। ମନେପଡ଼ିଗଲା ହାଇସ୍କୁଲରେ ପଢ଼ିଥିବା ୱାଡ୍ସୱାର୍ଥଙ୍କ 'ଦି ସଲିଟାରୀ ରିପର' କବିତା:-

"Behold her single in the field
Yon solitary high land lass!
Reaping and singing by herself.
O listen, for the vale profound
is overflowing with the sound."

ଗାଁ ବାଳିକାଟି, ସହଜ ସୁନ୍ଦରୀ ସରଳା, ନିରୀହ ବାଛୁରୀଟିକୁ ଚରଉଛି, କୋଳାହଳ ଶୂନ୍ୟ ପଡ଼ିଆରେ ବସି କଣ ଭାବୁଛି, କଣ କଥା ହେଉଛି, ମୋ ପ୍ରଶ୍ନର କି ଉତ୍ତର ଦେଲା, ସବୁ ଅଜଣା ଅସ୍ପଷ୍ଟ। କିଶୋରୀ ମନର ଭାବ ତ ଅବୁଝା। ସ୍ୱରର ଲାଳିତ୍ୟ ନିଃଶବ୍ଦ ପଡ଼ିଆରେ ଖେଳିଯାଉଛି। ସଂଭ୍ରମ ରଖି ସେ କିଶୋରୀ ପାଖରେ ବେଶି ସମୟ ନ ରହି ପାଖରେ ଥିବା ମୋର ଗନ୍ତବ୍ୟ ସାହି ଆଡ଼କୁ ଆଗେଇଲି।

ସାହିର ପ୍ରବେଶ ପଥରେ ଡାହାଣ ପାର୍ଶ୍ୱରେ ଦ୍ୱିତୀୟ ଘରଟିକୁ ଅନୁମାନ କଲି। ଏଇଟି ମୋ ଇପ୍ସିତ ଘର। ଘର ସାମ୍ନା ଦାଣ୍ଡରେ ସୁନ୍ଦରୀ ମଧ୍ୟବୟସ୍କା ସ୍ତ୍ରୀ ଲୋକଟିଏ ଛିଡ଼ା ହୋଇଥାଏ। ଯାହା ଘର ଖୋଜୁଛି ତା ନାଁ ମନେପଡୁ ନଥାଏ। ଥ-ଥ-ମ-ମ ହୋଇ ପଚାରିଲି- "ଏଠାରେ ଜଣେ ବିଧବା ସ୍ତ୍ରୀଲୋକ ବହୁ ବର୍ଷ ତଳେ ଥିଲେ। ତାଙ୍କର ଦିଅର ପିଲା ହୋଇଥାଏ। ତାଙ୍କ ଘରଟି କେଉଁଟା ?" ସେ ସ୍ତ୍ରୀ ଲୋକଟି ଉତ୍ତର ଦେଲା-"ମୁରଲୀ ସାଅନ୍ତଙ୍କ ଘର ଖୋଜୁଛନ୍ତି ?" ମୁଁ କହିଲି - 'ହଁ' ନାମଟି ମନେପଡ଼ିଗଲା। ସେ କହିଲା, 'ମୁଁ ତାଙ୍କର ବୋହୂ'। ସଙ୍ଗେ ସଙ୍ଗେ ପହଞ୍ଚିଗଲେ ସେ ସ୍ତ୍ରୀଲୋକର ସ୍ୱାମୀ। ମୋ ପରିଚୟ ପାଇ ନମସ୍କାର କଲେ। ସ୍ତ୍ରୀ ଲୋକଟି ସପଟିଏ ଆଣି ପିଣ୍ଡାରେ ବସିବାକୁ କହି ଘର ଭିତରକୁ ଚାଲିଗଲେ।

ଘର ଭିତରୁ ଆଉ ଜଣେ ମଧ୍ୟବୟସ୍କା ସ୍ତ୍ରୀଲୋକ ବାହାରି ଆସି ମତେ ନମସ୍କାର ଜଣାଇ ଘର ଭିତରକୁ ଡାକିନେଲା। ଘର ଅଗଣାରେ ଝପ ପକାଇ, ବସାଇ ଚ ବିସ୍କୁଟ୍ ଆଣିଦେଲା। ଏହି ସ୍ତ୍ରୀଲୋକଟି ଆମ ଗାଁ ପାଖ ଧୁଷୁରୀ ବାଳିକା ଉଚ୍ଚବିଦ୍ୟାଳୟର ଶିକ୍ଷୟତ୍ରୀ। ସେ ମୋତେ ପୂର୍ବରୁ ଜାଣିଛି, ସଭାସମିତିରେ ଦେଖି। କଥୋପକଥନରୁ ଜାଣିଲି ତାର ଗୋଟିଏ ପୁଅ 'କିଟ୍‌ସ'ରେ ଇଞ୍ଜିନିୟରିଂ ପଢୁଛି। ଆଉ ଗୋଟିଏ ପୁଅ ରେଭେନ୍‌ସା କଲେଜରେ ୫ ବର୍ଷିଆ ଇଣ୍ଟିଗ୍ରେଟେଡ୍ ଏମ୍‌ସିଏ ପଢୁଛି। ଦୁହେଁ ଆମ ଗାଁ ମାଇନର ସ୍କୁଲର ଛାତ୍ର ଥିଲେ। ଝିଅଟିଏ ନବମ ଶ୍ରେଣୀରେ ପଢୁଛି। ଗାଁ ସ୍କୁଲରୁ ମାଇନର କି ହାଇସ୍କୁଲ ପାଶ୍ କରି ଏତେ ଉଚ୍ଚକୁ ଯିବାର ଯୋଗ୍ୟତା ହାସଲ କରିଥିବା ସମ୍ବାଦ ମୋତେ ଆହ୍ଲାଦିତ କଲା। ମୋ ଜନ୍ମମାଟି ପ୍ରତି ମୋର କର୍ତ୍ତବ୍ୟ ସଂପାଦନରେ ଗର୍ବ ଅନୁଭବ କଲି। ଝିଅଟିକୁ ମାଆ କହିଲା - "ଜାଣ୍, ଆମର ସୌଭାଗ୍ୟ ଜଣେ ମହାନ ବ୍ୟକ୍ତି ନିଜେ ଆମ ଘରକୁ ଆସିଛନ୍ତି। ଜ୍ଞାନର ଶୀର୍ଷ ସ୍ଥାନରେ ପହଞ୍ଚିଲେ ଡକ୍ଟର ଉପାଧି ପାଆନ୍ତି। ଭଦ୍ରଲୋକ ପ୍ରଫେସର ଓ ଡକ୍ଟର।" ଝିଅ ମନରେ ମୋ ପ୍ରତି ଭକ୍ତି ସୃଷ୍ଟି କରିବା ସଙ୍ଗେ ସଙ୍ଗେ ମୋତେ ଶିକ୍ଷୟତ୍ରୀଟି ଯେ, ଗର୍ବିତ କରିଦେଲା। ଏହା କହିବା ନିଷ୍ପ୍ରୟୋଜନ।

## (୪)

ମୋ ଗାଁମୁଣ୍ଡ ପଡ଼ିଆର ଶେଷ ଭାଗରେ ଯେଉଁ ଛୋଟ ବ୍ରାହ୍ମଣ ସାହିକୁ ମୁଁ ସେଦିନ ଯାଇଥିଲି ବିଗତ ଦିନର ଜନୈକ ରସିକା ନାରୀର ସ୍ମୃତି ସାଉଁଟିବାକୁ, ସେହି ସାହିର ଭୌତିକ ତଥା ଶିକ୍ଷାଗତ ଉନ୍ନତି ମୋତେ ଅଭିଭୂତ କରିଦେଲା।୫ଟି ଘର ମଧ୍ୟରୁ ଦୁଇଟି ପକ୍କାଘର, ସରକାରୀ ଚାକିରିରୁ ଅବସର ନେଇ ଜଣେ ରହୁଛନ୍ତି, ଯୁବକ କେତେଜଣ ଉଚ୍ଚ ବୈଷୟିକ ଶିକ୍ଷା ନେଉଛନ୍ତି। ବେକାର ବ୍ରାହ୍ମଣ ପରିବାର ଆଉ କଲିକତାର 'ଉଡ଼େ ଠାକୁର' ହୋଇ ନାହାନ୍ତି। ନିଜ ହାତରେ ଚାଷ କାମ କରିବା କିମ୍ବା ଅନ୍ୟାନ୍ୟ କାରିଗରୀ କାମ କରିବାରେ ଅଭ୍ୟସ୍ତ ନ ଥିବାରୁ ବିଦ୍ୟାଧ୍ୟାନରେ ବ୍ରାହ୍ମଣ ସଂପ୍ରଦାୟର ପିଲାମାନେ ମନୋନିବେଶ କରିଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅନେକ ସରକାରୀ ବା କମ୍ପାନୀ କର୍ମଚାରି ଓ ଶିକ୍ଷକ ହୋଇଛନ୍ତି। ସେବା କ୍ଷେତ୍ରରେ ସେମାନଙ୍କର ନିଯୁକ୍ତି ଆର୍ଥିକ ଅବସ୍ଥାର ଆଶାତୀତ ଉନ୍ନତି ଘଟାଇଛି। ଶିକ୍ଷିତ ମହିଳାମାନେ ମଧ୍ୟ ଶିକ୍ଷୟିତ୍ରୀ ବା ଅନ୍ୟ ଚାକିରି କରୁଛନ୍ତି। ଯେଉଁ ତରୁଣୀ ସ୍ତ୍ରୀ ଲୋକକୁ ମୁଁ ପ୍ରଥମେ ଏ ସାହିରେ ଭେଟିଥିଲି,ସେ ଅଙ୍ଗନବାଡ଼ି କର୍ମୀ। ଗାଁ ଗାଁ ବୁଲି ପିଲାମାନଙ୍କ ସ୍ୱାସ୍ଥ୍ୟ କଥା ବୁଝନ୍ତି ଏବଂ ସଂକ୍ରାମକ ରୋଗ ନିରୋଧ ଔଷଧ ବାଣ୍ଟନ୍ତି। ଅଳ୍ପଦିନ ତଳେ ସେ ଆମ ଘରକୁ ଯାଇଥିଲେ। ମୋର ସ୍ୱର୍ଗତା ନୂଆବୋଉ, ପିଣ୍ଡାରେ ବସି ଅନୁରୋଧ କରିଥିଲେ "ମୋ ନାତି କେମିତି ଶକତ ହେବ, ତୁମେ ଭଲ ଉଷୁଧ ଦିଅ"। ସେହି ରମଣୀ ମୁହଁରୁ ଏକଥା ଶୁଣି ମୁଁ ବିହ୍ୱଳ ହୋଇଥିଲି, ଜୀବନର ଅନ୍ତିମ ଦିନରେ ମଧ୍ୟ ମାଆ ଗୋସମାଙ୍କର ପୁଅ ଝିଅ ନାତି ନାତୁଣୀ ପ୍ରତି କେତେ ଦରଦ। ସହରରେ ଏପରି ସ୍ନେହ ଦରଦ ଅଛି କି ନା, ମୁଁ କହିପାରିବି

ନାହିଁ। ଗାଁ ନାରୀଙ୍କ ହୃଦୟରେ ସ୍ୱାଭାବିକ କୋମଳ ପ୍ରବୃତ୍ତି ଏବେ ବି ଅତୁଟ ଅଛି। ସେକ୍ସପିଅର ଠିକ୍ କହିଥିଲେ – 'ଭୟ ଓ ଅନୁକମ୍ପା ସବୁ ନାରୀଙ୍କର ସହଜାତ ଗୁଣ ବା ସାଥୀ।'

ସାଆନ୍ତ ସାହିରୁ ରାସ୍ତାଟିଏ ପଡ଼ିଛି ବିଲକୁ। ସେହି ବିଲ, ପୋଖରିଆପାଟରୁ ସିଧା ସଡ଼କ ଆମ ଗାଁ ମାଇନର ସ୍କୁଲକୁ। ଏହି କେତେ ବର୍ଷ ଭିତରେ ଗ୍ରାମାଞ୍ଚଳରେ ଯା'ଆସ ରାସ୍ତାର ବେଶ୍ ଉନ୍ନତି ଘଟିଛି। ମାଇନର ସ୍କୁଲ ସାମ୍ନାରେ ସର୍ଖାନଈ। ସେ ନଈ ଉପରେ ଗୋଟିଏ ଛୋଟ ବାଉଁଶ ପୋଲ। ସେହି ପୋଲ ପାର ହୋଇ ଆଉ ଗୋଟିଏ ସାହିରେ ପହଞ୍ଚିଲି। ପୋଲ ମୁଣ୍ଡରେ ୩/୪ଟି ହରିଜନ ଘର। ପ୍ରଥମ ଘରର ଦାଣ୍ଡରେ ବୁଢ଼ାଟିକୁ ଦେଖିଲି। ନାଁ ତାର ଶିକରା। ପଚାରିଲି କିମିତି ଅଛ ? ସେ ଉତ୍ତର ଦେଲା "ଆଗ ଅପେକ୍ଷା ଭଲରେ ଅଛୁଁ। ପୁଅଟି ମେହନତ କରି ବୁଢ଼ାବୁଢ଼ୀ ଦି ପ୍ରାଣୀଙ୍କୁ ପୋଷୁଛି। ଜମି ବଖରା ଚାଷ କରି ବେଶ୍ ଚଳି ଯାଉଛୁଁ।" ସାଧାରଣତଃ ମୂଲିଆ ଘରେ ପୁଅମାନେ ବୁଢ଼ା ବାପମାଆଙ୍କର ଯଥୋଚିତ ଯତ୍ନ ନେଇପାରନ୍ତି ନାହିଁ। ଅଭାବରେ ସ୍ୱଭାବ ନଷ୍ଟ। ପୁଅଟି ହତାଦର କରୁ ନଥିବାରୁ ଶିକରା ଖୁସି। ମୋର ବାଲ୍ୟବନ୍ଧୁ ଆମ ଘରକୁ ଲାଗି ରହିଥିବା ପାଗଳ ମାଝୀ, ଅଭାବ ଅନାଟନ ଓ ପୁଅବୋହୂଙ୍କ ନିଷ୍ଠୁର ଅବହେଳା ଯୋଗୁଁ ଦୁଃଖରେ ପ୍ରାଣତ୍ୟାଗ କରିଛି ଅଳ୍ପ କେତେଦିନ ତଳେ। ସେହି ଦୃଷ୍ଟିରୁ ଶିକରା ମହାଲିକ ଭାଗ୍ୟବାନ। ତା ଘରକୁ ଲାଗି ଧିନ୍ଦା ମହାଲିକ ଘର। ସେ ଘରୁ ଅଳ୍ପ ବୟସର ବୋହୂଟିଏ ବାହାରି ଆସିଲା। ମୁଁ ପଚାରିଲି ଏ କାହାଘର ? ବୋହୂଟି ଶ୍ୱଶୁରଙ୍କ ନାମ ଧରୁ ନଥାଏ। ମୁଁ ବୁଝିପାରିଲି। ଜୋର ଦେଇ କହିଲି ଶ୍ୱଶୁର ତ ବାପ ଭଳି। ନାଁ ଧରିବାରେ ଦୋଷ କଣ ? ବୋହୂଟି ଧୀର କଣ୍ଠରେ କହିଲା – 'ଧିନ୍ଦା'। ଧିନ୍ଦା ପୂର୍ବେ ଆମ ଘରେ ବାରମାସିଆ ଥିଲା। ସେତେବେଳେ ସେମାନଙ୍କ ଘରର ରୂପ ଓ ସ୍ତ୍ରୀ ପୁରୁଷଙ୍କ ପୋଷାକ ପରିଚ୍ଛଦରୁ ଦାରିଦ୍ର୍ୟ ଫୁଟି ବାହାରୁଥିଲା। ଏବେ ବୋହୂଟିର ରୂପ ଓ ପରିଷ୍କାର ପରିଚ୍ଛନ୍ନତାର ରୁଚି ଓ ଆର୍ଥିକ ଅବସ୍ଥାରେ ଯେ ଉନ୍ନତି ଘଟିଛି ତାହା ସ୍ପଷ୍ଟ ହୋଇ ଯାଉଥାଏ। ଇନ୍ଦିରା ଆବାସ ଯୋଜନାରେ ଶିକରାର ଛୋଟ ପକ୍କାଘରଟିଏ ହୋଇଥିବା ଲକ୍ଷ୍ୟ କଲି। ପୂର୍ବେ ହରିଜନ ବସ୍ତିଠାରୁ ବେଶ୍ ଦୂରରେ ବ୍ରାହ୍ମଣ ଓ ଅନ୍ୟ ଜାତିର ଲୋକେ ବସ୍ତି ବାନ୍ଧୁଥିଲେ। ଜନସଂଖ୍ୟା ବୃଦ୍ଧି ଯୋଗୁଁ ଏବଂ ଅଛୁଆଁ ଭାବ କିଛିଟା ଲାଘବ ହୋଇଥିବାରୁ ହରିଜନଙ୍କ ଘର ପାଖ ଉଚ୍ଚ ଜାଗାରେ ଶୂଦ୍ରମାନେ ଘର କଲେଣି। ଶିକରା ମହାଲିକର ଘରଠାରୁ ମାତ୍ର ପାଞ୍ଚହାତ ଦୂରରେ ସେହି ସାହିର ବ୍ରାହ୍ମଣ ଲୋକଟିଏ ନୂଆଘର କରି ରହିବା ଦେଖିଲି। ଘୃଣ୍ୟ ଜାତିବିଦ୍ୱେଷ କାଳର ପ୍ରଭାବରେ ଧୀରେ ଧୀରେ ଲୋପ ପାଇଆସୁଛି।

ହରିଜନ ସାହିର ଅନତି ଦୂରରେ ବ୍ରାହ୍ମଣ ବସ୍ତି ଓ ଗୋଟିଏ ଖଣ୍ଡାୟତ ଘର। ଖଣ୍ଡାୟତ ଘରର ବର୍ତ୍ତମାନ କର୍ତ୍ତା ବାସୁଦେବ ସାମଲ ଗାଁ ମାଇନର ସ୍କୁଲର ଶିକ୍ଷକ। ସେ ନାଟକ ଲେଖନ୍ତି, ଗାଁର ଉନ୍ନୟନ କାର୍ଯ୍ୟରେ ନେତୃତ୍ୱ ନିଅନ୍ତି। ତାଙ୍କ ବାପା ମୋ ବଡ଼ଭାଇଙ୍କର ସାଙ୍ଗ ଥିଲେ। କଲିକତାରେ ପାନ ଦୋକାନଟିଏ କରି ସୁଖରେ ଥିଲେ। ସେ ଆଉନାହାନ୍ତି। ବାସୁଦେବର ସ୍ତ୍ରୀ ଆମ ଗାଁର ପୂର୍ବତନ ଶିକ୍ଷକ ମଧୁ ବିଶ୍ୱାଳଙ୍କ ଝିଅ। ମୋର ପରିଚୟ ପାଇ

ଆଦରରେ ମୋତେ ଚା ଓ ବିସ୍କୁଟ ଦେଲା। ପୁଅ ଝିଅ ତାଙ୍କର କଲେଜ ପାଠ ପଢ଼ିଛନ୍ତି। ମାତ୍ର ଚାକିରି କରି ନାହାନ୍ତି। କେବେ ଯେ ପାଠୁଆ ପିଲାଗୁଡ଼ିକ ଉପାର୍ଜନ କରିବେ, ଏହା ହିଁ ପ୍ରତ୍ୟେକ ଶିକ୍ଷିତ ପରିବାରର ଚିନ୍ତା। ଶିକ୍ଷକତା ସହିତ ବାସୁଦେବ ସାମଲ ନିଜର ପୈତୃକ ଜମିରେ ଉତ୍ତମ ରୂପେ ଚାଷ କରନ୍ତି।

ଗ୍ରାମ ପରିକ୍ରମା ସାରି ଘରକୁ ଫେରି ମହୁ ଖାଇଲି। ମହୁଖିଆ ପରେ ତୃପ୍ତିର ସହ ପୁରି ତରକାରି ଭୋଜନ ହେଲା।

ସନ୍ଧ୍ୟାରେ ବ୍ରାହ୍ମଣ ଭୋଜନ। ତା' ପରେ ଗ୍ରାମବାସୀମାନଙ୍କ ଚର୍ଚ୍ଚା। ସନ୍ଧ୍ୟା ୬ଟା ଠାରୁ ଭୋଜନ ପର୍ବ ଆରମ୍ଭ ହେଲା। ବାଳକ ବୃଦ୍ଧ ମିଶି ପ୍ରାୟ ୧୨ ଶହ ଆମନ୍ତ୍ରିତ ବ୍ୟକ୍ତି। ବ୍ରାହ୍ମଣ, କରଣ ଓ ଆତ୍ମୀୟମାନଙ୍କ ପାଇଁ ଖଳାବାଡ଼ିରେ ପଂକ୍ତି ଭୋଜନର ବ୍ୟବସ୍ଥା ହୋଇଥାଏ। ଦାଣରେ ଅନ୍ୟମାନେ ବସି ଭୋଜନ କରୁଥିଲେ। ଖାଦ୍ୟପେୟ ସମସ୍ତଙ୍କ ପାଇଁ ସମାନ, ତେବେ ସାମାଜିକ ସ୍ଥିତି ବିଚାରରେ ବସିବା ସ୍ଥାନରେ ସାମାନ୍ୟ ତଫାତ୍ ଥାଏ। ଆମ ନିମନ୍ତ୍ରଣ ରକ୍ଷା କରି ଧାମନଗର ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ଓ ସଭ୍ୟ କେତେଜଣ ଆସିଥାନ୍ତି। ଅଞ୍ଚଳର ରାଜନୀତି ଓ ଆମର ବିଧାୟକଙ୍କ ପ୍ରସଙ୍ଗରେ କଥାବାର୍ତ୍ତା ବେଳେ ଚେୟାରମ୍ୟାନ୍‌ଙ୍କ ପାଖ ଲୋକଙ୍କ ଠାରୁ ଶୁଣିଲି ଯେ ସେମାନେ ଆଗାମୀ ନିର୍ବାଚନରେ ଏହି ବିଧାୟକଙ୍କୁ ନିର୍ବାଚିତ ହେବାକୁ ଚାହାନ୍ତି ନାହିଁ। ଚେୟାରମ୍ୟାନ୍ ମୋତେ ଲକ୍ଷ୍ୟ କରି କହିଲେ 'ଆପଣ ତ ଆସିଲେ ନାହିଁ' ଅର୍ଥାତ୍ ମୁଁ ପ୍ରତ୍ୟକ୍ଷ ରାଜନୀତି କଲିନାହିଁ। କରିଥିଲେ ସେମାନେ ମୋତେ ସମର୍ଥନ କରିଥାନ୍ତେ ବୋଲି ଇଙ୍ଗିତ କଲେ। ସେମାନଙ୍କର କଥା ଓ କାର୍ଯ୍ୟ ଭିତରେ ତଫାତ୍ ମୁଁ ଭଲ କରି ଜାଣେ। ମୁଁ ଉତ୍ତର ଦେଲି "ଆପଣଙ୍କ ପ୍ରଶ୍ନର ମର୍ମାର୍ଥ ମୁଁ ଜାଣେ, ମୋର ଉତ୍ତର ଆପଣ ବେଶ୍ ଅନୁମାନ କରିପାରିବେ।" ମୋର ଶ୍ଳେଷପୂର୍ଣ୍ଣ ଉତ୍ତରରେ ସେମାନେ ଚୁପ୍ ରହିଲେ। କିଛି ସମୟ ପରେ ବିଧାୟକ ବାବୁ ତାଙ୍କର ଚେଲାଚାମଣ୍ଡା ଧରି ଆସିଲେ। ମୁଁ ତାଙ୍କ ବାପାଙ୍କର ପ୍ରିୟଲୋକ ଥିଲି। ବିଧାୟକଙ୍କ ମୋ ପ୍ରତି ଭକ୍ତି ଅତୁଟ ଅଛି। ଦ୍ୱିତୀୟ ପୁତୁରା ଉଭୟ ବିଧାୟକ ଓ ଚେୟାରମ୍ୟାନ୍‌ଙ୍କର ପ୍ରିୟ। ରାଜନୀତିର ପ୍ରଭାବରେ ଗାଁ ଲୋକେ ବେଶ୍ ଚତୁର ହେଲେଣି। ଗଣତନ୍ତ୍ର ଓ ପଞ୍ଚାୟତିରାଜର ଏ ଆଶୀର୍ବାଦ ନା ଅଭିଶାପ ?

## (୪)

ନିଦ ଭାଙ୍ଗିଗଲା, ପାହାନ୍ତିଆ ପହର, କାନରେ ମୋର ଗୁଞ୍ଜରି ଉଠୁଥାଏ - 'କଳା କଳେବର କହ୍ନେଇ ସଙ୍ଗେ ରୋହିଣୀ ସୁତ, କରନ୍ତି ମଥୁରା ବିଜୟ ଦାଣ୍ଡେ ଦେଖ ସଂଗାତ।' ଆମ ଗାଁ ଧୂଳି ମାଟି ଦାଣରେ ଆଈ ମା' ଦେଇଥିବା ପାଟ ଧୋତିଟିଏ ପିନ୍ଧି ବେକରେ ନାଲି ଗାମୁଛା ପକେଇ, ହାଫ୍ ସାର୍ଟ ପିନ୍ଧି ମାମୁଁ ଘରକୁ ଯାଉଛି। ସଙ୍ଗରେ ଆଈ। ନିଜର ମାମୁଁ କି ଅଜା ନାହାନ୍ତି, ମରି ଯାଇଛନ୍ତି। ଅଜାଙ୍କର ପୁତୁରା ଓ ଲଗ୍ନିକ ସାନ ଭାଇ ଅଛନ୍ତି।

ମାମୁଁ ଘର ପାରିପଦା, କଟକ ଜିଲ୍ଲାର ଅହିୟାସ ତଳକୁ । ଆମ ଗାଁ'ରୁ ସିଧା ବିଲବାଟେ ପ୍ରାୟ ଚାରି ପାଞ୍ଚ ମାଇଲ୍ ଦୂର ହେବ ।

ଗାଆଁଠାରୁ ପ୍ରାୟ ଦୁଇ ମାଇଲ୍ ବାଟ ଗଲେ ବୈତରଣୀ ନଦୀ ପାର ହେବାକୁ ପଡ଼େ । ଅର୍ଦ୍ଧାଳିଆ ଗାଁ' ପାଖ ଦେଇ ଆଖଣ୍ଡଳମଣି ଆଡ଼କୁ ବହିଯାଇଛି ବୈତରଣୀ । ଫଗୁଣ-ଚୈତ୍ର ମାସ ବେଳକୁ ଅର୍ଦ୍ଧାଳିଆ ପାଖ ବୈତରଣୀରେ ବେଶି ପାଣି ନ ଥାଏ । ନଈରେ ପଶି ଯାଉଁ । ଅନ୍ୟ ଦିନେ ଡ଼ଙ୍ଗାରେ ନଈ ପାର ହେବାକୁ ପଡ଼େ । ଅର୍ଦ୍ଧାଳିଆ ଗାଁ' ଅତିକ୍ରମ କଲାପରେ ଗୋଟିଏ ବଡ଼ ପାଟ ପଡ଼େ । ବିସ୍ତୀର୍ଣ୍ଣ ଖାଲୁଆରଖ ଜମି, ପ୍ରାୟ ୨ମାଇଲ ଲମ୍ବ, ପାଟ ଶେଷରେ ଗାଁ'ଟିଏ, ନାଁ ତାର ସୁଲୁପାଟ, ତାର ଡାହାଣ ପଟରେ ମାମୁଁଘର ଗାଁ' ପାରିପଦା ।

ଛୋଟ ପିଲା ଥିଲାବେଳେ ଦୂର ଗାଁ'କୁ ଯିବା ପାଇଁ ମନ ବଡ଼ ଉତ୍ସୁକ ହୁଏ । ବନ୍ଧୁବାନ୍ଧବ ଘର କି ଯାନି ଯାତରା ଦେଖିବାକୁ ମନ ଅସ୍ଥିର । ସେ କାଳରେ ତ ଭଲ ରାସ୍ତା ବା ସଡ଼କ ନ ଥିଲା, ବିଲ ଜମିରେ ଖାଲ ଜାଗାରେ ପାଣି ଭିତରେ ଠାଏ ଠାଏ ପଶି କରି ଯିବାକୁ ପଡ଼େ । ଭାବିଲେ ଆଜି ଆଶ୍ଚର୍ଯ୍ୟ ଲାଗେ, ବିଲର ଅମଡ଼ା ବାଟରେ କୋଇଲି କଣ୍ଟା ମାଡ଼ି, ଖାଲି ପାଦରେ ମାମୁଁ ଘର ହେଉ କି ଠାକୁରାଣୀ ଯାତରା ହେଉ ଦେଖିଯିବାକୁ ପିଲା ମନରେ ଏତେ ବ୍ୟଗ୍ରତା କାହିଁକି ଜାତ ହୁଏ ? ଦୁର୍ବଳ ଦେହ, ଅଶକତ ପାଦ, ସଙ୍ଗରେ ବୁଢ଼ୀ ଆଈ, ମଧ୍ୟାହ୍ନଭୋଜନ ପରେ ଖରାଦିନରେ ଧୀରେ ଧୀରେ ଚାଲି ବାଟରେ ବିଶ୍ରାମନେଇ ସଞ୍ଜ ହୋଇ ଆସୁଥିବା ବେଳକୁ ମାମୁଁ ଘର ଗାଁ'ରେ ପହଞ୍ଚୁ । ମାମୁଁ ଘର ଗାଁ'ର ପଶ୍ଚିମମୁଣ୍ଡରୁ ପୂର୍ବ ମୁଣ୍ଡ ପର୍ଯ୍ୟନ୍ତ ସମସ୍ତ ଗାଁ'ରେ ପ୍ରାୟ ୬୦/୭୦ ଘର କେବଳ ମୋ ଜାତି, ତେଲି ପରିବାର । କିଏ ମାମୁଁ, କିଏ ଅଜା, କିଏ ଭାଇ, ନୂଆବୋଉ, ମାଉଁ, ଆଈ । ଅଦ୍ଭୁତ ମୋ ଆଈ । ଗାଁ ମୁଣ୍ଡର ପ୍ରଥମ ଘର ଦୁଆରଠାରୁ ଯାହାକୁ ଦେଖାହୁଏ, ତାକୁ ମୁଣ୍ଡିଆ ମାରିବାକୁ କହେ ।

ମୁଁ ଗାଁ'ର ପ୍ରାୟ ଅଧାଘର ଦୁଆରେ ମୁଣ୍ଡିଆ ମାରି ଆଈର ଏକ ଭିତିରିଆ ଘରେ ପହଞ୍ଚିଲା ବେଳକୁ ହାଲିଆ ହୋଇଯାଇଥାଏ । ସେହି ଗାଁ'କୁ ଯାତ୍ରା, ବିଲ ବାଟଚଲା, ପିଲାବେଳର ମାମୁଲି କଥାକୁ ଆଜି କାହିଁକି ସପନରେ ଦେଖେଁ ମୁଁ ଭାବିପାରେ ନା, ସ୍ତ୍ରୀ ଆଗରେ ସପନ କଥା କହିଲେ ସେ କୁହନ୍ତି, 'ତୁମେ ତ ସବୁବେଳେ ଗାଁ' କଥା ସ୍ୱପ୍ନ ଦେଖୁଛ । ଗାଁ'କୁ ଖୁବ୍ ଭଲ ପାଅନା ?' ହଁ, ମୁଁ ଗାଁ'କୁ ଖୁବ୍ ଭଲ ପାଏ । ଗାଁ'କୁ ଚକ୍‌ମକ ସହର କରି ଦେବାର ସ୍ୱପ୍ନ ମୁଁ ପିଲାଦିନେ ଦେଖୁଥିଲି । ସହର କ'ଣ, କେତେ ସୁଖ ଦୁଃଖ, କେତେ ଭଲମନ୍ଦ ସେଥିରେ ଭରି ରହିଛି ମୋର ଧାରଣା ନଥିଲା । ତେବେ ଦୁଇ ମାଇଲ୍ ଦୂରରେ ଥିବା ଧୁଷୁରୀହାଟ, ଯେଉଁଠି ମଙ୍ଗଳବାର ଓ ଶନିବାର ଦିନ ସପ୍ତାହରେ ଦୁଇଥର ହାଟ ବସେ, ବହୁ ବେପାରୀ ଓ ଖର୍ଦ୍ଦାର ଜମା ହୁଅନ୍ତି, କିସମ କିସମର ଜିନିଷ ବିକ୍ରି ହୁଏ, ବରା, ଗୁଲୁଗୁଲା, ଜଲପି ଭଳି ଲୋଭନୀୟ ଜିନିଷ ଖାଇବାକୁ ମିଳେ, ତାହା ଦେଖି ଏବଂ ଗାଁଠାରୁ ଦୁଇ ମାଇଲ ଦୂର ସାଳନ୍ଦୀନଈ କୂଳରେ ପୂର୍ବ ଦିଗରେ ଥିବା ଡାକୁଆ ନାହାକାଣୀ ଯାତ୍ରାର କୋଳାହଳମୟ ଦୃଶ୍ୟ, ହରେକ୍ ରକମର ଜିନିଷ, ସୁନ୍ଦର ଖେଳନା ଦେଖି ଭାବି ନେଇଥିଲି, ସହରଟି ଏହିଭଳି

## ମୋ ଗାଁ, ମୋ ମାଟି

ଏକ ମନୋରମ ଆନନ୍ଦଦାୟକ ଜାଗା, ସେଠାରେ ସବୁଦିନ ଲୋକ ସମାବେଶ ହେଉଥିବ, ଯାତରା ଲାଗିଥିବ, ଅଧିକନ୍ତୁ ମାଟି କାଦୁଅ ନ ଥିବ, ପକ୍କାରାସ୍ତାରେ ପାଦରେ ଧୂଳି ଲାଗୁ ନ ଥିବ, ଟିକି ପାଦକୁ ବଥା ଲାଗୁ ନ ଥିବ। ମୋର ବାପା ଭାଇ, ସାହି ପଡ଼ିଶାର ଦାଦା ଭାଇଙ୍କଠାରୁ କଲିକତା ସହରର ଗାଡ଼ି ଘୋଡ଼ା, ଧନ୍‌ଧାନ୍ୟ କଥା ଶୁଣିଛି। ସେମାନେ ୪/୬ ମାସ କି ବର୍ଷକ ପରେ ଧାନକଟା ବେଳକୁ ଗାଁ'କୁ ଆସିଲାବେଳେ କେତେ ଯେ ସଫା ସୁତୁରା ଦିଶନ୍ତି, ସୁନ୍ଦର ଜାମାଲୁଗା ପିନ୍ଧିଥାନ୍ତି, ଦେହର ଅତରଗନ୍ଧ ପିଲାଠାରୁ ବଡ଼ ମଣିଷ ସମସ୍ତଙ୍କୁ ମୋହିଦିଏ। ଏ ସମସ୍ତ ମୋର ପିଲା ମନରେ ଏକ ଛାପ ପକେଇଥାଏ। ମନରେ ଏକ ସ୍ୱପ୍ନ ରଚିଥାଏ। ମୁଁ ବଡ଼ ହେଲେ ଆମ ଗାଁ'ଟାକୁ ଏକ ସହର କରିଦେବି, ଗାଁ'ର ଦାଣ୍ଡ ଓ ଘର ଉପରେ ବିରାଟ ପକ୍କା ଛାତ ପଡ଼ିଥିବ, ତଳ ଚୂନ ପଥରରେ ପକ୍କା ହୋଇଥିବ। ବର୍ଷା ଋତୁର ମୂଷଳ ବର୍ଷା ପିଲାଙ୍କୁ କି ଲୋକମାନଙ୍କୁ ହଇରାଣ ହରକତ କରିବ ନାହିଁ। ଏ ସ୍ୱପ୍ନ ବାସ୍ତବ କି ଅବାସ୍ତବ, କି ଅର୍ଦ୍ଧବାସ୍ତବ ବିଚାର କରିବାର ପ୍ରୟୋଜନ ନାହିଁ। ଏତିକି ସତ୍ୟ ଯେ, ପିଲାର କଅଁଳ ସରଳ ପ୍ରାଣରେ ନାନା ଶୁଣାକଥା, ଦେଖା ଛବି, ପାଖ ପରିବେଶ ସ୍ପନ୍ଦନ ଖେଳାଇଥାଏ। ନୂଆ ଚିନ୍ତା ଓ କଳ୍ପନା ଆଣି ଦେଇଥାଏ। ସେ ସ୍ୱପ୍ନ ଦେଖେ ଭବିଷ୍ୟତର,ସ୍ୱପ୍ନ କଳ୍ପନା, ଆଶା, ଆକାଂକ୍ଷା ତାର ଚରିତ୍ର ଓ ବ୍ୟକ୍ତିତ୍ୱ ଗଢ଼ିଚାଲେ।

ଗାଁ'କୁ ସହରରେ ପରିଣତ କରିବାର ଯେଉଁ ସ୍ୱପ୍ନ ମୋ ମନରେ ଜାତ ହୋଇଥିଲା, ତା' ମୁଁ ନିଜେ ସିନା ସଂପୂର୍ଣ୍ଣ ସାକାର କରିପାରି ନାହିଁ, ତେବେ କାଳର ପ୍ରବାହରେ ଚିନ୍ତାର ପ୍ରସାରରେ ଗଣତାନ୍ତ୍ରିକ ସରକାର ଆମର ଗାଁ'କୁ ଧୀରେ ଧୀରେ ସହର ଚଳି ଗାଁରେ ପରିଣତ କରି ଚାଲିଛନ୍ତି। ଜିଲ୍ଲାର ପ୍ରଧାନ କେନ୍ଦ୍ରସ୍ଥଳୀ ଭଦ୍ରକରୁ ଆଖଣ୍ଡଳମଣି ପର୍ଯ୍ୟନ୍ତ ଅନ୍ନପାଳ କୋଠାର ଧୂଷୁରି ଦେଇ ପିଚୁରାସ୍ତା ତିଆରି ହୋଇଛି। ପଞ୍ଚାୟତ କେନ୍ଦ୍ରରୁ ପ୍ରତ୍ୟେକ ଗାଁଆକୁ ଗେଙ୍ଗୁଟିଗୁଡ଼ି ଓ ସ୍ଥାନେ ସ୍ଥାନେ ପିଚୁ ରାସ୍ତା ହୋଇଗଲାଣି।

ଏବେ ଗୋଟିଏ ଗାଁରୁ ଅନ୍ୟ ଏକ ଗାଁ'କୁ ଯିବାକୁ ବିଲ ଭିତରେ ବା ବିଲ ହିଡ଼ରେ କୋଇଲିକଣ୍ଟା ମାଡ଼ି ଯିବାକୁ ପଡ଼େନାହିଁ। ଗାଁ' ଭିତରକୁ ଅଟୋରିକ୍ସା, ରିକ୍ସା,ମଟର ସାଇକେଲ ଯାଉଛି। ଭିତରେ କେତେକଙ୍କର ମଟର ସାଇକେଲ ଅଛି। ମୋ ପିଲାବେଳେ ମୋ ଗାଁରେ ସାଇକେଲ୍‌ଟିଏ ନ ଥିଲା, ରହନ୍ତା ବା କିମିତି ? କାଦୁଅରେ କ'ଣ ସାଇକେଲ ଚାଲନ୍ତା ? ଶଗଡ଼ଟିଏ ବି ନ ଥିଲା। କ୍ୱଚିତ୍ ଲୋକ ଓ ପିଲାଏ ଜୋତା ପିନ୍ଧୁଥିଲେ। ଏବେ ବିନା ଜୋତାରେ କେହି ଚାଲୁ ନାହାନ୍ତି। ପିଲାଙ୍କ ଟିକି ପାଦ କାଟିବାର ଅବକାଶ ଖୁବ୍ କମ୍। ରାସ୍ତା କଡ଼େ ଦୋକାନ ହେଲାଣି। ସେ ସବୁ ଦୋକାନରେ ବିସ୍କୁଟ୍, ଲଡୁଠାରୁ ଆରମ୍ଭ କରି ଚା', ଜଳଖିଆ ଓ ସ୍କୁଲପିଲାଙ୍କ ପଢ଼ା ଲେଖା ଜିନିଷ ଓ ମନୋହରୀ ଦ୍ରବ୍ୟ ମିଳିଲାଣି।। ପ୍ରଧାନମନ୍ତ୍ରୀଙ୍କ ଗ୍ରାମ୍ୟ ସଡ଼କ ଯୋଜନା, ପଞ୍ଚାୟତିରାଜ, ପଞ୍ଚବାର୍ଷିକ ଯୋଜନାରେ ଯେ ଏହା ମୂର୍ତ୍ତିମନ୍ତ ସଫଳତା, ଏହା କହିବା ଦ୍ୱିରୁକ୍ତି ହେବ ନାହିଁ। ବିଜୁଳି ଆଲୁଅ ଗାଁ' ଗଣ୍ଡାରେ ଥିବା ଅନ୍ଧାର ରାତିର ଭୟ ଓ ଅସୁବିଧା ଦୂର କରି ଦେଇଛି।

ଯେଉଁ ଧୂଷୁରୀ ହାଟରେ ସପ୍ତାହକେ ଦୁଇଥର ହାଟ ବସୁଥିଲା, ଚାଷୀମାନଙ୍କ ଉତ୍ପନ୍ନ ଦ୍ରବ୍ୟ ପନିପରିବା, ଡାଲି, ଚାଉଳ ସମେତ ଭଦ୍ରକ ଓ କଲିକତା ସହରରୁ ଆଣିଥିବା ଲୁଗା, ବାସନକୁସନ ଓ ସୌଖୀନ ଦ୍ରବ୍ୟ ବିକ୍ରି ହେଉଥିଲା, ସେ ହାଟରେ ଏବେ ବେଶ୍ ବଡ଼ ଦାମିକା ସୁସଜ୍ଜିତ ଦୋକାନ ଧାଡ଼ିକୁ ଧାଡ଼ି ଗଢ଼ି ଉଠିଲାଣି। ବଡ଼ ବଡ଼ ସହର ଭଳି ସୁସ୍ୱାଦୁ ହୋଟେଲ ଓ ମିଠେଇ ଦୋକାନ ଖୋଲାହୋଇଛି। ପୂର୍ବ ଭଳି ସପ୍ତାହରେ ଦୁଇଥର ହାଟ ବସୁଥିଲେ ହେଁ ସବୁ ପ୍ରକାର ସ୍ଥାୟୀ ଦୋକାନ ସାପ୍ତାହିକ ହାଟର ଗୁରୁତ୍ୱ କମେଇ ଦେଇଛି।

ସନ୍ଧ୍ୟାର ବିଜୁଳି ଆଲୁଅରେ ଏବଂ ରେଡ଼ିଓ କ୍ୟାସେଟ୍‌ର ମଧୁର ଲଳିତ ସଂଗୀତରେ ଧୂଷୁରୀ ହାଟ ଏକ ଛୋଟ ମନୋରମ ସହର ପାଲଟି ଯାଇଛି। ମୋର ପିଲାବେଳର ଚିନ୍ତା ଓ ବର୍ତ୍ତମାନର ଗାଁ ଗଣ୍ଡାର ସ୍ଥିତି କଥା ଭାବିଲା ବେଳେ ହାରମାନ ହେସେଙ୍କ ଉକ୍ତି ମନେ ପଡ଼ିଯାଏ। ସେ କହିଛନ୍ତି – । "Utopias are not meant to be slavishly realised but to make men regard the difficult things for which we nevertheless yearn is possible and to strengthen our faith in these possibilities" ଆମର ଉଦ୍ଭଟ ଚିନ୍ତା ଠିକ୍ ସେହିପରି ରୂପାୟିତ ହେବାକୁ ଉଦ୍ଦିଷ୍ଟ ନୁହେଁ। ଯେଉଁ ଇପ୍ସିତ ପଦାର୍ଥ ପାଇବା କଷ୍ଟକର ତାହା ଯେ ସମ୍ଭବ ହେବ, ଏହି ବିଶ୍ୱାସ ବଳବତ୍ତର କରିବା ଏହାର ଲକ୍ଷ୍ୟ। ଆମ ପିଢ଼ିର ପିଲାଏ ଯାହା ସ୍ୱପ୍ନ ଦେଖୁଥିଲେ ସମୟ କ୍ରମେ ତାହା କିଛିଟା ବାସ୍ତବ ହେଉଛି। ଆଜିର କମ୍ପ୍ୟୁଟର ଯୁଗରେ ପିଲାଏ ଭବିଷ୍ୟତ ପାଇଁ କି ସ୍ୱପ୍ନ ଦେଖୁଛନ୍ତି, କିଏ କହିପାରିବ ?

(୬)

ନାଲିଗୁଡ଼ି ମାଟି ପକ୍କା ରାସ୍ତାରେ ମୁଁ ଚାଲିଛି ମୋ ଗାଆଁରୁ ଧୂଷୁରି ହାଟ। ସେଠାରୁ ବସ୍ ବା ଟ୍ରେକ୍‌ର ଧରି ଭଦ୍ରକ ଯିବି। ଧୂଷୁରି ହାଟ ଅଳ୍ପ ଦୂର ଅଛି। ସଡ଼କର ଡାହାଣ କଡ଼ର ଅନତି ଦୂରରେ ଗୋଟିଏ ସୁନ୍ଦର ନୂଆ ପକ୍କା ପିଣ୍ଡାରେ ବସିଛନ୍ତି ଜଣେ ଗୋରା ପ୍ରୌଢ଼ା ଲୋକ। ସହଜରେ ଚିହ୍ନି ପାରିଲି ତାଙ୍କୁ। ସେ କିଛି ବର୍ଷ ତଳେ ଧୂଷୁରି ପଞ୍ଚାୟତରେ ଥିଲେ ସରପଞ୍ଚ। ମୋ ପ୍ରିୟ ଏମ୍.ଏଲ୍.ଏ. ସ୍ୱର୍ଗତ ହୃଦାନନ୍ଦ ମଲ୍ଲିକଙ୍କର ବିଶ୍ୱସ୍ତ ସାଥୀ। ତାଙ୍କର ପୈତୃକ ଘରଟି ଗାଁ ଭିତରେ ଥିଲା। ପରିବାର ସଂଖ୍ୟା ବଢ଼ିବାରୁ ବୋଧହୁଏ ରାସ୍ତା ପାଖକୁ ଲାଗି ନୂଆ ଘରଟିଏ କରିଛନ୍ତି। ତାଙ୍କ ପାଖକୁ ଗଲି। ନମସ୍କାର କଲି। ସେ ମୋତେ ଦେଖି ବେଶ୍ ଖୁସି ହେଲେ। ବୟସ ହେବାରୁ ସେ ଆଉ ଦଳୀୟ ରାଜନୀତିରେ ଅଂଶଗ୍ରହଣ କରୁ ନାହାନ୍ତି। ସଂସାରର ସବୁ ଦାୟିତ୍ୱ ତୁଲାଇ ଦେଇଛନ୍ତି। ଝିଅ ବାହା ପୁଅଙ୍କ ପାଠପଢ଼ା। କେଉଁ ପୁଅ ଚାକିରି ତ କେଉଁ ପୁଅ ଚାଷ ବ୍ୟବସାୟ କରୁଛି, ଉପାର୍ଜନରେ ଲାଗିଛନ୍ତି। ଭଦ୍ରଲୋକ ହରି ମଲ୍ଲିକ ସଡ଼କ ପାଖ ଘର ପିଣ୍ଡାରେ ବସି ଦେଖୁଛନ୍ତି ସମୟର ଗତି। ଲୋକଙ୍କ ପ୍ରଗତି କିମ୍ବା ଦୁର୍ଗତି। ଦୂରଦୂରାନ୍ତ ଗାଁ'ର ଲୋକେ ସେହି ବାଟ ଦେଇ ଯାଆନ୍ତି ଜିଲ୍ଲା ମହକୁମା

ଭଦ୍ରକ, ରାଜଧାନୀ ଭୁବନେଶ୍ୱର ବା ବଡ଼ ଡାକ୍ତରଖାନା, ହାଇକୋର୍ଟ, କଟକ। ଷଷ୍ଠ ଦଶକର ମଧ୍ୟଭାଗରେ ସ୍ୱର୍ଗତ ହୃଦାନନ୍ଦ ମଲ୍ଲିକ ଯେତେବେଳେ ବିଜୁ ପଟ୍ଟନାୟକଙ୍କ ଇଙ୍ଗିତ୍‌ରେ ଓ.ଟି.ଏମ୍.ଛାଡ଼ି ଧାମନଗର ନିର୍ବାଚନ କେନ୍ଦ୍ରର ବିରୋଧୀ କଂଗ୍ରେସ ନେତା ଭାବେ କାର୍ଯ୍ୟ ଆରମ୍ଭ କଲେ ସେତେବେଳେ ଯେଉଁ କେତେଜଣ ସେ କାଳର ଗାନ୍ଧିବାଦୀ ନେତା ମହତାବ ପନ୍ଥୀ ସ୍ୱାଧୀନତା ସଂଗ୍ରାମୀ ମୂରଲୀଧର ଜେନାଙ୍କ ବିପକ୍ଷରେ ହୃଦାନନ୍ଦ ବାବୁଙ୍କୁ ସାହାଯ୍ୟ କରୁଥିଲେ ସେମାନଙ୍କ ମଧ୍ୟରେ ହରିବାବୁ ଥିଲେ ଅନ୍ୟତମ। ସୌମ୍ୟଦର୍ଶନ ଦୀର୍ଘାଙ୍ଗ ବିଶିଷ୍ଟ ହରିବାବୁ ବେଶ୍ ଭଦ୍ର ଓ ବୁଝିବା ଶୁଝିବା ଲୋକ। ଶକ୍ତି ଓ ସୁଯୋଗ ମୁତାବକ ସେ କାଳରେ ସରପଞ୍ଚ ଭାବେ ନ୍ୟାୟ ଓ ନିଷ୍ଠାର ସହ ସେ ଜନତାର ସେବା କରିଥିଲେ। ତାଙ୍କ ବିରୋଧରେ ଲୋକଙ୍କ ମୁହଁରୁ ମୁଁ ଦୁର୍ନୀତି ଅଭିଯୋଗ ଶୁଣି ନାହିଁ। ସେଇଥିପାଇଁ ତାଙ୍କ ପ୍ରତି ମୋର ଶ୍ରଦ୍ଧା ଓ ସମ୍ମାନ। ଜୀବନର ଶେଷ ପର୍ଯ୍ୟାୟରେ ସେ ଯେ ପରିବାର ଭିତରେ ଆବଦ୍ଧ ରହି ଆନନ୍ଦରେ ଦିନ କାଟୁଛନ୍ତି ଜାଣି ମୁଁ ଖୁସି ହେଲି। ସେ ମୋର କୁଶଳ ସମାଚାର ପଚାରିଲେ। 'ଭଲ ଅଛି' କହିବା ଛଡ଼ା କ'ଣ ବା ମୁଁ କହିଥାନ୍ତି, ଜଣେ ନିର୍ଲିପ୍ତ ପ୍ରୌଢ଼ଙ୍କୁ। ତାଙ୍କଠାରୁ ବିଦାୟ ନେଇ ଆସିଲାବେଳେ ବାଟରେ ଭାବୁଥିଲି ଆଉ ଜଣେ ଦିବଂଗତ ଲୋକଙ୍କ କଥା। ସେ କିଛି ବର୍ଷ ତଳେ ଇହଧାମ ଛାଡ଼ି ଗଲେଣି। ଶହେ ପାଖାପାଖି ବର୍ଷ ବଂଚିଥିଲେ। ମୋ ଗାଁ ସ୍କୁଲର ପ୍ରଥମ ମାଷ୍ଟର ଥିଲେ। ସେତେବେଳେ ବୋଧହୁଏ ସ୍କୁଲଟି ସରକାରୀ ବା ଲୋକାଲ ବୋର୍ଡ଼ ଗ୍ରାଣ୍ଟ ପାଇ ନଥିଲା। ବେଶି ପାଠ ପଢ଼ି ନଥିବାରୁ ଆଉ ଶିକ୍ଷକ ହୋଇ ନ ଥିଲେ। ଜୀବନସାରା କଂଗ୍ରେସର ସମର୍ଥକ ଥିଲେ। ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷ ଭାବେ ଯୋଗ ଦେଇ ନ ଥିଲେ ମଧ୍ୟ ଅଗଷ୍ଟ ବିପ୍ଳବର ସେନାମାନଙ୍କୁ ସେ ସାହାଯ୍ୟ ସମର୍ଥନ କରୁଥିଲେ। ସ୍ୱର୍ଗତ ସଂଗ୍ରାମୀ ମୂରଲୀଧର ଜେନାଙ୍କର ସେ ଅତି ପ୍ରିୟ ଲୋକ ଥିଲେ। ତାଙ୍କ ଗାଁ 'ପୋଖରୀଆ'ଟି ସଂପୂର୍ଣ୍ଣ ରୂପେ କଂଗ୍ରେସର ସମର୍ଥକ। ସମ୍ଭବତଃ ସ୍ୱର୍ଗତ ଏହି ଲୋକ-ନାରଣ ନାୟକଙ୍କ ପ୍ରଭାବ ଏହାର କାରଣ ଥିଲା ?

ସ୍ୱର୍ଗତ ନାରଣ ବାବୁ କଳା ବାଙ୍ଗରା ପତଳା ଲୋକଟିଏ। ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିବା ଖଦଡ଼ ଧୋତିଟିଏ ପିନ୍ଧନ୍ତି। ଦେହରେ ଖଦଡ଼ ଫତୁଆ, କାନ୍ଧରେ ଖଦଡ଼ ଚାଦର। ପ୍ରତ୍ୟେକ ଦିନ ସକାଳେ ଓ ସଂଧ୍ୟାବେଳେ ପୋଖରିଆ ଗାଁରୁ ଏକ ମାଇଲ ଦୂର ଧୂଷୁରି ହାଟ ଆସନ୍ତି। ପାଦରେ ପୁରୁଣା ଚଟିଟିଏ କାଖରେ ବା ମୁଣ୍ଡ ଉପରେ ଛତାଟିଏ। ବେଶ୍ ନ୍ୟାୟବାନ୍ ସ୍ନେହୀ ଲୋକଟିଏ। ଆଦ୍ୟ ଯୌବନରେ ଶିକ୍ଷକତା ବା ଅବଧାନୀ କରୁଥିଲେ ବୋଲି ବୋଧହୁଏ ପାଠ ପଢୁଆ ପିଲା, କିଶୋର ଓ ଯୁବକମାନଙ୍କୁ ବହୁତ ଭଲ ପାଆନ୍ତି। ସେମାନଙ୍କୁ ପଢ଼ାପଢ଼ି କଥା ପଚାରନ୍ତି। ପାଠ ପଢ଼ି ଚାକିରି କଲା ପରେ ମଧ୍ୟ ସେମାନଙ୍କ ପ୍ରତି ପୂର୍ବର ସ୍ନେହ ଓ ଶ୍ରଦ୍ଧା ତାଙ୍କର ଅତୁଟ ଥାଏ। ଆମ ଅଞ୍ଚଳରେ ମୂରଲୀବାବୁଙ୍କ ପ୍ରେରଣାରେ ଗାଁ' ଗଣ୍ଡା ବୁଲି ଚାନ୍ଦା ସଂଗ୍ରହ କରି ସ୍କୁଲ ସ୍ଥାପନ କରିବାରେ ସେ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ। ଧୂଷୁରି ମାଇନର ସ୍କୁଲ, ହାଇସ୍କୁଲ ଓ ବାଳିକା ବିଦ୍ୟାଳୟ ସ୍ଥାପନ ଓ ବିକାଶରେ ତାଙ୍କ ଅବଦାନ

ଅନସ୍ୱୀକାର୍ଯ୍ୟ। ଏ ଅଞ୍ଚଳର ଲୋକେ ଶ୍ରଦ୍ଧାରେ ଏବଂ କେତେକ ତଥାକଥିତ ଶିକ୍ଷିତ ଯୁବକ ଥଟ୍ଟାରେ ତାଙ୍କୁ ଧୁଷୁରି ଗାନ୍ଧି ବୋଲି କୁହନ୍ତି। ମୁଁ ଭଲ ପାଠ ପଢ଼ି ଅଧ୍ୟାପକ ହେଲି। ଧୁଷୁରିରେ ଏକ ସାଂସ୍କୃତିକ ସଂସଦ ଗଢ଼ି ରଜବେଳେ ସାଂସ୍କୃତିକ ସଭାର ଆୟୋଜନ କରୁଥିଲି। ତେଣୁ ମୋ ପ୍ରତି ତାଙ୍କର ଅନାବିଳ ସ୍ନେହ ଥିଲା। ଯଦିଓ ମୁଁ ରାଜନୀତି କ୍ଷେତ୍ରରେ କଂଗ୍ରେସ ଓ ସେ ଦଳର ନେତା ମୁରଲୀବାବୁଙ୍କୁ ସମର୍ଥନ କରୁ ନଥିଲି। ଧୁଷୁରି ହାଟ ପାଖେଇ ଆସୁଥାଏ। ନାରଣବାବୁଙ୍କ ସ୍ମୃତି ମୋତେ ଆଲୋଡ଼ିତ କରୁଥାଏ। ପାରନ୍ତୁ ବା ନ ପାରନ୍ତୁ ଧୁଷୁରି ହାଟ ସହ ସଂଯୋଗ ରଖୁଥିବା ବ୍ୟବସାୟ ଓ ଅନ୍ୟ କାମରେ ଧୁଷୁରିକୁ ଆସିଥିବା ଆଖପାଖ ଅନେକ ଗାଁର ମୁଖିଆ ଓ ସାଧାରଣ ଲୋକଙ୍କ ସହ ତାଙ୍କର ସୁସମ୍ପର୍କ, ସମସ୍ତଙ୍କ ପାଇଁ ଦରଦ, ସୁଖ, ଦୁଃଖ ବୁଝିବାର ବ୍ୟଗ୍ରତା, ମୋତେ ଅଭିଭୂତ କରିଦିଏ। ପ୍ରତ୍ୟେକ ଦିନ ଚାଲି ଚାଲି ଖରା, ବର୍ଷା, ଶୀତରେ ଅଂଚଳର କେନ୍ଦ୍ରସ୍ଥଳୀ ଧୁଷୁରି ହାଟକୁ ଆସି ରାତିରେ ମିଞ୍ଜି ମିଞ୍ଜି ଜଳୁଥିବା ଲଣ୍ଠନ ଓ ଛତାବାଡ଼ି ଧରି ଚାଲିବା ମୂଳରେ କି ପ୍ରଚ୍ଛେଦନା, କି ଦର୍ଶନ ଥିଲା ? ସେ କ'ଣ ସମଗ୍ର ରାଜ୍ୟର ଛବି ଦେଖୁଥିଲେ ଏହି ଅଞ୍ଚଳର ହସକାନ୍ଦ ମୁହଁରେ ? ଜାଣିବାକୁ ଚାହୁଁଥିଲେ ଅଗଷ୍ଟ ବିପ୍ଳବର ସ୍ୱପ୍ନ କେତେଦୂର ସାକାର ହୋଇଛି ? ଦେଶଭକ୍ତି ଓ ଗାନ୍ଧିବାଦର ଗଭୀର ମଧୁର ଉଲ୍ଲସିତ ଭାବ ଅନ୍ତରରେ ଉପଲବ୍ଧି କରୁଥିଲେ ଏ ଅଞ୍ଚଳର ଚାଷୀ, ମୂଲିଆ, ଛୋଟ ବ୍ୟବସାୟୀ, ଉଦୀୟମାନ ଭବିଷ୍ୟତ ନାଗରିକ, ସ୍କୁଲପିଲା, କିଶୋର, ତରୁଣଙ୍କ ପ୍ରୀତିମୟ ସଂସ୍ପର୍ଶରେ ?

ଭାବି ଭାବି ଚାଲୁଥାଏ, ପହଞ୍ଚିଗଲି ହାଟ ଆରମ୍ଭ ଜାଗାରେ। ଡାହାଣ କଡ଼କୁ ଚାହିଁଦେଲି। ଜଣାଶୁଣା ଚା', ଜଳଖିଆ ଦୋକାନଟିଏ। ବସିଛନ୍ତି ପୂର୍ବ ପରିଚିତ ପ୍ରୌଢ଼ ଜଣେ। ବୈରାଗୀ ମଲ୍ଲିକ, ଧୁଷୁରି ସାଂସ୍କୃତିକ ସଂସଦର ବାର୍ଷିକ ଉତ୍ସବ ଯେତେବେଳେ ମୁଁ ଓ ମୋର ପ୍ରିୟ ଛାତ୍ର କେତେଜଣ ମିଶି ପ୍ରତ୍ୟେକ ବର୍ଷ ରଜସଂକ୍ରାନ୍ତି ସମୟରେ ପାଳନ କରୁଥିଲୁଁ ଏହି ଦୋକାନରେ ସାଙ୍ଗସାଥି ଧରି ଚା' ଜଳଖିଆ ଖାଉଥିଲି। ଭଦ୍ରଲୋକ, କଂଗ୍ରେସ ସମର୍ଥକ, ତେବେ ମୋ ପ୍ରତି ଏବଂ ଅନ୍ୟ ଶିକ୍ଷକମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ସମ୍ମାନ ଥାଏ। ତାଙ୍କୁ "ନମସ୍କାର ଜଣାଇ ପଚାରିଲି।" କିମିତି ଅଛନ୍ତି ? 'ଭଲ ଅଛି' କହି ବସିବାକୁ ଅନୁରୋଧ କଲେ। ଚା' କପେ ପିଇବାକୁ ଦେଲେ। ଗାଁ କଥା, ଭୁବନେଶ୍ୱର କଥା ପଚାରିଲେ। କିଛି ସମୟ ଗପସପ କରି ବିଦାୟ ନେଇ ଆସିବାକୁ ଉଦ୍ୟତ। ଚା' ପଇସା ବଢ଼ାଇ ଦେଲି। ସେ ଦୁଃଖ କରି କହିଲେ, 'ମୋତେ କ'ଣ ଆପଣ ଚା ମାଗିଥିଲେ, ମୁଁ ଶ୍ରଦ୍ଧାରେ ଦେଲି, ପଇସା ନେବିନି'। ମୋତେ ଲାଜ ଲାଗିଲା, ଅଭିଭୂତ ବି ହେଲି। ବ୍ୟବସାୟୀର ହୃଦୟରେ ଲୁଚି ରହିଛି ବନ୍ଧୁବତ୍ସଳତା, ସ୍ନେହର ଦାନ ପ୍ରତିଦାନ।

ଏହି ସେହି ଧୁଷୁରି ହାଟ, ଅତୀତରେ ସାପ୍ତାହିକ ମିଳନର କେନ୍ଦ୍ରସ୍ଥଳୀ ଥିଲା। ସୀମିତ ଉତ୍ପନ୍ନ ଦ୍ରବ୍ୟ ଓ ପାଖ ସହରରୁ ଶଗଡ଼ରେ ଅଣାଯାଉଥିବା ଶିଳ୍ପଜାତ ଦ୍ରବ୍ୟର କିଣାବିକାର ପେଣ୍ଠ ଥିଲା। ଏବେ ସବୁଦିନିଆ ବଜାର ଗଢ଼ି ଉଠିଛି। ଛୋଟ ସହରଟେ ପାଲଟି ଆସୁଛି। ସହରୀକରଣ ସୁବିଧା ସୁଯୋଗ ସହ ଦୁର୍ଯୋଗ, ଦୁଷ୍କୃତି ବି ମୁଣ୍ଡ ଟେକୁଛି। ଦେଶୀ-ବିଦେଶୀ

ମଦ କେତେ ତରୁଣଙ୍କୁ ବିପଥଗାମୀ କରି ଦେଇଛି। ରାଜନୀତିର ବାଦ ବିସମ୍ବାଦ ଲୋକଙ୍କ ମନରେ ବିଦ୍ୱେଷର ମଞ୍ଜି ବୁଣି ଦେଉଛି। ସରଳ ଜୀବନ ଜଟିଳ ହୋଇଆସୁଛି।

ଆଧୁନିକତାର ଚାକଚାକ୍ୟ ଦେଶ ବିଦେଶର ନାନା ସଂସ୍କୃତି, ହିନ୍ଦୀ, ଇଂରାଜୀ, ଗୀତ, ନାଚ, କାମ, କ୍ରୋଧ ଉଦ୍‌ବେଳିତ ଭିଡ଼ିଓ ପଲ୍ଲୀର ମାର୍ଜିତ ସରଳ ଧର୍ମପ୍ରଣୋଦିତ ସଂସ୍କୃତିକୁ ହଟେଇବାକୁ ଲାଗିଲାଣି। ସମୟର ସୁଅରେ ଭାସି ଯାଉଛି ସରଳ ଦୁର୍ବଳ ମଣିଷ। ଭଲମନ୍ଦ, ସୁଖଦୁଃଖ ଆଘାତ ପ୍ରତିଘାତରେ ଗତି କରୁଛି ଜୀବନ। ଦ୍ୱନ୍ଦ୍ୱ ଭିତରେ ବଞ୍ଚୁଛି ମଣିଷ। ସେ ଯେ ବଞ୍ଚୁଛି ତା ମର୍ମେ ମର୍ମେ ଉପଲବ୍ଧି କରୁଛି। ପରିବର୍ତ୍ତନରେ ଆମେ ସୁଖୀ କି ଦୁଃଖୀ ଭାବିବାର ଅବକାଶ ନାହିଁ।

## (୭)

"The World turns, the world changes, but one thing is constant, there is perpetual struggle of good and evil"

T.S. Eliot.

ଯୁଗ ବଦଳି ଚାଲିଛି। ସମୟର ଢେଉରେ ବିଶ୍ୱର ରୂପ ବଦଳି ଚାଲିଛି। ବିଶ୍ୱରେ ଭାରତ ଏକ ଉନ୍ନତ ସଭ୍ୟତାସଂପନ୍ନ ଐତିହ୍ୟମୟ ବିଶାଳ ଦେଶ। ପୃଥିବୀର ଏକ ଷଷ୍ଠାଂଶ ଲୋକ ଏଠାରେ ବାସ କରନ୍ତି। ଭାରତ ଭିତରେ ଓଡ଼ିଶା ଗୋଟିଏ ଛୋଟ ରାଜ୍ୟ, ଅନଗ୍ରସର ମାତ୍ର ସଂସ୍କୃତିସଂପନ। ଓଡ଼ିଶାର ଭଦ୍ରକ ଗୋଟିଏ ଉପକୂଳ ଅଞ୍ଚଳ। ସେହି ଜିଲ୍ଲାରେ ଧୁଷୁରି ଏକ ପଞ୍ଚାୟତ। ବନ୍ୟାପୀଡ଼ିତ, ରାଜନୀତି-ସଚେତନ, ସ୍ୱାଧୀନତା ସଂଗ୍ରାମର ଏକ ପୀଠ ହୋଇଥିବା ଧୁଷୁରି ସ୍ୱାଧୀନତାପ୍ରାପ୍ତି ପରେ ଯେ ଦ୍ରୁତ ପରିବର୍ତ୍ତିତ ହୋଇଯିବ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ତେବେ ସମଗ୍ର ଧାମନଗର ଥାନା ଗୋଟିଏ ବିଧାନସଭା ନିର୍ବାଚନ ପରିସରଭୁକ୍ତ। ତହିଁରେ ଯେଉଁ ତିନି ଚାରିଟା ଅତିଭାବପ୍ରବଣ କର୍ମତତ୍ପର ସ୍ଥାନ ଅଛି ସେଥିରେ ଧୁଷୁରି ଅନ୍ୟତମ। ସ୍ୱାଧୀନତାପ୍ରାପ୍ତି ପୂର୍ବେ ସମଗ୍ର ଥାନାରେ କଂଗ୍ରେସ ଦଳ ଥିଲା ଏକମାତ୍ର ରାଜନୈତିକ ଦଳ । ୧୯୪୮ରେ କଂଗ୍ରେସଠାରୁ ପୃଥକ ହୋଇ ସମାଜବାଦୀ ଦଳ ଗଠନ ହେବା ପରେ ଧାମନଗର ଅଞ୍ଚଳରେ ଦୁଇଟି ଦଳ, କଂଗ୍ରେସ ଓ ସମାଜବାଦୀ ଦଳ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତାର ସୂତ୍ରପାତ ହେଲା।

୧୯୫୨ ମସିହା ନିର୍ବାଚନରୁ ୧୯୬୧ ପର୍ଯ୍ୟନ୍ତ ଯେଉଁ ଦୁଇ ନେତାଙ୍କ ମଧ୍ୟରେ ନିର୍ବାଚନ ଯୁଦ୍ଧ ହେଉଥିଲା ସେ ଦୁହେଁ ହେଲେ କଂଗ୍ରେସର ଗାନ୍ଧିବାଦୀ ସଂଗ୍ରାମୀ ମୁରଲୀଧର ଜେନା ଓ ସମାଜବାଦୀ ଦଳ ବା ପରବର୍ତ୍ତୀକାଳରେ ପ୍ରଜାସମାଜବାଦୀ ଦଳର ବୈଷ୍ଣବ ଚରଣ ନାୟକ। ମୋର ମନେ ହୁଏ ବୈଷ୍ଣବ ଚରଣ ନାୟକ ଥିଲେ ଅଧିକ ଦୁର୍ଦ୍ଧର୍ଷ ଓ ପ୍ରଗତିଶୀଳ। ଓଜସ୍ୱିନୀ ଭାଷାରେ ବକ୍ତୃତା ଦେଇ ସେ ଜନସାଧାରଣଙ୍କୁ ଅଧିକ ଉତ୍ୟକ୍ତ କରି ଦେଉଥିଲେ।

ସମାଜବିଜ୍ଞାନ, ରାଜନୀତି ଓ ଅର୍ଥନୀତିରେ ତାଙ୍କର ଜ୍ଞାନ ମୂରଲୀବାବୁଙ୍କ ଠାରୁ ଅଧିକ ଥିବା ପରି ଜଣାଯାଉଥିଲା। ଦୁହେଁ ଅଗଷ୍ଟ ବିପ୍ଳବରେ ଗାନ୍ଧିଜୀଙ୍କ 'କର ବା ମର' ଆହ୍ୱାନରେ ସ୍ୱାଧୀନତା ସଂଗ୍ରାମର ଉତ୍ତୁଙ୍ଗ ଢ଼େଉ ତୋଳିଥିଲେ ଧାମନଗର ତଥା ଭଦ୍ରକ ଅଞ୍ଚଳରେ। ଦୁହିଁଙ୍କ ଘର ଧୁଷୁରି ହାଟଠାରୁ ଦୁଇ /ତିନି ମାଇଲ ଦୂରରେ। ଉତ୍ତରରେ ମୂରଲିବାବୁଙ୍କ ଘର ହସନାବାଦ ବନାମ ଗୋପବନ୍ଧୁ ନଗର, ଦକ୍ଷିଣରେ ବୈଷ୍ଣବବାବୁଙ୍କ ଘର କାସିମ୍‌ପୁରରେ। ବୈଷ୍ଣବ ନାୟକ ୧୯୪୨ ଅଗଷ୍ଟ ବିପ୍ଳବରେ ଧାମନଗର ଥାନା ପୋଡ଼ିଦେଇ 'ଥାନା ପୋଡ଼ା ବୈଷ୍ଣବ' ଭାବରେ ଖ୍ୟାତ। ସମାଜବାଦୀ ଦଳର ନେତା ରୂପେ ସେ ସ୍ୱାଧୀନତା ପରବର୍ତ୍ତୀକାଳରେ ଭାଗଚାଷୀ ଆନ୍ଦୋଳନରେ ଓ ଜମିଦାରୀ ଉତ୍ପୀଡ଼ନ ବିରୋଧରେ ପ୍ରମୁଖ ଭୂମିକା ନେଇଥିଲେ। ମୂରଲୀବାବୁ ଅଧିକ ଉଦାର, ସ୍ନେହୀ, ମେଳାପୀ ଏବଂ ରଚନାତ୍ମକ କାର୍ଯ୍ୟରେ ମନୋନିବେଶ କରୁଥିଲେ। ଧାମନଗର ଅଞ୍ଚଳରେ ଶିକ୍ଷା ବିସ୍ତାରରେ ତାଙ୍କର ଭୂମିକା ଅବିସ୍ମରଣୀୟ। ଅନେକ ମଧ୍ୟ ଇଂରାଜୀ ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିବାରେ ସେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରିଥିଲେ। ଧାମନଗର ବିଧାନସଭା ମଣ୍ଡଳ ପ୍ରଥମେ ସମଗ୍ର ଧାମନଗର ଥାନା ଓ ଭଣ୍ଡାରିପୋଖରୀର କିଛି ଅଂଶକୁ ନେଇ ଗଠିତ ହୋଇଥିଲା। ଧାମନଗରର ତଳମାଳ ଅଞ୍ଚଳରୁ ବୈଷ୍ଣବ ନାୟକ ଅଧିକ ଭୋଟ୍ ପାଇଥିଲେ ବା ସମାନ ଭୋଟ୍ ପାଉଥିଲେ। ମାତ୍ର ପ୍ରତିଦ୍ୱନ୍ଦ୍ୱୀ ମୂରଲୀଧର ଭଣ୍ଡାରିପୋଖରୀ ଅଞ୍ଚଳରୁ ବୈଷ୍ଣବବାବୁଙ୍କ ଠାରୁ ଖୁବ୍ ଅଧିକ ଭୋଟ୍ ପାଇ ନିର୍ବାଚନରେ ଜିତି ଯାଉଥିଲେ। ୧୯୬୧ ବା ୧୯୬୬ ପର୍ଯ୍ୟନ୍ତ ନିର୍ବାଚନରେ ଭୋଟରଙ୍କୁ ଲାଞ୍ଚ ଦେବା ବା ଭୋଟ୍ କେନ୍ଦ୍ରକୁ ନେବା ଆଣିବା ପାଇଁ ଖର୍ଚ୍ଚ କରିବାକୁ ପଡୁ ନଥିଲା। ଯାହା କିଛି ଖର୍ଚ୍ଚ ପୋଷ୍ଟର ଲେଖା, ସଭାର ଆୟୋଜନ ଓ ଲୋକସଂପର୍କ ସ୍ଥାପନ ପାଇଁ ଯାନବାହାନ ଭଡ଼ାରେ ଲୋଡ଼ା ହେଉଥିଲା। କଂଗ୍ରେସ ଦଳ ସରକାର ଗଠନ କରୁଥିବାରୁ ଏବଂ ମୂରଲୀବାବୁ ମହତାବଙ୍କ ଅତି ବିଶ୍ୱସ୍ତ ଲୋକ ହୋଇଥିବାରୁ ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାକୁ ଅର୍ଥର ଅଭାବ ଅନୁଭବ କରୁ ନଥିଲେ। କଂଗ୍ରେସ ଦଳ ତରଫରୁ ମିଳୁଥିବା ଜିପ୍ ତାଙ୍କର ଯଥେଷ୍ଟ ଉପକାରରେ ଆସୁଥିଲା। ୧୯୬୧ ମସିହାରେ ବିଜୁ ପଟ୍ଟନାୟକଙ୍କ ହସ୍ତକ୍ଷେପ ଫଳରେ ଓଡ଼ିଶାରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେଲା ଜୁନ୍‌ମାସରେ। ଏହି ନିର୍ବାଚନ ଯୁଦ୍ଧ ଧାମନଗରରେ ତୀବ୍ରତର ହୋଇଥିଲା। ଗ୍ରୀଷ୍ମଛୁଟି ହୋଇଥିବାରୁ ଅଧିକାଂଶ ସ୍କୁଲ କଲେଜର ଛାତ୍ର ଓ ଶିକ୍ଷକ ନିଜ ନିଜ ଗାଁ'ରେ ଥିଲେ। ଶିକ୍ଷିତ ଯୁବକ ଓ ବୟସ୍କ ଲୋକେ ଏ ନିର୍ବାଚନରେ ତାଙ୍କର ପ୍ରିୟ ପ୍ରାର୍ଥୀଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷ ସାହାଯ୍ୟ ଦେଉଥିଲେ ଏବଂ ନିର୍ବାଚନର ସରଗରମ ପ୍ରଚାର ପ୍ରାଣଭରି ଉପଭୋଗ କରୁଥିଲେ। ମୁଁ ସେତେବେଳେ ଗାଁରେ ଥାଏ। ପ୍ରତିଦିନ ଧୁଷୁରି ହାଟକୁ ଆସେ ସାଙ୍ଗସାଥୀଙ୍କୁ ଦେଖାକରି ଗପସପରେ ସମୟ କଟାଇ ଦେବାକୁ। ସନ୍ଧ୍ୟାରେ ମାଇକ୍ ସାହାଯ୍ୟରେ କଂଗ୍ରେସ ଓ ପ୍ରଜାସମାଜବାଦୀ ପାର୍ଟି ତରଫରୁ ପରସ୍ପର ବିରୋଧୀ ଭାଷଣ ଚାଲିଥାଏ। ପାଖରେ ବା ଦୂରରେ ଥାଇ କ୍ରେତା, ବିକ୍ରେତା ଓ ଅନ୍ୟ ଲୋକେ ଉପଭୋଗ କରନ୍ତି। ମୁଁ ବି ସେମାନଙ୍କ ମଧ୍ୟରୁ

ଜଣେ ଥାଏ। ବୈଷ୍ଣବବାବୁଙ୍କ ସମର୍ଥକ ଏବଂ ତାଙ୍କ ଦଳର ସଚ୍ଚୋଟ ଶକ୍ତିଶାଳୀ କର୍ମୀ ଦୁଇଜଣ ଥିଲେ ରଜନୀକାନ୍ତ ଗୋସ୍ୱାମୀ, ସୂର୍ଯ୍ୟପୁର ଓ ଯୁଧିଷ୍ଠିର ନାୟକ, ହରିହଂସ। ଉଭୟ ଅଗଷ୍ଟ ବିପ୍ଳବରେ ଅଂଶଗ୍ରହଣ କରି ବନ୍ଦୀ ହୋଇଥିଲେ। କାହିଁକି କେଜାଣି ଦୁହେଁ ବୈଷ୍ଣବବାବୁଙ୍କର ପ୍ରିୟ ସାଥୀ ଓ ସମାଜବାଦର ଅକୁଣ୍ଠ ସମର୍ଥକ ଥିଲେ। ମାତ୍ର ୫ ଶହ ଭୋଟ୍ ବ୍ୟବଧାନରେ ୧୯୬୧ ନିର୍ବାଚନରେ ସଂଗ୍ରାମୀ ବୈଷ୍ଣବ ଚରଣ ନାୟକ ହାରିଗଲେ। ଏହାପରେ ତାଙ୍କର ସଂଗ୍ରାମୀ ଜୀବନର ତେଜ ଉଭେଇ ଯାଇଥିଲା। ସ୍ୱାଧୀନ ଭାରତ ସଂପର୍କିତ ସୁନେଲି ସ୍ୱପ୍ନ ମଳିନ ପଡ଼ି ଯାଇଥିଲା। ତାଙ୍କ ମନରେ ଗଭୀର କ୍ଷୋଭ ଓ ଅବଶୋଷ ପ୍ରକାଶ ପାଇଥିଲା ପଦିଏ କଥାରେ: 'ବାପୁ ମୁଁ ପାରୁ ନାହିଁ, ନିଜେ ସଂଗଠନ କରିବି, ଲଢ଼ିବି, ଏଥିରେ ଜିତିବା ସମ୍ଭବ ନୁହେଁ। ତୁ ଚାକିରି ଛାଡ଼ିଦେଇ ଆ, ତୁ ଭଦ୍ରକରେ ଓକିଲାତି କର, ତୁ ବିଧାନସଭା ନିର୍ବାଚନରେ ପ୍ରାର୍ଥୀ ହେବୁ। ମୁଁ ପରିଚାଳନା କରିବି।' ମୋତେ ଏପରି ଅନୁରୋଧ କରିବା ମୂଳରେ ଏକ ବଳିଷ୍ଠ ଯୁକ୍ତି ଥିଲା। ତାହା ହେଉଛି, ସେ ସମୟରେ ଉଚ୍ଚଶିକ୍ଷିତମାନଙ୍କ ପ୍ରତି ସାଧାରଣତଃ ଲୋକଙ୍କର ଗଭୀର ସ୍ନେହ ଓ ବିଶ୍ୱାସ ଥିଲା। ମୁରଲୀବାବୁ ଓ ବୈଷ୍ଣବବାବୁ ମେଟ୍ରିକ୍ ପାଶ୍ କରିଥିଲେ। ମୁଁ ଏମ.ଏ. ଏବଂ ସରକାରୀ କଲେଜର ଅଧ୍ୟାପକ। ମୋ ଶିକ୍ଷା ଓ ଜ୍ଞାନର ଜ୍ୟୋତି ସମ୍ଭବତଃ ସମାଜବାଦକୁ ଉଜ୍ଜ୍ୱଳ ଆକର୍ଷଣୀୟ କରି ତୋଳିଥାନ୍ତା ଜନତା ସମ୍ମୁଖରେ। ତାଙ୍କର ଆତ୍ମପ୍ରତ୍ୟୟ ମୋର ନ ଥିଲା। ମୁଁ ଖାଲି ସ୍ୱପ୍ନ ଦେଖେ। କିନ୍ତୁ ସ୍ୱପ୍ନକୁ ସାକାର କରିବା ପାଇଁ ମୋଠାରେ ନ ଥିଲା ତ୍ୟାଗ, କଷ୍ଟସ୍ୱୀକାର ପାଇଁ ଶକ୍ତି। ଫଳରେ ଦୂରେଇ ରହିଲି ପ୍ରତ୍ୟକ୍ଷ ରାଜନୀତିଠାରୁ। ଜନମାନସକୁ ଆଲୋଡ଼ିତ କରି ଆସୁଥିବା ସମାଜବାଦର ଖର ପବନ ଧିମେଇ ଗଲା ଧାମନଗର ଅଞ୍ଚଳରେ ଏହି ନିର୍ବାଚନ ପରଠାରୁ। ବୈଷ୍ଣବବାବୁ ରାଜନୀତିରେ ନିଷ୍କ୍ରିୟ ହୋଇପଡ଼ିଲେ। ଆର୍ଥିକ ଦୂରବସ୍ଥା ତାଙ୍କୁ କିଛି ଦିନ ପାଇଁ କଟକସ୍ଥ ପ୍ରତିହାରୀ ପାଠାଗାରରେ କର୍ମଚାରୀ ରୂପେ ଯୋଗ ଦେବାକୁ ବାଧ କଲା। ପାଖ ଗାଁ ପଛାଳ ମଧ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକତା କଲେ। ୧୯୬୬ରେ ମୂରଲୀବାବୁଙ୍କ ଅକାଳ ବିୟୋଗ ପରେ ୧୯୬୭ ଜନକଂଗ୍ରେସ ପ୍ରାର୍ଥୀ ରୂପେ ସେ ଧାମନଗରରୁ ନିର୍ବାଚନ ଲଢ଼ିବା ପାଇଁ ଡକ୍ଟର ମହତାବଙ୍କ ଅନୁରୋଧ ପାଇଥିଲେ। କଂଗ୍ରେସ ଓ ମହତାବଙ୍କ ପ୍ରତି ତାଙ୍କର ଏତେ ବିତୃଷ୍ଣା ଥିଲା ଯେ ସେ ଏହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଦେଲେ। ମାତ୍ର ବର୍ଷକ ପରେ ସେ ସରକାର ଗଢ଼ିଥିବା ସ୍ୱତନ୍ତ୍ର ପାର୍ଟିରେ ଯୋଗ ଦେଲେ। ସଂଗ୍ରାମୀର ଏକ ଆଗ୍ନେୟ ଜୀବନ ନିର୍ବାପିତ ହୋଇଗଲା। ସ୍ୱଦେଶପ୍ରେମୀ ସଂଗ୍ରାମୀ ମୂରଲୀବାବୁ ଇହଧାମ ଛାଡ଼ିଗଲେଣି, ବିପ୍ଳବୀ ବୈଷ୍ଣବବାବୁ ବାର୍ଦ୍ଧକ୍ୟର ବୋଝ ବୋହି ଦିନ ଯାପନ କରୁଛନ୍ତି ନିଜ ଝିଅ ପାଖରେ ଭଦ୍ରକରେ।

ଦୁଇ ମହାନ୍ ବିପ୍ଳବୀଙ୍କ ଅମର ବ୍ୟକ୍ତିତ୍ୱର ମୁରୁଜ ବିଛୁରି ହୋଇ ପଡ଼ିଛି ଧୁଷୁରି ହାଟ ମାଟିରେ। ଏହି ମାଟିରେ ପାଦ ଦେଲେ ସଚେତନ ଇତିହାସପ୍ରେମୀ ମଣିଷଦେହ ଶିହରି ଉଠେ। ସତ୍ୟାଲୋକ ଓ ଜନମଙ୍ଗଳର ଅନ୍ୱେଷା, ଅସତ୍ୟ ଅମଙ୍ଗଳ ବିରୋଧରେ ସୁପ୍ତ ସଂଗ୍ରାମୀ ମନୋଭାବ ଉଜ୍ଜୀବିତ ହୋଇଉଠେ। ହଜିଯାଉଥିବା ପୁରାତନ ସ୍ୱପ୍ନ ଜାଗାରେ ନୂତନ ସ୍ୱପ୍ନ ଅଙ୍କୁରି ଉଠେ। ମୋର ଶକ୍ତି କାହିଁର ସ୍ୱପ୍ନର ଚାରାକୁ ପୁଷ୍ପବତୀ ଫଳବତୀ କରିବାକୁ ?

//୧୯//

ଆଶାକରେ କେହି ନା କେହି ସ୍ୱପ୍ନବାଦୀ ଉତ୍ସର୍ଗିତ ତରୁଣ ଧାଇଁ ଆସିବେ ସ୍ୱପ୍ନର ଫୁଲ ଫୁଟାଇବାକୁ। ସେହି ଫୁଲରେ ବିମଣ୍ଡିତ କରିଦେବେ ମୋର ଦୁଃଖିନୀ ମାଆକୁ।

(୮)

ଧୂଷୁରି ଧାମନଗର ଥାନାର ପୂର୍ବ ଭାଗରେ ତଳମାଳ ଅଞ୍ଚଳର ଏକ ପ୍ରଧାନ ସ୍ଥଳ। ସମଗ୍ର ଥାନା ଅଞ୍ଚଳର ମଧ୍ୟବିନ୍ଦୁ। ମୋ ଗାଁଟି ଧୂଷୁରିର ଦକ୍ଷିଣ ପୂର୍ବ ଦିଗକୁ ଦେଢ଼ ମାଇଲ ଦୂରରେ। ବେଶ୍ ଜଣାଶୁଣା ସ୍ଥାନ ହୋଇଥିବାରୁ ଧୂଷୁରିକୁ କେନ୍ଦ୍ରକରି ଆମେ କେତେଜଣ ସଂସ୍କୃତିପ୍ରେମୀ ଯୁବକ ଗୋଟିଏ ସାଂସ୍କୃତିକ ଅନୁଷ୍ଠାନ 'ଧୂଷୁରି ଆଞ୍ଚଳିକ ସାଂସ୍କୃତିକ ପରିଷଦ' ଗଠନ କରିଥିଲୁ। ଏହି ପରିଷଦରେ ମୁଁ ଥିଲି ସଭାପତି। ମୋର ଶ୍ରଦ୍ଧେୟ ଛାତ୍ର-ଶିକ୍ଷକ ଭକ୍ତହରି ନାୟକ ଥିଲେ ସଂପାଦକ। ପ୍ରତ୍ୟେକ ବର୍ଷ ରଜ ସଂକ୍ରାନ୍ତି ସମୟରେ ଦୁଇ ତିନି ଦିନ ଧରି ସଂଧ୍ୟାରେ ସାହିତ୍ୟ,ସଂସ୍କୃତି ଆଲୋଚନା ହୁଏ। ଏବେକାର ଭଳି ସେତେବେଳେ ଧୂଷୁରିରେ ବିଜୁଳିବତୀର ବ୍ୟବସ୍ଥା ହୋଇ ନଥିଲା। ଟେଣ୍ଟ ହାଉସ୍‌ର ବ୍ୟବସ୍ଥା ନ ଥାଏ। ପାଖ ଗାଁରୁ ଟର୍ପିଲିନ୍ ଚାନ୍ଦୁଆ ବିନା ଭଡ଼ାରେ ଆଣି, ବାଉଁଶ ସଂଗ୍ରହ କରି ସ୍କୁଲ ପଡ଼ିଆ କିମ୍ବା ବାସନ୍ତୀଦେବୀ ପଡ଼ିଆରେ ସଭା ମଣ୍ଡପ ନିର୍ମାଣ କରାଯାଏ। ଚେୟାର, ବେଞ୍ଚ ଓ ଦରି ପକାଇ ବସିବାର ବ୍ୟବସ୍ଥା ହୁଏ। ସେ ସମୟର ସ୍କୁଲ ଶିକ୍ଷକମାନେ ଓ ସ୍ଥାନୀୟ ସଂସ୍କୃତିପ୍ରେମୀ ଲୋକେ ଆର୍ଥିକ ଓ ଅନ୍ୟାନ୍ୟ ସାହାଯ୍ୟ କରିଥାନ୍ତି। ଗ୍ରୀଷ୍ମାବକାଶ ଓ ରଜ ଛୁଟିରେ ପାଖଆଖ ଗାଁର ଚାକିରି କରିଥିବା ଲୋକେ ଓ ସ୍ଥାନୀୟ ଶିକ୍ଷକ ଏବଂ ଶିକ୍ଷିତ ଭଦ୍ରବ୍ୟକ୍ତିମାନେ ଏହି ସଭାରେ ଯୋଗ ଦେଇ ବେଶ୍ ଆନନ୍ଦ ଉପଭୋଗ କରିଥାନ୍ତି। ଜ୍ଞାନାଲୋକ ମଧ୍ୟ ପାଆନ୍ତି। ଏହି ଅନୁଷ୍ଠାନଟି ୧୯୭୨/୭୩ରୁ ଆରମ୍ଭ ହୋଇ ନିୟମିତ ଭାବେ ୯୦ ଦଶକ ଆରମ୍ଭ ପର୍ଯ୍ୟନ୍ତ ଚାଲିଥିଲା। ଏହି ସାଂସ୍କୃତିକ ଉତ୍ସବରେ ସମ୍ମାନିତ ଅତିଥିଭାବେ ଯୋଗ ଦେବାକୁ ଭଦ୍ରକ, ବାଲେଶ୍ୱର, ଯାଜପୁର, କଟକ ଓ ଭୁବନେଶ୍ୱରରୁ ଖ୍ୟାତନାମା ଅଧ୍ୟାପକ ଓ ସାହିତ୍ୟିକମାନଙ୍କୁ ନିମନ୍ତ୍ରିତ କରାଯାଉଥିଲା। ଯେଉଁ ସୁପରିଚିତ କବି, ଲେଖକ ଓ ବିଶେଷଜ୍ଞମାନେ ବିଭିନ୍ନ ବର୍ଷରେ ଏହି ସଭାରେ ଭାଷଣ ଦେଇ ସରଳ ଗ୍ରାମବାସୀ ଓ ଉଦୀୟମାନ ତରୁଣ- କିଶୋରମାନଙ୍କୁ ଆନନ୍ଦ ଉଲ୍ଲାସ ଦେବା ସଙ୍ଗେ ସଙ୍ଗେ ନୂତନ ଆଲୋକ ଦେଉଥିଲେ ସେମାନଙ୍କ ମଧ୍ୟରେ ଔପନ୍ୟାସିକ ଚନ୍ଦ୍ରଶେଖର ରଥ, ପ୍ରଫେସର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଡ଼ଃ ଉପେନ୍ଦ୍ର ଧଳ, ବାଗ୍ମୀ ରଜତ କର, ପ୍ରଫେସର ତ୍ରିଲୋଚନ ମିଶ୍ର, ଜିତେନ୍ଦ୍ର ନାରାୟଣ ଦାଶ (ଦାଶ୍ ବେନହୁର) ମୋର ପୂଜ୍ୟଗୁରୁ, ଗୌରବ ଗୋପାଳ, ରାଜନେତା ହୃଦାନନ୍ଦ ମଲ୍ଲିକଙ୍କ ନାମ ଉଲ୍ଲେଖଯୋଗ୍ୟ। ଏହି ସଭାରେ ପ୍ରାଚୀନ ଓ ଆଧୁନିକ ସାହିତ୍ୟ, ସାଂପ୍ରତିକ ରାଜନୀତି, ଅର୍ଥନୀତି ଆଲୋଚନା ହେଉଥିଲା। ମୋର ସ୍ପଷ୍ଟ ମନେ ପଡୁଛି ବକ୍ତାମାନଙ୍କର ଭାଷଣ ଶୁଣିବା ପରେ କେତେ ଜଣ ବୟସ୍କ ଦେଶପ୍ରେମୀ ଲୋକେ ମୋତେ କହିଛନ୍ତି, 'ବାସୁଦେବ, ତୁମେ ଏ ଅନ୍ଧକାର ଅଞ୍ଚଳରେ ଏହି ବିଜ୍ଞ ବ୍ୟକ୍ତିଙ୍କ ଭାଷଣ ମାଧ୍ୟମରେ

ଆଲୋକ ବିଚ୍ଛୁରି ଦେଉଛ'। ଦେଶବିଦେଶର କଥା ଓ ଆମ ସାହିତ୍ୟ, ସଂସ୍କୃତିର ଅତୀତ ଓ ବର୍ତ୍ତମାନର ସ୍ଥିତି ବିଷୟରେ ରସାଳ ସାବଲୀଳ ଭାଷାରେ ଶୁଣିବାକୁ ପାଇ କେତେ ଯେ ଖୁସି ସେମାନେ ହେଉଥିଲେ, ତାହା ବର୍ଣ୍ଣନା କରି ହେବ ନାହିଁ।

ସଂଗଠକମାନଙ୍କର ନିଷ୍ଠା ଓ ଶ୍ରମକୁ ସେମାନେ ଉଚ୍ଚ ପ୍ରଶଂସା କରୁଥିଲେ। ଆମେ ଉଦ୍‌ବୁଦ୍ଧ ହେଉଥିଲୁ। ବେଳେବେଳେ ଅଞ୍ଚଳର ତରୁଣ କବିମାନଙ୍କୁ ନେଇ କବିତା ପାଠୋତ୍ସବ ହେଉଥିଲା। ଅର୍ଥର ପ୍ରାଚୁର୍ଯ୍ୟ ନ ଥିଲା। ତେଣୁ ସଭାରେ ଯାକଜମକ ନ ଥିଲା। ଆଜିକାଲି ଭଳି ଶ୍ରୋତାମାନଙ୍କୁ ପୁଡ଼ିଆ ଦେବାର ବ୍ୟବସ୍ଥା ନ ଥିଲା। ଥିଲା ସଂଗଠକମାନଙ୍କ ସ୍ନେହ, ଶ୍ରଦ୍ଧାଭରା ଆମନ୍ତ୍ରଣ, ଆତିଥ୍ୟ, ସଭାରେ ଯୋଗ ଦେଉଥିବା ଲୋକଙ୍କର ନିଛକ ସଂସ୍କୃତିପ୍ରେମ ଏବଂ ନୂଆ କଥା କିଛି ଶୁଣିବାର ଆଗ୍ରହ। ସଭା ଶେଷରେ ସମ୍ମାନିତ ଅତିଥିମାନଙ୍କ ଗହଣରେ ସାଧାରଣ ଭୋଜନର ଅନାବିଳ ଆନନ୍ଦ ଓ ପରମତୃପ୍ତି ଏବେ ମନେ ପଡ଼ିଲେ ଉଲ୍ଲସି ଉଠୁଛି।

ଯେଉଁ ହାଇସ୍କୁଲ ମୂରଲୀଧର ଉଚ୍ଚବିଦ୍ୟାଳୟକୁ କେନ୍ଦ୍ର କରି ଏବଂ ଏହାର ଶିକ୍ଷକମାନଙ୍କ ସହାୟତାରେ ଧୁଷୁରି ସାଂସ୍କୃତିକ ପରିଷଦ ସମଗ୍ର ଧାମନଗର ଥାନାରେ ଏକ ପ୍ରକାର ସାଂସ୍କୃତିକ ଜାଗରଣ ସୃଷ୍ଟି କରିଥିଲା, ସେହି ସ୍କୁଲ ପରିଚାଳନାରେ ପରିବର୍ତ୍ତନ, ଶିକ୍ଷକ ଓ ସ୍ଥାନୀୟ ଯୁବକମାନଙ୍କର ମନୋଭାବରେ ପରିବର୍ତ୍ତନ ଏ ଅନୁଷ୍ଠାନଟିର ଉତ୍ତରୋତ୍ତର ଉନ୍ନତି ସାଧନ କରିବା ପରିବର୍ତ୍ତେ ଏହାର ଅକାଳ ବିଲୟ ଘଟାଇଲା। ମୁଁ ଏବଂ ଭକ୍ତହରି ନାୟକ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଅଧିକ ଜଞ୍ଜାଳଗ୍ରସ୍ତ ହୋଇଗଲୁ। ଦୂର ଚାକିରି ସ୍ଥାନରୁ ଠିକ୍ ସମୟରେ ବେଶିଦିନ ପାଇଁ ଗାଁ'କୁ ଆସିପାରିଲୁ ନାହିଁ। ତେଣୁ ଦାୟିତ୍ୱ ନ୍ୟସ୍ତ କରାଗଲା ସ୍କୁଲର ଜଣେ ଶିକ୍ଷକ ଓ ଧୁଷୁରି ଗାଁ'ର ଜଣେ ଯୁବକଙ୍କ ଉପରେ। ସମୟ ବଦଳିଗଲା। ରାଜନୀତିର ଘୂର୍ଣ୍ଣିବାୟୁ କି ଶିକ୍ଷକ, କି ଉଚ୍ଚଶିକ୍ଷା ପାଉଥିବା ଛାତ୍ର ଓ ତରୁଣମାନଙ୍କୁ ବିଭ୍ରାନ୍ତ କରି ଚାଲିଲା। ସାହିତ୍ୟ, ସଂସ୍କୃତି ଓ ଜ୍ଞାନଠାରୁ ମନ ଦୂରେଇ ଯାଇ ତତ୍କାଳିକ ଓ ଭବିଷ୍ୟତ ଆର୍ଥିକ ତଥା ପାର୍ଥିବ ଲାଭ ପଛରେ ଧାଇଁବାକୁ ଲାଗିଲା। ସଂସ୍କୃତିର ଅପସାରଣ ଓ ଅବକ୍ଷୟ, ପୁରାତନ ପଲ୍ଲୀ ସଂସ୍କୃତିର କ୍ରମବିଲୟ ହେଉଛି ତା'ର ଦୁଃଖଦ ପରିଣତି। ଆଶା କରିଥିଲି ଧୁଷୁରି ହାଇସ୍କୁଲ ଓ ପରବର୍ତ୍ତୀ କାଳରେ ସ୍ଥାପନ କରାଯାଇଥିବା ଆଖଣ୍ଡଳମଣି କଲେଜ ପିଲାମାନଙ୍କୁ ଉଚ୍ଚଶିକ୍ଷା ପ୍ରଦାନ ସଙ୍ଗେ ସଙ୍ଗେ ଏ ଅଞ୍ଚଳର ଲୋକମାନଙ୍କ ମଧ୍ୟରେ ଆଧୁନିକ ପରିମାର୍ଜିତ ସଂସ୍କୃତି ପହଞ୍ଚାଇ ଦେବେ। ସେ ଆଶା ସଂପୂର୍ଣ୍ଣ ପରାହତ। ଧୁଷୁରି ହାଇସ୍କୁଲ ସ୍ୱର୍ଗତ ମୂରଲୀବାବୁଙ୍କ ପ୍ରଚେଷ୍ଟାରେ ହେମଚନ୍ଦ୍ର ନାୟକ, ନାରାୟଣ ଚନ୍ଦ୍ର ନାୟକ, ମଣିଭଦ୍ର ସାହୁ, ହରି ମଲ୍ଲିକ ଓ ଚକ୍ରଧର ପଟ୍ଟନାୟକଙ୍କ ସାହାଯ୍ୟରେ ନଦୀଗାଁ କାନୁନ୍‌ଗୋଙ୍କ ଦତ୍ତ ଜମି ଉପରେ ଗଢ଼ା ଯାଇଥିଲା। ସ୍କୁଲର ପ୍ରଥମ ହେଡ଼୍‌ମାଷ୍ଟର ଥିଲେ ମୋର ଅଗ୍ରଜ ପ୍ରତିମ ସୀତାକାନ୍ତ ନାୟକ, ପରେ ବନ୍ଧୁ ସହପାଠୀ ବିମଳାନନ୍ଦ ସାହୁ, ତାଙ୍କ ପରେ ଭକ୍ତହରି ନାୟକ, ଜଗନ୍ନାଥ ରାଉତ। ଜଗନ୍ନାଥବାବୁ ଶିକ୍ଷକତା ଛାଡ଼ି କଂଗ୍ରେସ ଦଳରେ ଯୋଗ ଦେଇ ବିଧାୟକ ଓ ମନ୍ତ୍ରୀ ହେଲେ। ମାତ୍ର ସ୍କୁଲର ରୂପରେ କି ଗୁଣରେ ବିଶେଷ ଉନ୍ନତି ଘଟିଲା ନାହିଁ। ଓଡ଼ିଶା

ରାଜନୀତି ଓ ଶାସନରେ କଂଗ୍ରେସ ପାର୍ଟିର ପ୍ରଭାବ ବଢ଼ିବା ସହିତ ଧୂଷୁରି ଅଞ୍ଚଳରେ କଂଗ୍ରେସ ପ୍ରଭାବ ବଢ଼ିଗଲିଲା। ଏ ପ୍ରଭାବ ଲୋକଙ୍କ ଅର୍ଥନୈତିକ ଉପକାର କେତେ କରିଛି, ତାହା ବିତର୍କର ବିଷୟ। ତେବେ ଧୂଷୁରି ହାଟର ଶାନ୍ତ ପରିବେଶ ଯେ କଳୁଷିତ ହୋଇଛି ଏହା ସୁସ୍ପଷ୍ଟ।

ନୂଆ ଏକ ଯୁଗର ବାର୍ତ୍ତା ସମସ୍ତଙ୍କ ନିକଟରେ ପହଞ୍ଚାଇବା ଏବଂ ପ୍ରଗତିର ବନ୍ଧୁ ପନ୍ଥରେ ରହିଥିବା ଲୋକଙ୍କୁ ସମାଜ ଓ ଜାତିର ଅଗ୍ରଗତି ସମ୍ବନ୍ଧରେ ଅବହିତ କରିବାର ଏକ ପ୍ରଚ୍ଛନ୍ନ ଇଚ୍ଛା ଆମ ସମୟର ତରୁଣ ପିଢ଼ି ମନରେ ବଳବତ୍ତର ଥିଲା। ସେ ଇଚ୍ଛା ଯେ, ଏବେକାର ଶିକ୍ଷିତ ତରୁଣମାନଙ୍କଠାରେ ବଡ଼ ଦୁର୍ବଳ ତାହା ଉପଲବ୍ଧ ହେଉଛି। ଅବକାଶ ସମୟକୁ ସୁନ୍ଦର ଆନନ୍ଦଦାୟକ ଭାବେ କଟାଇବା ପାଇଁ ନା ସ୍ୱାଧୀନତା ସଂଗ୍ରାମୀଙ୍କ ପ୍ରେରଣାରେ ତାଙ୍କ ପଦାଙ୍କ ଅନୁସରଣ କରି ସ୍ୱାଧୀନତା ପରବର୍ତ୍ତୀ କାଳରେ ଦେଶ ନିର୍ମାଣରେ ଯତ୍କିଞ୍ଚିତ୍ ଅଂଶ ଗ୍ରହଣ କରିବାକୁ ଆମେ ଏପରି ସାଂସ୍କୃତିକ ଅନୁଷ୍ଠାନ କରିଥିଲୁ ତାହା ଠିକ୍ ଭାବେ କହି ହେବ ନାହିଁ। ବୁଦ୍ଧିଦୀପ୍ତ ସଂସ୍କୃତିସଂପନ୍ନ ଜୀବନରେ ଯେ, ଅନ୍ୟକୁ ଆଲୋକ ଉତ୍ସାହ ଦେବାର ଏକ ଗୋପନ ପ୍ରୟାସ ଥାଏ ତାହା ସେତେବେଳେ ମୁଁ ଜାଣି ନ ଥିଲି। ଜ୍ଞାନର ପରିସର ବ୍ୟାପ୍ତ ହେଲା ପରେ ଏବେ ମହାମନୀଷୀମାନଙ୍କ ଅଭିବ୍ୟକ୍ତି ପଢ଼ି ହର୍ମାନ ହେସେଙ୍କ ଭଳି ଭାବୁଛି :-

"All culture and intellectual life has two functions. One is to give certainty and encourgement to the many, to cofort them to give meaning to lives. The second is more mysterious and no less important to enable the few the great minds of tomorrow and the day after to mature to shelter and care for their beginnings to give them air to breath." ସବୁ ସଂସ୍କୃତି ଓ ବୌଦ୍ଧିକ ଜୀବନରେ ଦୁଇଟି କାମ ଥାଏ। ଗୋଟିଏ ଅନେକଙ୍କୁ ନିଶ୍ଚିତତା ଓ ସାନ୍ତ୍ୱନା ଦେବା, ଜୀବନର ଅର୍ଥ ଜଣେଇବା। ଦ୍ୱିତୀୟଟି ଅଧିକ ରହସ୍ୟମୟ ଏବଂ ସମାନ ଗୁରୁତ୍ୱପୂର୍ଣ୍ଣ, ତାହା ହେଉଛି ଆଗାମୀକାଳର କତିପୟ ଉଚ୍ଚମନା ଲୋକଙ୍କୁ ଉନ୍ନତି କରିବାର ସୁଯୋଗ ଓ ସୁବିଧା ଦେବା, ମୁକ୍ତ ବାତାବରଣ ଦେବା।' ତାହା ହିଁ ଆମେ କରୁଥିଲୁଁ।

## (୯)

''ସ୍ୱଦେଶେ ପୂଜ୍ୟତେ ରାଜାଃ
ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ ।''

ଆମେ ଯେଉଁ କେତେଜଣ ଯୁବକ ସେ ଅନ୍ଧାରୀ ଅଞ୍ଚଳରେ ବିଦ୍ୱାନ ରୂପେ ପରିଚିତ ହେଉଥିଲୁଁ। ଆମ ବଂଶର ବିଶେଷ ଆଭିଜାତ୍ୟ ନ ଥିଲା କି ଆମ ପରିବାର ସଂପତ୍ତିଶାଳୀ ନଥିଲା। ବାପାମାଆଙ୍କ ଆଗ୍ରହ ଓ ସୁକୃତିରୁ ଆମେ ପାଠପଢ଼ି ଯୋଗ୍ୟତାନୁସାରେ ଶିକ୍ଷକ, ଅଧ୍ୟାପକ, ଡାକ୍ତର, ବ୍ୟାଙ୍କ ଅଫିସ୍‌ର ହୋଇଥିଲୁଁ। ସାଧାରଣ ପରିବାରରୁ ଆସିଥିବାରୁ ଆମର

ତଥାକଥିତ ମଲିମୁଣିଆ ଖଟିଖିଆ ସାଧାରଣ ଚାଷୀ ବ୍ୟବସାୟୀମାନଙ୍କ ପ୍ରତି ସଦ୍‌ଭାବ, ଶ୍ରଦ୍ଧା, ସମ୍ମାନ ଥିଲା। ସେମାନେ ଆମକୁ ବେଶ୍ ସ୍ନେହ, ଶ୍ରଦ୍ଧା ଓ ସମ୍ମାନ ଦେଉଥିଲେ। ଆମରି ଏହି ସାଂସ୍କୃତିକ ଉତ୍ସବକୁ ଆଗ୍ରହର ସହ ଆସୁଥିଲେ। ସଂଧ୍ୟାରୁ ରାତି ୧୦ଟା ପର୍ଯ୍ୟନ୍ତ ବସିରହି ସେମାନଙ୍କ ପୁଅ ପୁତୁରାମାନଙ୍କ କୀର୍ତ୍ତି ଦେଖୁଥିଲେ ଏବଂ ସେମାନଙ୍କର ପୂଜ୍ୟ ଓଡ଼ିଶାର ବରସନ୍ତାନ ପ୍ରଜ୍ଞାବାନ ଲୋକଙ୍କ ଭାଷଣରୁ ଅମୃତ ପାନ କରୁଥିଲେ। ୧୯୪୨ ଅଗଷ୍ଟ ବିପ୍ଳବର ଯେଉଁ କେତେଜଣ ସଂଗ୍ରାମୀ ସୈନିକ ଆମ ସଭାରେ ଯୋଗ ଦେଉଥିଲେ ସେମାନଙ୍କ ପବିତ୍ର ନାମ ଆଜି ମନେ ପଡ଼ିଯାଉଛି। ସେମାନେ ହେଲେ ସର୍ବଶ୍ରୀ ନବକିଶୋର ନାୟକ, ଯୁଧିଷ୍ଠିର ନାୟକ, କାମଦେବ ନାୟକ। ସେମାନେ ଆଉ ଇହଧାମରେ ନାହାନ୍ତି। ମାତ୍ର ସେମାନଙ୍କ ଗଭୀର ନିରଳସ ମମତାପୂର୍ଣ୍ଣ ଆଦର୍ଶ ଚରିତ୍ରର ସ୍ମୃତି ଏବେ ମଧ୍ୟ ପ୍ରାଣରେ ସ୍ପନ୍ଦନ ତୋଳୁଛି। ମୋର ବିଶ୍ୱାସ ଏମାନଙ୍କ ତ୍ୟାଗପୂତ ଜୀବନଗାଥା, ବହୁକାଳ ପର୍ଯ୍ୟନ୍ତ ପାଠକଙ୍କ ପ୍ରାଣରେ ଆନନ୍ଦ ଉତ୍ସାହର ଶିହରଣ ତୋଳିବ।

ଯେଉଁ ତିନି ଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ନାମ କୁହାଗଲା, ସେମାନଙ୍କ ଭିତରେ ସ୍ୱର୍ଗତ ନବକିଶୋର ନାୟକଙ୍କ ଚରିତ୍ର ଥିଲା ବିସ୍ମୟକର ଭାବବ୍ୟଞ୍ଜକ। ବାଲେଶ୍ୱର ଜିଲ୍ଲାର ପ୍ରଖ୍ୟାତ ସଂଗ୍ରାମୀ ଡକ୍ଟର ହରେକୃଷ୍ଣ ମହତାବ ଓ ରବୀନ୍ଦ୍ର ମୋହନ ଦାସଙ୍କ ନେତୃତ୍ୱରେ ଆମ ଅଞ୍ଚଳର ଆଗୁଆ ସୈନିକ ଥିଲେ ମୂରଲୀଧର ଜେନା ଓ ବୈଷ୍ଣବ ନାୟକ। ସେମାନଙ୍କ ସହଚର ଥିଲେ ଉପରୋକ୍ତ ତିନିଜଣ। ସମସ୍ତେ ଦେଶମାତୃକାର ମୁକ୍ତି ପାଇଁ ଜୀବନକୁ ପାଣି ଛଡ଼ାଇ ଦୁର୍ଦ୍ଧର୍ଷ ପ୍ରତାପୀ ବ୍ରିଟିଶ୍ ସରକାର ବିରୋଧରେ ସଂଗ୍ରାମ ଚଳାଇଥିଲେ। ୧୯୪୨ ବିପ୍ଳବ ବେଳକୁ ମୁଁ ଛୋଟ ପିଲାଟିଏ। ସଂଗ୍ରାମର କେନ୍ଦ୍ରସ୍ଥଳୀ ଧୂଷୁରିଠାରୁ ଦୁଇ ମାଇଲ୍ ଦୂରରେ ମୋ ଘର। ତେଣୁ ସେ ସମୟରେ ଏମାନଙ୍କର ସଂଗ୍ରାମର ରୂପ ମୁଁ ଦେଖିବାର ସୁଯୋଗ ପାଇନି। ପରବର୍ତ୍ତୀ କାଳରେ ସଂଗ୍ରାମର ଲୋମହର୍ଷଣକାରୀ କଥା ଶୁଣିବାକୁ ପାଇଛି।

କି ପ୍ରକାର ପ୍ରତିବାଦ ବା ବିରୋଧ କରି ଏମାନେ କାରାଦଣ୍ଡ ବର୍ଷ ବର୍ଷ ଧରି ଭୋଗିଥିଲେ, ତା'ର ବିସ୍ତୃତ ବିବରଣୀ ମୁଁ ପାଇନି। ଏ ଅଞ୍ଚଳର ସଂଗ୍ରାମୀମାନଙ୍କର ଗୋଟିଏ, ଦୁଇଟି ସାମଗ୍ରିକ ଘଟଣା ଶୁଣିଛି। ସେଥିରୁ ଗୋଟିଏ କହୁଛି :-

ବର୍ଷାମୁଖର ନିଝୁମ ଅନ୍ଧାର ରାତି। ମୁରଲୀବାବୁ, କାମଦେବ, ଯୁଧିଷ୍ଠିର ସମ୍ଭବତଃ ନବବାବୁଙ୍କୁ ଧାମନଗର ଥାନାର ପୋଲିସ୍ ଦଉଡ଼ାଉଛନ୍ତି। ଧରା ପଡ଼ିଗଲେ ସଙ୍ଗେ ସଙ୍ଗେ ଜେଲ୍ ଠୁଙ୍କି ଦେବେ। ସଂଗ୍ରାମର ବାର୍ତ୍ତା ଗାଁ'ଗଣ୍ଡାରେ ପହଞ୍ଚି ପାରିବ ନାହିଁ, ଗାନ୍ଧିଜୀଙ୍କ ଆହ୍ୱାନ 'କର ବା ମର', ଦେଶ ମାତୃକାର ଶୃଙ୍ଖଳ ଛିନ୍ନ କରିବାକୁ ହେବ। ସେଥିପାଇଁ ସମଗ୍ର ଦେଶରେ ମୁକ୍ତିର ବହ୍ନି ଜାଳିଦେବାକୁ ପଡ଼ିବ। ଦେଶବ୍ୟାପୀ ଜନଜାଗରଣ ଗଢ଼ି ତୋଳିବାକୁ ହେବ। ଜନ ସମର୍ଥନ ହିଁ ସଂଗ୍ରାମର ଅମୋଘ ଅସ୍ତ୍ର। ଶାସନ ବିପର୍ଯ୍ୟସ୍ତ ଦୋଦୁଲ୍ୟମାନ ନ ହେଲେ ସହଜରେ କ'ଣ ପ୍ରବଳ ପରାକ୍ରମୀ ଇଂରେଜ ସରକାର ସ୍ୱର୍ଣ୍ଣପ୍ରସୂ ଭାରତକୁ ଛାଡ଼ିଯିବ? ସଂଗ୍ରାମୀମାନେ ଏତେ ଶୀଘ୍ର ବନ୍ଦୀ ହୋଇଗଲେ, ବିଦ୍ରୋହ ଅଗ୍ନି ଯେ ନିର୍ବାପିତ

ହୋଇଯିବ। ସେଇଥିପାଇଁ ତ ସୁରେନ୍ଦ୍ରନାଥ ଦ୍ୱିବେଦୀ, ମାଳତୀ ଚୌଧୁରୀ ଲୁଚି ଲୁଚି ବମ୍ବେରୁ ଓଡ଼ିଶା ପଳାଇ ଆସି କଟକରେ ଆତ୍ମଗୋପନ କରି ବିପ୍ଳବବାର୍ତ୍ତା ପଠାଇଛନ୍ତି ଏବଂ ସାଧାରଣ ସଂଗ୍ରାମୀ ସୈନିକଙ୍କ ମନୋବଳ ଭାଙ୍ଗି ନ ଯିବାକୁ ଆପ୍ରାଣ ଚେଷ୍ଟା କରୁଛନ୍ତି। ତାଙ୍କର ଅନୁଚର ଧାମନଗର ବିପ୍ଳବୀ କ'ଣ ସହଜରେ ଶତ୍ରୁ ହାତରେ ଧରାଦେବେ? ବୈତରଣୀର ଶାଖା ନଦୀ ଖରସ୍ରୋତା କୋଚିଲାରେ ପହଁରି ପହଁରି ଗଲେ ପୋଲିସ୍‌ର ଲମ୍ବା ଉଜ୍ଜ୍ୱଳ ଟର୍ଚ୍ଚ ଲାଇଟ୍‌ରେ ଜଣା ପଡ଼ିଯିବ। ତେଣୁ ସୁଅ ପାଣିରେ ବୁଡ଼ି ବୁଡ଼ି କିଛି ବାଟ ଯିବାକୁ ହେବ। କୋଚିଲା ପାର ହେଲେ ଗୋପବନ୍ଧୁନଗର ବା ହସନାବାଦ, ଅସ୍ତକ, ତାପରେ ବୈତରଣୀ। ବୈତରଣୀ ପାର ହେଲେ କଟକ ଜିଲ୍ଲା। କଟକ ଜିଲ୍ଲା ପୋଲିସ୍ ତାଲିକାରେ ଏମାନଙ୍କ ନାମ ନ ଥିବ। ଧାମନଗର ଥାନାର ବହୁ ଲୋକଙ୍କର ବନ୍ଧୁଘର ଯାଜପୁର ଥାନାରେ। ସେଠାରେ କେହି ଦରିଦ୍ର ବନ୍ଧୁ ଏମାନଙ୍କୁ ଆଶ୍ରୟ ଦେବେ। ଏହି ଆଶାରେ ନଈ ଗର୍ଭକୁ ସେହି କିଟିମିଟିଆ ଅନ୍ଧାର ରାତିରେ ଝାମ୍ପ ଦେଲେ ତିନି ଋରି ବନ୍ଧୁ। ଭାଗ୍ୟ ସୁପ୍ରସନ୍ନ, ପୋଲିସ୍ ପତ୍ତା ପାଇଲା ନାହିଁ। ପୋଲିସ୍ ଆଖିରେ ଧୂଳି ଦେଇ ସଂଗ୍ରାମୀ ଚାଲିଗଲେ ନିରାପଦ ସ୍ଥାନକୁ । ଏହି ମାଟିର ସନ୍ତାନ, ମାଟି ମାଆର ମୁକ୍ତି ପାଇଁ ଜୀବନ ବରଣ କରି ନେଇଥିଲେ ପ୍ରାଣାନ୍ତକ ବିପଦ। ବୈତରଣୀ ଶାଖା ନଦୀର ଖରସ୍ରୋତରେ ଉବେଇ ଟୁବେଇ ହେଉଥିଲା ବେଳେ କେଉଁଠୁ ଆସୁଥିଲା ମୃତ୍ୟୁଞ୍ଜୟୀ ଶକ୍ତି? କେଉଁଠୁ ଆସୁଥିଲା ଏପରି ଦୁଃସାହସ? ନିଶ୍ଚିତ ରୂପେ ବିଦ୍ରୋହୀ କବି ନାଜୀ ନଜରୁଲ୍‌ଙ୍କ ସେହି ଆଗ୍ନେୟ କବିତା ତାଙ୍କ ପ୍ରାଣରେ ଦେଉଥିବ ମରଣଜୟୀ ଦୁର୍ଦ୍ଦମନୀୟ ପ୍ରେରଣା। ଗୁଞ୍ଜରି ଉଠୁଥିବ ସେମାନଙ୍କ କର୍ଣ୍ଣ ଗହ୍ୱରରେ ମେଘଡ଼ମ୍ବରୁ ଓ ସ୍ରୋତକଲ୍ଲୋଳ ଚପାଇ-

"ମୁହିଁ ବସୁଧା ବକ୍ଷେ ଆଗ୍ନେୟାଦ୍ରି
ବାଡ଼ବବହ୍ନି କାଳାନଳ
ମୁହିଁ ପାତାଳେ ମାତାଳ ଅଗ୍ନି-ପଥର
କଳରୋଳ କିଛି - କୋଳାହଳ
ମୁହିଁ ତଡ଼ିତ୍‌ରେ ଚଢ଼ି ଉଡ଼ିଋଲେଁ ଜୋର
ତୋଡ଼ ଦେଇ ଦେଇ ଲମ୍ଫ।
ମୁହିଁ ତ୍ରାସ ସଂଚାରି
ଭୁବନେ ସହସା,
ସଂଚାରି ଭୂମିକମ୍ପ
ଧରେ ବାସୁକିର ଫଣା ଝପଟି
ମୁହିଁ ସ୍ୱର୍ଗୀୟ ଦୂତ ଜିବ୍ରାଇଲର
ଅଗ୍ନିର ଡ଼େଣା ସାଉଁଟି।"

ଯେଉଁମାନଙ୍କର ପ୍ରାଣମୂର୍ଚ୍ଛା ଉଦ୍ୟମ, ଅସୀମ ତ୍ୟାଗ, ସାହସ ଓ ସାଧନାଯୋଗୁଁ ଆମେ ମୁକ୍ତିର ଆଲୋକରେ ଆଲୋକିତ ଓ ସ୍ପନ୍ଦିତ ହେଲୁଁ ସେମାନେ ଆମ ଗହଣରେ ଥିଲେ ଅନେକ ବର୍ଷ ପର୍ଯ୍ୟନ୍ତ । ଦେଶ ନିର୍ମାଣରେ ଲାଗି ପଡ଼ିଥିଲେ । ସ୍ୱାଧୀନ ଭାରତରେ କେତେକଙ୍କର ସ୍ୱପ୍ନଭଙ୍ଗ ହୋଇଥିଲା । ଅବଶୋଷର ଦାବାନଳରେ ଶରୀର ହୋଇଥିଲା କ୍ଷୀଣ, ମନ ହୋଇଥିଲା ବିବର୍ଣ୍ଣ ।

ସଂଗ୍ରାମୀ ନବ ନାୟକଙ୍କ ଜୀବନ ଏକ ଭଗ୍ନ ହୃଦୟର ଇତିହାସ । ଅଗଷ୍ଟ ବିପ୍ଳବ ପୂର୍ବରୁ ସେ ଥିଲେ ଜଣେ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ । ପଣ୍ଡିତ, ସାହିତ୍ୟପ୍ରେମୀ, ଗୀତା, ଭାଗବତ ଜ୍ଞାନରେ ଧୂରୀଣ, ଜଣେ ଚିତ୍ତାକର୍ଷକ ବାଗ୍ମୀ । ୧୯୪୭ ମସିହାରେ ମୁଁ ପଢୁଥାଏ କୋଠାର ମଧ୍ୟ ଇଂରାଜୀ ବିଦ୍ୟାଳୟର ପଞ୍ଚମ ଶ୍ରେଣୀରେ । ଛାତ୍ରାବାସରେ ରହୁଥାଏ । କୋଠାର 'ବଡ଼ପୋଖରୀ' କୂଳସ୍ଥ ପ୍ରଶସ୍ତ ପଡ଼ିଆରେ ଗୋଟିଏ ପାଖରେ ପୋଲିସ୍ ଛାଉଣି ପଡ଼ିଥାଏ । ଅନ୍ୟ ଏକ ପ୍ରାନ୍ତରେ ଭାଷଣ ଦେଉଥାନ୍ତି ନବକିଶୋର ନାୟକ । ସ୍ପଷ୍ଟ ମନେନାହିଁ, ଭାଷଣର ବିଷୟବସ୍ତୁ । ଅନୁମାନ କରୁଛି ବ୍ରିଟିଶ୍ ଶାସନ ଓ ତା'ର ସହାୟକ ଜମିଦାରୀ ଅତ୍ୟାଚାରୀ ବିରୋଧରେ ସେ ଦେଉଥାନ୍ତି ଅଗ୍ନିବର୍ଷୀ ବକ୍ତୃତା । ବନ୍ଧୁକ ଗୁଳି ଭଳି ଆମର କଅଁଳ ଛାତି ଫଟାଇ ସମଗ୍ର ଦେହରେ ଅପୂର୍ବ ତାତି ଖେଳାଇ ଦେଉଥାଏ । ଶିଶୁ ପ୍ରାଣର ସୁପ୍ତ ସିଂହ ଜାଗି ଉଠୁଥାଏ । ନ ଥିଲା ପୋଲିସ୍‌କୁ ସ୍ୱାଭାବିକ ଭୟ । ମନ୍ତ୍ରମୁଗ୍ଧ ପରି ଶୁଣୁଥିଲୁ ତାଙ୍କ ଶବ୍ଦର ଆତସବାଜି । ବିପ୍ଳବୀ ନବ ନାୟକ ଏକଦା କନିକା ରାଜାଙ୍କୁ ବିରୋଧ କରି ରାଜ୍ୟକଂଗ୍ରେସ କମିଟିର ଜନୈକ ସଭ୍ୟ ହୋଇଥିଲେ, ଭଦ୍ରକ ସବ୍‌ଡ଼ିଭିଜନ ପକ୍ଷରୁ ନିଜର ବୈପ୍ଳବିକ ତ୍ୟାଗପୂତ ଜୀବନ କୃତି ଯୋଗୁଁ । ଜୀବନ ଆକାଶରେ କି ଝଡ଼ ବହିଲା କେ ଜାଣି, ସଂଗ୍ରାମୀର ଉଦ୍ଦାମ ଭାବନା, ଧ୍ୱଂସ ଓ ରଚନାର ତାଣ୍ଡବଲୀଳା କେଉଁଆଡ଼େ ଉଭେଇ ଗଲା । ଖଣ୍ଡିଏ ଖଦଡ଼ ଧୋତି ପିନ୍ଧି, କାନ୍ଧରେ ଖଦଡ଼ ଚଦର ଓ ଝୁଲାଟିଏ ପକେଇ ବୁଲି ଚାଲିଲେ, ଗାଁ'ରୁ ଗାଁ', ସ୍କୁଲରୁ ସ୍କୁଲକୁ,ପ୍ରିୟ ପରିଚିତ ଦରଦୀ ବନ୍ଧୁଙ୍କ ନିକଟକୁ । ଅତୀତର ଆଗ୍ନେୟ ସ୍ମୃତିଚାରଣ ନ ଥାଏ । ମୁଖରେ ଥାଏ ଗାନ୍ଧିଜୀଙ୍କ ଶାନ୍ତି ବାଣୀ, ମାନବଧର୍ମର ସାରକଥା, ଗୀତାର ହୃଦୟସ୍ପର୍ଶୀ ଶ୍ଳୋକ । ମୁଁ ଭଦ୍ରକ ହାଇସ୍କୁଲ୍‌ରେ ପଢୁଥାଏ । ସ୍ୱର୍ଗତ ପ୍ରାଣବନ୍ଧୁ ଜେନା ଛାତ୍ରାବାସର ତତ୍ତ୍ୱାବଧାରକ ଗଣିତ ଓ ବିଜ୍ଞାନର ଦକ୍ଷ ଶିକ୍ଷକ । ପିଲାଙ୍କ ଗହଣରେ କିଛି ସମୟ କଟାଇ ରାତ୍ରି ଭୋଜନରେ ଆପ୍ୟାୟିତ ହେବା ପାଇଁ ପହଞ୍ଚଗଲେ ନବବାବୁ । ପିଲାଙ୍କୁ ପ୍ରବଚନ ଦେଲେ ଗୀତାରୁ 'ଯଦା ଯଦାହିଁ ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ .. ଅହଂ ସମ୍ଭବାମି ଯୁଗେ ଯୁଗେ' ।

ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ ଓ ଗାନ୍ଧି ରୂପେ ଜନ୍ମ ଲଭିଥିଲେ ଈଶ୍ୱର, ମାନବ ଜାତିର ତ୍ରାଣ ପାଇଁ । ବୁଣି ଦେଇଥିଲେ ସ୍ନେହ, ପ୍ରେମ, ଶାନ୍ତିର ବାଣୀ, ସତ୍ୟର ଆଲୋକ । ମଣିଷର ସୁଖ ସମୃଦ୍ଧି ସେହି ଦେବଦୂତମାନଙ୍କ କଲ୍ୟାଣରୁ । ମାନବ ସଭ୍ୟତାର ବିକାଶ ମୂଳରେ ରହିଛି ସେହି ମହାତ୍ମାମାନଙ୍କର ଆଦର୍ଶ ନିର୍ଦ୍ଦେଶ । ଆମେ ଛାତ୍ରାବାସର ଅନ୍ତେବାସୀମାନେ ବିମୋହିତ ହେଉଥିଲୁଁ । ନବବାବୁ ଆନନ୍ଦରେ ରାତ୍ରିଯାପନ କରି ଚାଲି ଯାଉଥିଲେ ଅନ୍ୟତ୍ର ।

କିଛି ବର୍ଷ ପରେ ଦିନେ ମୋ ଶ୍ୱଶୁର ବାଉଦପୁର ଷ୍ଟେସନ୍‌ମାଷ୍ଟରଙ୍କ ନିକଟରେ ପହଞ୍ଚିଗଲେ। ମୋ ଅଞ୍ଚଳର ପ୍ରିୟ ଲୋକ ଭାବେ ପରିଚୟ ଦେଇ ତାଙ୍କର ସାଦର ଆତିଥ୍ୟ ଗ୍ରହଣ କଲେ। ସେଦିନର ଆତ୍ମତୃପ୍ତି ନିର୍ବିକାର ଚିତ୍ତରେ ପରେ ମୋ ନିକଟରେ ପ୍ରକାଶ କରିଥିଲେ। ସେ ଆସୁଥିଲେ ଧୁଷୁରିର ସାଂସ୍କୃତିକ ସଭାକୁ, ଦଳ ଦଳ ଶିକ୍ଷକ ସରକାରୀ କର୍ମଚାରୀଙ୍କ ମେଳରେ ଗୀତା ଚର୍ଚ୍ଚା କରୁଥିଲେ, ଅତି ଶ୍ରଦ୍ଧାରେ ଏବଂ ପ୍ରାଞ୍ଜଳ ଭାବରେ।

ଗାନ୍ଧୀ ଯୁଗର ଉଦ୍ଦୀପନାମୟ ସ୍ମୃତି ଓ ଆଦର୍ଶର ମହନୀୟ ବାର୍ତ୍ତାକୁ ଝୁଲିରେ ପୂରେଇ ସେ ବୁଲୁଥିଲେ। ଆଶ୍ଚର୍ଯ୍ୟ ଲାଗୁଥିଲା ତାଙ୍କର ବୁଲା ଫକିରର ଜୀବନ ଲକ୍ଷ୍ୟ କରି। ତାଙ୍କର ଏପରି ନିରାସକ୍ତ ମୁକ୍ତ ଜୀବନଧାରା ଦେଖିଲେ ମନେ ପଡ଼ିଯାଉଥିଲା ବୌଦ୍ଧଶ୍ରମଣଙ୍କ କଥା। ତା'ର ରୂପାନ୍ତର ଥିଲେ କି ଏହି ସରଳ ଖିଆଲୀ ଗାନ୍ଧିଯୋଗୀ ? ଆତ୍ମସମ୍ମାନର ପାର୍ଥିବ ଚିନ୍ତା ତାଙ୍କୁ ସ୍ପର୍ଶ କରି ନ ଥିଲା। ଜୀବନ ଏକ ଅବାରିତ ପବନ ଭଳି ବହି ଯାଉଥିଲା। ଭାବପ୍ରବଣ ଇତିହାସ - ସଚେତନ ଲୋକଙ୍କ ପ୍ରାଣରେ ସିଞ୍ଚି ଦେଉଥିଲେ ତ୍ୟାଗ, ପ୍ରେମର ଅପୂର୍ବ ମହକ।

ଜୀବନର ଶେଷ ପର୍ଯ୍ୟାୟରେ ସେ କ'ଣ ଖୋଜି ବୁଲୁଥିଲେ କହି ହେବ ନାହିଁ। ସ୍ୱାଧୀନତା ପ୍ରାପ୍ତି ପରେ ସଂଗ୍ରାମୀମାନଙ୍କୁ ଯେଉଁ ସମ୍ମାନ ଓ ଦାୟିତ୍ୱ ଦେବା ଉଚିତ୍ ଥିଲା, ତା ଦିଆ ହୋଇ ନଥିଲା। କଂଗ୍ରେସର ବାନା ଧରି ଶାସନ ଭିତରକୁ ପଶି ଆସିଲେ ପ୍ରଭାବଶାଳୀ ଧନୀ ବ୍ୟକ୍ତିଗଣ। ଗାନ୍ଧିଜୀଙ୍କ ଗ୍ରାମ୍ୟସ୍ୱରାଜ ସ୍ୱପ୍ନରେ ହିଁ ରହିଗଲା। ଭାରତର ଶେଷ ମୋଗଲ ସମ୍ରାଟ ବାହାଦୁର ଶାହା ଜାଫରଙ୍କ ଭଳି ସେ କ'ଣ ମନେ ମନେ ଭାବୁଥିଲେ, 'ତୁଂଡ଼୍‌ତା ହାୟ ଖୁଦାକା ତୁ ଜାହିଦ, ହମ୍‌କୋ କରଦେ ସୁରାଗ ହାୟ ଅପନା'। ହେ ଧାର୍ମିକ, ତୁମେ ଖୋଦାଙ୍କୁ ଖୋଜି ବୁଲୁଛ, କିନ୍ତୁ ମୁଁ ଖୋଜି ବୁଲୁଛି ନିଜକୁ କେବଳ ନିଜକୁ।

ଏହି ବୁଲା ଫକିରଙ୍କ ଜୀବନଦୀପ ଲିଭିଗଲା ଅଶୀ ଦଶକର ମଧ୍ୟଭାଗରେ। ତାଙ୍କର ପବିତ୍ର ଜନ୍ମମାଟି ବାହାରବିଲ୍ ଗାଁ' ମୁଣ୍ଡରେ ସ୍ଥାପିତ ତାଙ୍କର ପ୍ରସ୍ତର ପ୍ରତିମୂର୍ତ୍ତିଟି ମନେ ପକାଇ ଦେଉଛି ନିକଟ ମଫସଲର ଜଣେ ବୀର ସୈନିକଙ୍କ ତ୍ୟାଗ ଓ ସଂଗ୍ରାମର ବିସ୍ମୟ-କାହାଣୀ।

## (୧୦)

ଧୁଷୁରି ହାଟର ଅନତି ଦୂରରେ ବହିଯାଉଛି ସରୁ ନଇଟିଏ। ବୈତରଣୀରୁ ଶାଖାଟିଏ ହୋଇ ଧାମନଗରର କି ଆଖୁଆପଦା ପାଖରୁ ବାହାରି ଉତ୍ତର-ପୂର୍ବ ଦିଗରେ ବହି ଯାଇ ମିଶିଛି ସାଳନ୍ଦୀ ସହିତ। ସେହି ନଇ କୂଳରେ ଗାଁ'ଟିଏ, ନାଁ ତା'ର ପତ୍ରୀସାହିଁ। ଧୁଷୁରି ପଟୁ ଗଲେ, ନଇଟି ପାର ହୋଇ ଏହି ଗାଁ' ମୁଣ୍ଡରେ ପହଞ୍ଚିବାକୁ ପଡ଼େ। ମୋ ପିଲାବେଳେ ନଇଟିକୁ ଡ଼ଙ୍ଗାରେ ପାର ହୋଇ ବର୍ଷା ଋତୁରେ ଯିବାକୁ ପଡୁଥିଲା। ଶୀତ ଋତୁ ପରେ ନଇରେ ଆଣ୍ଠୁଏ ପାଣି ଥାଏ କି ନ ଥାଏ। ଏହି ବାଟ ଦେଇ ମାଟି ସଡ଼କଟି ଲମ୍ବି ଯାଇଥିଲା କୋଠାର ଅନ୍ନପାଳ ଦେଇ ଭଦ୍ରକକୁ। କୋଠାରରୁ ଦକ୍ଷିଣ ପଶ୍ଚିମକୁ ଯାଇଛି ଆଉ ଏକ ସଡ଼କ ଧାମନଗର

ଥାନା ଓ ତହସିଲ ହେଡ଼କ୍ୱାର୍ଟରକୁ । ଆଗର ମାଟି ସଡ଼କ ଏବେ ରୂପାନ୍ତରିତ ହୋଇଛି ପକ୍କା ସଡ଼କରେ । ନଈରେ ପୋଲ ହୋଇଛି । ଭଦ୍ରକରୁ ଆଖଣ୍ଡଳମଣି ପର୍ଯ୍ୟନ୍ତ ଯାଇଥିବା ଏହି ସଡ଼କରେ ପ୍ରତିଦିନ ଶହ ଶହ ବସ୍, ଟ୍ରେକର, କାର୍, ଟ୍ରକ୍, ସ୍କୁଟର ଓ ମଟର ସାଇକେଲ ଚାଲିଛି ।

ଗାଁ'ଟିର ନାମ ପତ୍ରୀସାହି କାହିଁକି ? ନଈକୂଳିଆ ଗାଁ'ରେ ଅଳ୍ପ କେତୋଟି ଘର, ଗଛଲତା, ପତ୍ର ଗହଳି ଭିତରେ ଛୋଟ ଛୋଟ ଚାଳଘର ଦିଶେନା । ବର୍ଷା ଋତୁରେ ପ୍ରଚୁର ପୋଇଶାଗ, ଅନ୍ୟ ଋତୁରେ ବୋଇତିକଖାରୁ ଓ ତାର ଡ଼ଙ୍କ ଧୁଷୁରି ହାଟକୁ ଆସେ ଏହି ଗାଁ'ରୁ ପ୍ରଚୁର ପରିମାଣରେ ।

ଗାଁ'ର ଅଳ୍ପ କେତୋଟି ବ୍ରାହ୍ମଣ ଘର, ମାଝୀ ଘର ଓ ଗୋଖା ଘର, ଧାନ, ପରିବା ଚାଷ, ମାଛ ବ୍ୟବସାୟ, ନାଆ ବାହିବା ଓ ଯଜମାନି କରିବା ଆଦି ଧନ୍ଦା ହେଉଛି ଗାଁ' ଲୋକଙ୍କ ଜୀବିକା । ଏହି ଗାଁ'ର ଯୁବକ କୃଷ୍ଣଚନ୍ଦ୍ର ମାଝୀ, କୋଠାର ମଧ୍ୟ ଇଂରାଜୀ ସ୍କୁଲରେ ପାଠ ପଢ଼ି ଝାସ ଦେଇଥିଲେ ସ୍ୱାଧୀନତା ସଂଗ୍ରାମରେ । ସେ କି ପ୍ରଚୋଦନା ପାଇଥିଲେ ଗାନ୍ଧି, ସୁବାସ, ନେହରୁ ମହତାବ ଓ ସୁରେନ୍ଦ୍ର ଦ୍ୱିବେଦୀଙ୍କ ଆହ୍ୱାନରେ ? ଆର୍ଥିକ ସ୍ୱଚ୍ଛଳତା ସତ୍ତ୍ୱେ ପାଠପଢ଼ି  ବଡ଼ ଚାକିରି ପାଇଁ ମନ ବଳି ନ ଥିଲା । ପଚାଶ ଦଶକରେ ମୁଁ ତାଙ୍କ ସଂସ୍ପର୍ଶରେ ଆସିଲି । ଖଦଡ଼ ଧୋତି, ସାର୍ଟ ପିନ୍ଧି ଗାନ୍ଧୀ ଝୁଲାଟେ ଧରି ଯା' ଆସ କରନ୍ତି । ହିନ୍ଦୀରେ ଉଚ୍ଚଶିକ୍ଷା ଲାଭ କରି ବାଗୁରାଇ ହାଇସ୍କୁଲରେ ହିନ୍ଦୀ ଶିକ୍ଷକ ହୋଇଥିଲେ । ସ୍ୱାଧୀନତାପ୍ରାପ୍ତି ପରେ ରାଜନୀତିରେ ଅଂଶଗ୍ରହଣ କରି ନ ଥିଲେ । ଶିକ୍ଷା ପ୍ରତି ମମତା, କି ସ୍ୱାଧୀନୋତ୍ତର ରାଜନୀତି ପ୍ରତି ବିତୃଷ୍ଣା ତାଙ୍କୁ ରାଜନୀତିର ବଳୟ ବାହାରକୁ ନେଇ ଯାଇଥିଲା, କହି ହେବନି । ଆଶ୍ଚର୍ଯ୍ୟ ଲାଗେ ଭାବି ବସିଲେ । କେଉଁ କାରଣରୁ ସ୍ୱାଧୀନତା ସଂଗ୍ରାମରେ ଲିପ୍ତ ଥିବା ବିରଳ ସାହସୀ ଲୋକ ସ୍ୱାଧୀନତା ପରେ ଦେଶ ନିର୍ମାଣରେ ନିୟୋଜିତ ହେଲେ ନାହିଁ । ୧୯୫୨ରୁ ଗ୍ରାମଗୋଷ୍ଠୀର ଯୋଜନା ଚାଲୁ ହେଲା । ଅନେକ ଗ୍ରାମ ସେବକ ନିଯୁକ୍ତ ହେଲେ । ମେଟ୍ରିକ୍ ପାଶ୍ କରିଥିବା ଅନେକ ଯୁବକ ଗାଁ' ଗଣ୍ଡାରେ ଏ କାମ କଲେ । ପଞ୍ଚାୟତ ନିର୍ବାଚନ ମଧ୍ୟ ହେଲା । ଏ ସବୁ ଥିରେ ମୁଁ କାହିଁ ଏ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସକ୍ରିୟ ଅଂଶଗ୍ରହଣ କରିଥିବାର ଦେଖିନି । ବିଧାୟକ ମନ୍ତ୍ରୀ ହେବା,ନେତାଙ୍କର ସେମାନଙ୍କ ଅନୁଚରମାନଙ୍କ ପ୍ରତି ଅବହେଳା କି ଉଦାସୀନତା କିମ୍ବା ଥାନା, ସବ୍‌ଡ଼ିଭିଜନ ଓ ଜିଲ୍ଲାର ଉଚ୍ଚ ସରକାରୀ ପ୍ରଶାସକଙ୍କ ଏମାନଙ୍କ ଯୋଗ୍ୟତା ଓ ବ୍ୟକ୍ତିତ୍ୱ ପ୍ରତି ସନ୍ଦେହ, ଏଥିପାଇଁ ଦାୟୀ କିଏ ତାହା କହିହେବ ନାହିଁ । ସେ ଯାହାହେଉ, ସଂଗ୍ରାମୀମାନଙ୍କର କ୍ଷୋଭ ଓ ସ୍ୱପ୍ନଭଙ୍ଗର ମୂଳ କାରଣ ଯେ ଏହା, ନିଃସନ୍ଦେହରେ କୁହାଯାଇପାରେ ।

ପତ୍ରୀସାହି ପାର ହୋଇ କିଛି ବାଟ ଗଲେ ବାହାରବିଲ ଗାଁ', ନବକିଶୋର ନାୟକଙ୍କ ଜନ୍ମସ୍ଥାନ ସେହି ଗାଁ' ଶେଷରେ ୫୦୦ଗଜ ଦୂରରେ ନଈର ବାଁ ପଟରେ ମିର୍ଜାଘାଟକୂଳ ନାମରେ ଗୋଟିଏ ଛୋଟ ଗାଁ' ଅଛି । ୮/୧୦ଟି ମାତ୍ର ଘର । ସମସ୍ତେ ଗୋଖା, ମାଛ ଶୁଖୁଆ

ବ୍ୟବସାୟ କରନ୍ତି । ବଡ଼ ବଡ଼ ନାଆ ବା ପଟଲା ନେଇ ଋନ୍ଦବାଲି ଯାଆନ୍ତି । ଧାନ, ଋଉଳ, ମାଛ, ଶୁଖୁଆ ଆଣି ବେପାରୀମାନଙ୍କୁ ଦିଅନ୍ତି । ବେଶ୍ ସ୍ବଚ୍ଛଳ ଆର୍ଥିକ ଅବସ୍ଥା ସେମାନଙ୍କର । ପ୍ରତ୍ୟେକ ବର୍ଷ ରଜସଂକ୍ରାନ୍ତିରେ ତିନି ଦିନ ବାଦୀପାଲା ହୁଏ ଏହି ଗାଁ'ରେ । ଯାଜପୁର, କେନ୍ଦୁଝର,ବାଲେଶ୍ୱର ଓ କଟକ ଅଞ୍ଚଳରୁ ନାମଜାଦା ପାଲା ଗାୟକମାନେ ଆସନ୍ତି । ପାଖଆଖ ଗାଁ'ର ପିଲା, ବାଳକ, ସ୍ତ୍ରୀ-ପୁରୁଷ ଏ ପାଲା ଦେଖିବାକୁ ଆସନ୍ତି । ରଜ ଉତ୍ସବର ଆନନ୍ଦ ବଢ଼ିଯାଏ ଏପରି ସଙ୍ଗୀତ ସାହିତ୍ୟ ଆଲୋଚନା ଶୁଣିବାରେ । କିଶୋର ଓ ତରୁଣ ଅବସ୍ଥାରେ ମୁଁ କେତେଥର ଯାଇଛି, ପାଲା ଶୁଣିବାକୁ । ମୁଗ୍ଧ ହୋଇଛି ଗୀତରେ, ଆଲୋକିତ ହୋଇଛି ସାହିତ୍ୟର ରସାଳ ବ୍ୟାଖ୍ୟାରେ ଏବଂ ଉତ୍‌ଫୁଲ୍ଲିତ ହୋଇଛି ଗାୟକ, ପାଳିଆଙ୍କ ଋମରଝଡ଼ା, ଝାଞ୍ଜ, ମୃଦଙ୍ଗ ପିଟା ନୃତ୍ୟରେ । 'ସୀତା ହରଣ' ପାଲାରେ ଗାୟକ ଯେତେବେଳେ ଲଳିତ କଣ୍ଠରେ ଗାଆନ୍ତି -

'ହେ ବନଗିରି, ହେ ଲତାଗିରି !
ମୋ କାନ୍ତ ଗଲେ ମୃଗ ମାରି ।'

ପାଳିଆମାନେ କାରୁଣ୍ୟ ବିଗଳିତ କଣ୍ଠରେ ସେହି ପଦ ଓ ଅନ୍ୟାନ୍ୟ ମନଛୁଆଁ ପଦ ବାରମ୍ବାର ଉଚ୍ଚାରଣ କରନ୍ତି । ଶ୍ରୋତାଙ୍କ ଆଖିରୁ ଲୁହ ଝରିପଡ଼େ । 'ଉଷା-ଅନିରୁଦ୍ଧ ଉପାଖ୍ୟାନ' ଗାଉଥିଲା ବେଳେ ଗାୟକ-ରନ୍ ଯେତେବେଳେ ପ୍ରେମର ଏକ ସଂଗୀତ ଝଲକ ଛାଡ଼ି ଦିଅନ୍ତି-

'ନିଶି ପାହିଗଲାଣି ଏଥର
ନାଗରବର ଛାଡ଼ିଦେ
ମଳିନ ହେଲାଣି ବତୀ ହେ
କୋଳଡେଇଁଲା କୁଳ ଯୁବତୀ ହେ / କୁକ୍‌କୁଟ୍ ଝଙ୍କାର ଶୁଭେ
ବାରମ୍ବାର ଉଇଁ ଆସିଲାଣି ଦିନକର ।'

ସେତେବେଳେ ତରୁଣ-ତରୁଣୀ, ନବବିବାହିତ ଦମ୍ପତିଙ୍କ ଆଖି ଆଗରେ ଭାସି ଉଠେ ରତିଲୀଳାର ମନ୍ମୟ ଛବି । ହୃଦୟ ଭିତରେ ଜାଗିଉଠେ ଅପୂର୍ବ ସ୍ପନ୍ଦନ । ମୋର ତରୁଣ ପ୍ରାଣରେ ମଧ ଖେଳିଯାଏ ଆଲୋଡ଼ନ । ମୋତେ ଆଶ୍ଚର୍ଯ୍ୟ ଲାଗେ, ଏତେ ଗୀତ, ଏତେ ପଦ୍ୟ କେମିତି ପାଲାଗାୟକମାନେ ମୁଖସ୍ଥ କରିଛନ୍ତି । ବହିଖାତା ନ ଦେଖି ଗାଇ ଋଲିଛନ୍ତି ଘଣ୍ଟା ଘଣ୍ଟା ଧରି । ସରଳ ଭାଷାରେ ପ୍ରାଞ୍ଜଳ ଭାବେ ବୁଝାଇ ଦିଅନ୍ତି ଗାୟକ-ରନ୍ ବିଭିନ୍ନ ଆଖ୍ୟାୟିକା । ଯାଜପୁରର ନାଟ୍ୟକାର କବିମଣ୍ଡଳ କୃଷ୍ଣପ୍ରସାଦଙ୍କ ଲେଖା ପାଲାଗାୟକମାନଙ୍କ ଠାରେ ଥିଲା ଅତି ପ୍ରିୟ । ବାଦୀପାଲା ପାଇଁ ମିର୍ଜାଘାଟକୂଳ ଗାଁ'ଟି ଥିଲା ସୁପରିଚିତ । ଏବେବି ହେଉଛି ସେହି ପାଲା । ଜାଣେନା ଆଗ ଭଳି ଲୋକେ ଆକୃଷ୍ଟ କି ନା ।

(୧୧)

ପିଲାବେଳ, ଅଶକ୍ତ ପାଦ, ତଥାପି ମନରେ କେତେ ଆଗ୍ରହ, ଚାଲି ଚାଲି ପାଖଆଖ ଗାଁକୁ ଯିବାକୁ ଯାନିଯାତରା ଦେଖି ବା ବଂଧୁବାଂଧବଙ୍କୁ ସଂଖୋଜି। ଧୁଷୁରିହାଟର ବାମ ଦିଗରେ ମାଟି ରାସ୍ତାରେ ଦକ୍ଷିଣ ପଶ୍ଚିମ କୋଣକୁ କିଛି ବାଟ ଗଲେ ପଡ଼େ ଏକ ଖଣ୍ଡାୟତ ବସ୍ତି, ହରିହଂସ, ହରିହଂସ କଡ଼ ଦେଇ ଆଉ କିଛି ବାଟ ପ୍ରାୟ ଦେଢ଼ ମାଇଲ ଗଲେ ପଡ଼େ ବ୍ରାହ୍ମଣପାଳ, ତାପରେ ନଦୀ ଗାଁ, ଫଳପୁର, ଏହି ପଥରେ ୬/୭ମାଇଲ ଚାଲିଗଲେ ପଡ଼ିବ ଧାମନଗର ଥାନା। ହରିହଂସ ଗାଁର ପ୍ରାୟ ସବୁ ପରିବାର ଚାଷୀ, ବ୍ରାହ୍ମଣପାଳ ଗାଁରେ ବ୍ରାହ୍ମଣଜାତିର ଲୋକେ ସଂଖ୍ୟାଧିକ। ଏହି ଗାଁଟି ମୋ ପିଲାଦିନର ମଧୁର ସ୍ମୃତି ସହ ଜଡ଼ିତ। ବ୍ରାହ୍ମଣପାଳ ଗାଁରେ ପ୍ରତ୍ୟେକ ବର୍ଷ କାଳିପୂଜା ଯାକଯମକରେ ହୁଏ। ଛ' ସାତ ଦିନ ଧରି ଯାତ୍ରା ହୁଏ। ଏକ ବିରାଟ ଭୀମକାନ୍ତ କାଳିମୂର୍ତ୍ତି ଏବଂ କାଳିପୂଜାକୁ କେନ୍ଦ୍ର କରି ଗଢ଼ି ଉଠିଥିବା ଅସ୍ଥାୟୀ ବଜାର, ନାନାପ୍ରକାର ଖାଦ୍ୟ ମନୋହରୀ ଦ୍ରବ୍ୟ, ବାଜା ପେଁକାଳି, ଖେଳନା ଓ ଘରକରଣା ଜିନିଷର ସମାହାର ପାଖ ଆଖ ଗାଁର ଆବାଳ ବୃଦ୍ଧବନିତାକୁ ଆକର୍ଷି ଆଣେ। ମୋର ମନେ ପଡୁଛି ବର୍ଷେ କାଳିପୂଜା ଦେଖିବାକୁ ପଡ଼ୋଶୀ ମାଝୀଘର ବଡ଼ମାଙ୍କ ସଂଗରେ ଯିବାକୁ ମୁଁ ଜିଦ୍ ଧରିଛି, ବୟସ ୮/୧୦ ବର୍ଷ ହୋଇଥାଏ। ଘରେ ବାପା ଭାଇ ନଥାନ୍ତି, ସେମାନେ କଲିକତାରେ। ବୋଉ ମୋର କନ୍ଦାକଟା ଦେଖି ଦି ଅଣା ପଇସା ଦେଇ ବଡ଼ମା ସଂଗରେ କାଳିପୂଜାକୁ ପଠାଇଲେ। କାର୍ତ୍ତିକ ମାସ, କିଆରୀରେ ସବୁଜ ଧାନ ଗଛର ମନଫୁଲା ନାଚ, ପବନ ସହିତ ଖେଳ, କିଆରୀ ଭିତରେ ମାଟିଆ ସଫା ପାଣି, ମାଛ ବେଙ୍ଗ ଜମଣାଙ୍କ ଚଙ୍ଗ ଚଙ୍ଗ ଗତିରେ ପାଣି ଚହଲାର ଶବ୍ଦ, ଠାଏ ଠାଏ ହିଡ଼କଟା, ଗୋଟିଏ ବିଲରୁ ଆଉ ଗୋଟିଏ ବିଲକୁ ଖରଗତିରେ ପାଣି ବହିଯିବା ବ୍ୟବସ୍ଥା ହିଡ଼ ଉପରେ ଯାଉଁ ଯାଉଁ କଟା ଜାଗାକୁ ସାବଧାନତାର ସହ ଡେଇଁବା ଏବଂ କେତେ ଖାଲ ନାଳ ଜାଗାରେ ଲୁଗା ଟେକି, ପାଣିର ଗଭୀରତା ଅନୁମାନ କରିଚାଲିବା, ଏସବୁର ସ୍ମୃତି ଆଜି ମନ ଆଲୋଡ଼ିତ କରିଦେଉଛି। ପିଲା ବୟସରେ ଏହି ପାଣି କାଦୁଅ, ଉଚ୍ଚନୀଚ ଅଗମ୍ୟ ରାସ୍ତାରେ ୩/୪ ମାଇଲ୍ ରାସ୍ତା ଚାଲି, ଠାକୁରାଣୀ ଯାତ୍ରା ଦେଖିବାରେ କି ଆନନ୍ଦ ଥିଲା ତା'ର ନିଖୁଣ ଚିତ୍ର ଆଜି ଦେଇ ହେବନି। ଆଜିର ପିଲାଏ ଅଳ୍ପ ଦୂର ଜାଗାକୁ ଚାଲି ଯିବାକୁ କୁଣ୍ଠାଉଛନ୍ତି। ସେତେବେଳେ ଆମେ ବାଟଚଲାରେ କି ଆନନ୍ଦ ପାଉଥିଲୁଁ? ସାଙ୍ଗସାଥୀ ପ୍ରିୟପରିଜନଙ୍କ ମେଳରେ ଗପସପ ହୋଇଚାଲୁଥିବ ଥକିଗଲେ ରାସ୍ତାର କେଉଁ ଗଛମୂଳେ କି ଉଚ୍ଚ ଢିପ ଜାଗାରେ ବସିଯିବ, ପବନ ବହୁଥିବ, ପାଖ ଗଛଡାଳରେ ପକ୍ଷୀମାନେ ଚେଁ ଚେଁ ହେଉଥିବେ, ପାଣି, ପବନ, ମାଟି ତେଜର ଦେହ, ପ୍ରକୃତିର ଏହି ସବୁ ଉପାଦାନ ସହ ନିବିଡ଼ତରେ ହେଉଥିବ, ମନ ଓ ଦେହରେ ଆସୁଥିବ ସତେଜତା, ପ୍ରସନ୍ନତା। ପିଲାବେଳରେ କ'ଣ ଜାଣିଥିଲୁ ମାଟିର ଆକର୍ଷଣରେ ପ୍ରକୃତିର ଅବାରିତ ସ୍ପର୍ଶରେ କି ଯେ ଅପୂର୍ବ ଭାବାନ୍ତର ଜାତ ହୁଏ, ଯାହା କବି କଣ୍ଠରେ ପ୍ରକାଶ ପାଏ।

"ଡାଳେ ଡାଳେ ବିହରି ଖେଳିବୁଲି ମୁଦେ
ଈଶ୍ୱରଙ୍କ ବିଚିତ୍ର ମହିମା ସ୍ମରାନ୍ତି,ମୋର ହୃଦେ ହେ
ପ୍ରିୟ ସହଚରୀ, ପ୍ରକୃତି ସୁନ୍ଦରୀ
ହୋଇ ଅତି ସାବଧାନ
ସ୍ଥାନେ ସ୍ଥାନେ ତୋହ ପାଇଁ ଥୋଇଅଛି
କେତେ ଅଳଙ୍କାର ମାନ ।" (ଗଙ୍ଗାଧର ମେହେର)

ମୁଁ କ'ଣ ଜାଣିଥିଲି,ପୃଥିବୀ କୋଳରେ ସୁନ୍ଦର ମାନବ ଜୀବନଟିଏ ନେଇ ଆସିବାକୁ ଏଇଥିପାଇଁ ଡ଼ଃ ଫ୍ରାନ୍‌ସିସ୍ ହାକ୍‌ନି ଅଷ୍ଟ୍ରେଲିଆର କବି ମା' ଗର୍ଭସ୍ଥଭ୍ରୂଣକୁ ସ୍ୱାଗତ କରୁଥିଲା। "ଆ, ତୋ ଆଖିରେ ତାରାଙ୍କୁ ପଢ଼ିବୁ / ଫୁଲର ରଂଗ ଆଉ ବାସ୍ନାକୁ ଜାଣିବୁ / ଶୁଣି ପାରିବୁ ତୁ ପକ୍ଷୀଙ୍କ କାକଳି / ଡାକି ଦେଲେ ଧାଇଁ ଆସୁଥିବା ପ୍ରାଣୀଙ୍କ କଅଁଳ ଲୋମକୁ ସାଉଁଳାଇ ନେବୁ।"

କିଛି ଜଣା ନ ଥିଲେ ବି, କିଛି ଚିନ୍ତା ନ କଲେ ବି ପିଲାର କଅଁଳ ହୃଦୟ ଯେ ଉଲ୍ଲାସରେ ଫୁଲି ଉଠୁଥିଲା, ଏଥିରେ ତିଳେ ମାତ୍ର ସଂଦେହ ନାହିଁ।

କାଳିଙ୍କ ଉଗ୍ରମୂର୍ତ୍ତି ପିଲା ମନରେ ଭୟ ସଂଚାର କରୁଥିଲା,କାଳିଙ୍କୁ ଘେରି ରହିଥିବା ଚଣ୍ଡୀ ଚାମଣ୍ଡାଙ୍କ ରୂପ ଆହୁରି ଅଧିକ ଭୟଙ୍କର ଥିଲା। ବୀର ମହିଷାସୁରଙ୍କ ଶୋଚନୀୟ ମୃତ୍ୟୁ ପାପପୂଣ୍ୟ ସଂବନ୍ଧରେ କି ଯେ ଧାରଣା ଦେଉଥିଲା ମନେପଡୁନି। ଖାଲି ମନେ ଅଛି ଜିନିଷପତ୍ର କେତେ ଶସ୍ତା ଥିଲା, ମୋର ଚାହିଦା କେତେ କମ୍ ଥିଲା ଯେ ଦି ଅଣାରୁ ଛଅ ପଇସା ଖର୍ଚ୍ଚ କରି ଜଲିପି, ଆଳୁଦମ୍, ବରା ଖାଇ ଦି ପଇସାର ଖେଳନାଟିଏ କିଣି ଖୁସି ମନରେ ବଡ଼ମା ଓ ତାଙ୍କ ପିଲାଙ୍କ ସହ ଗାଁକୁ ଫେରିଥିଲି, ସଂଜ ବେଳକୁ।

ବ୍ରାହ୍ମଣପାଳର ଅନତିଦୂରରେ ନଦୀ ଗାଁ, ଏହି ଗାଁରେ ଜଣେ ଧନୀ- ମାଝୀ ଘର ଥାଏ, କଲିକତାରେ ତାଙ୍କର ମାଛଚାଷ, ମାଛ ବ୍ୟବସାୟ, ଆମ ପଡ଼ିଶା ଘରର ବଂଧୁ। ସେହି ଧନୀ ଘରର ପିଲାଟି, ନା କିଶୋରଟି ଯେତେବେଳେ ଆମ ଗାଁର ତା ମାମୁଁ ଘରକୁ ଆସେ, ତାର ପୋଷାକ, ଦେହର ସୁବାସିତ ଗନ୍ଧ ଆମକୁ ମୋହାଚ୍ଛନ୍ନ କରେ, 'ଧନୀ ଅର୍ଥ କ'ଣ 'ଗରିବ' ଅର୍ଥ କ'ଣ ସ୍ପଷ୍ଟ ହୋଇ ଉଠେ। କିଛି ବର୍ଷ ପରେ, ମୁଁ କଲେଜ୍‌ରେ ପଢୁଥିଲାବେଳେ କଲିକତାର ଦୁର୍ଦ୍ଧର୍ଷ ଡକାୟତ ଦିନ ଦିପହରେ ବୋମା ଫୁଟାଇ ଘରେ ନିଆଁ ଲଗାଇ ମୂଲ୍ୟବାନ ସୁନାଳଙ୍କାର ବୋହି ନେଲେ। ଘରଟି ଧ୍ୱସ୍ତବିଧ୍ୱସ୍ତ ହୋଇଗଲା। ସେହି ଗାଆଁର ରଥଯାତ୍ରା, ଆମ ଅଞ୍ଚଳରେ ପ୍ରସିଦ୍ଧ ଥିଲା, ବହୁ ଲୋକଙ୍କର ସମାଗମ ହୁଏ। ବିରାଟ ରଥରେ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କ ସୌମ୍ୟ ମୂର୍ତ୍ତି, ରଥଟଣା, ଗୀତ, ଅଶ୍ଳୀଳ ବୋଲି ମନ ଚହଲେଇ ଦିଏ। ଗୋଟିଏ ବୋଲି ପିଲାମାନେ କାହିଁକି କିଜାଣି ଘୋଷି ହୁଅନ୍ତି:

"ରେଳ ଚାଲେ ଘର୍ ଘର୍ ରଥ ଚାଲେ ଘୁଁ
ଯାହା ମୁଣ୍ଡରେ ସିନ୍ଦୁର ବିନ୍ଦୁ, ତା'ରି ଘଇତା ମୁଁ"

ଏହି ଗାଁରେ ଥିଲେ ଜଣେ ଜମିଦାର, ରାୟ ମହାପାତ୍ର, ଶୁଣାଯାଏ କୋଠାର ଜମିଦାରୀ ପଶ୍ଚିମବଂଗର ଶ୍ରୀରାମପୁର ଜମିଦାର ବଳରାମ ବୋଷ  ନେବା ପୂର୍ବେ ଏହାର କିଛି ଅଂଶ ନଦୀ ଗାଁ ଜମିଦାରଙ୍କ ଅଧୀନରେ ଥିଲା। ଓଡ଼ିଆ ସଂଭ୍ରାନ୍ତ ପରିବାରଙ୍କ ପତନ ହେଲା Sun Set  ଆଇନ ଯୋଗୁଁ, ଯାହା କିଛି ଆଭିଜାତ୍ୟ ରହିଗଲା ତାର ପରିପ୍ରକାଶ ହେଲା ସ୍ୱାଧୀନତା ସଂଗ୍ରାମକୁ ପରୋକ୍ଷ ପ୍ରତ୍ୟକ୍ଷ ସମର୍ଥନ ଦେବାରେ ଏବଂ ସ୍ୱାଧୀନତାପ୍ରାପ୍ତି ପରେ ଗ୍ରାମାଞ୍ଚଳରେ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠା କରିବାରେ। ନଦୀ ଗାଁର ରାୟମହାପାତ୍ର ନିଜ ଗାଁରେ ମାଇନର ସ୍କୁଲ ପ୍ରତିଷ୍ଠା ପାଇଁ ଜମି ଦାନ କରିଥିଲେ। ନଦୀଗାଁ ସ୍କୁଲର ଜଣେ ସ୍ୱନାମଧନ୍ୟ ହେଡ୍‌ମାଷ୍ଟର ନିତ୍ୟାନନ୍ଦ ରାୟ, ପରବର୍ତ୍ତୀ କାଳରେ ଜଣେ ଲୋକପ୍ରିୟ ଇଂରାଜୀ ଅଧ୍ୟାପକ ହୋଇଥିଲେ।

ନଦୀଗାଁର ପଶ୍ଚିମକୁ ଫଳପୁର ଓ ଜାହାଙ୍ଗୀର। ଜାହାଙ୍ଗୀରଠାରୁ ବୈତରଣୀ ଗୋଟିଏ ଶାଖାନଦୀ କୁଟିଳା ନାମରେ କିଛିବାଟ ବହି ଆସି, ଅର୍ଦ୍ଧାଭଞ୍ଜିଆ ପାଖରେ ପୁଣି ବୈତରଣୀରେ ମିଶିଛି। ଆଉ ଗୋଟିଏ ଶାଖାନଦୀ ନଦୀ ଗାଁ ଦେଇ କୋଠାର ପାଖ ଦେଇ ବହିଯାଇଛି। କୁଟିଳା ତୀରରେ ଗାଁଟିଏ ଅଛି ପଙ୍ଗଟା, ଏଠାରେ ନଈ ବଡ଼ ଗଭୀର ଓ ତୀଖ, ଏହି ନଈ ଓ ବୈତରଣୀ ମଝିର ଅବବାହିକା ଅଞ୍ଚଳରେ କେତେଗୁଡ଼ିଏ ଗାଁ ଅଛି। ନଦୀକୂଳସ୍ଥ ଗାଁଗୁଡ଼ିକର ଜମି ବଡ଼ ଉର୍ବର, ପ୍ରଚୁର ପନିପରିବା ଚାଷ ହୁଏ, ଧୂଷୁରୀ ହାଟକୁ ଭରପୂର କରିଦିଏ ଏଠାକାର ପରିବାଚାଷ, କୁଟିଳା-ବୈତରଣୀ ମଝିରେ ଥିବା ଏକ ବିଖ୍ୟାତ ଗାଁ, ହସନାବାଦ, ବା ଗୋପବନ୍ଧୁ ନଗର, ସ୍ୱାଧୀନତା ସଂଗ୍ରାମୀ ମୁରଲୀଧର ଜେନା ଓ ଜନସେବୀ ଲୋକପ୍ରିୟ ପ୍ରାକ୍ତନ ବିଧାୟକ ହୃଦାନନ୍ଦ ମଲ୍ଲିକଙ୍କ ଜନ୍ମସ୍ଥାନ। ସ୍ୱାଧୀନତାର ଚେତନା ଓ ଗାନ୍ଧିଜୀଙ୍କ ସମାଜସଂସ୍କାର, ଅସ୍ପୃଶ୍ୟତା ନିବାରଣର ଆଲୋକ ଏହି ଗାଁରେ ପ୍ରଥମେ ଜଳିଥିଲା। ଏହି ଆଲୋକ ସତ୍ତ୍ୱେ ଦୁଇ ନଦୀ ମଧ୍ୟରେ  ଥିବା ଗାଁଗୁଡ଼ିକ ବହୁ ବର୍ଷ  ପର୍ଯ୍ୟନ୍ତ ବନ୍ୟା ପ୍ରକୋପ ଯୋଗୁଁ ଆର୍ଥିକ ଅନାଟନର ଅଂଧକାରରେ ବୁଡ଼ି ରହୁଥିଲେ ବର୍ଷା ଚାରିମାସ। କୋଡ଼ିଏ ବର୍ଷତଳେ ଏହିସବୁ ଗାଁକୁ ବର୍ଷା ଋତୁରେ ଯିବା କଷ୍ଟକର ଥିଲା,  ନଈନାଳ ଡଙ୍ଗାରେ ପାରି ହେବାକୁ ପଡୁଥିଲା। ମୋର ମନେ ପଡୁଛି ପ୍ରାୟ ୩୦ ବର୍ଷ ତଳେ ଧାମନଗରରୁ ଆମ ଗାଁ ପ୍ରାୟ ୧୨ ମାଇଲ ଆଶ୍ୱିନ - କାର୍ତ୍ତିକ ମାସରେ ନଈନାଳ ଖାଲ ଜମି ପାଣିରେ ଡଙ୍ଗାରେ ଆସୁଥିଲୁଁ। ଏବେ କଂକ୍ରିଟ୍ ସଡ଼କ ଧୂଷୁରୀରୁ ଏହି ସବୁ ଗାଁ ଓ ବୈତରଣୀ ସେପାରି କଟକ ଜିଲ୍ଲାକୁ ହୋଇଯାଇଛି, ନଈନାଳରେ ପକ୍କାପୋଲ ହୋଇଛି। ସ୍ୱଚ୍ଛଳ ପରିବାରର ଯୁବକ ବୟସ୍କ ଲୋକେ ହିରୋହୁଣ୍ଡା ବା ଲୁନାରେ ଯା, ଆସ କରୁଛନ୍ତି। ପ୍ରତି ପଞ୍ଚାୟତରେ ଗୋଟିଏ ଦି'ଟା ହାଇସ୍କୁଲ। ରିକ୍ସା, ଅଟୋରିକ୍ସା, ବସ୍, ଟ୍ରେକ୍‌ର ଚାଲୁଛି। ଗାଁର ନିର୍ଜ୍ଜନତା, ଦୂରତାର ଆକର୍ଷଣ ଉଭେଇ ଯାଇଛି। ଚଳଚଞ୍ଚଳ ମୁଖରିତ ହୋଇଯାଇଛି, ମାଟିକୁ ଧରି ରହିଥିବା ଗ୍ରାମ୍ୟଜୀବନ। ଉତ୍କଳମଣି ଗୋପବଂଧୁଙ୍କ ଭଳି, ଲୋକଙ୍କ ଓ ଗ୍ରାମାଞ୍ଚଳର ଦୁରବସ୍ଥା ଦେଖି ଦୀର୍ଘନିଶ୍ୱାସ ପକାଇ କେହି ଆଉ କହୁନାହାନ୍ତି କି ଥିଲା ଏ ରାଜ୍ୟ, କି ହୋଇଛି ଆଜ।' ମଜାରେ ନରନାରୀ କିଶୋର କିଶୋରୀଙ୍କ ଛଇଛଟା ଓ ଲୋକଙ୍କ ଧୂର୍ତ୍ତତା ଦେଖି କେହି କେହି ପୁରୁଣା ପିଢ଼ି ଲୋକ କହି ପକାନ୍ତି :

"ସଖିରେ, ଯାହା ମୁଁ ଦେଖିଲି ବୋଲେ, ବିଶ୍ୱାସ କରି ନୁହେଁରେ
କିସ ଦେଖା ନ ଯାଏ ବଂଚିଥିଲେ ଜୀବନେ।"

(୧୨)

ମିର୍ଜାଘାଟ କୂଳ ଅତିକ୍ରମ କରି କିଛି ବାଟ ଗଲେ ପଡ଼ିବ ବାଲିଚତର, ବୈତରଣୀରୁ ବାହାରିଥିବା ଶାଖା ରେବ୍ ନଦୀଟି ପାର ହେଲେ, ଏକ ବିସ୍ତୀର୍ଣ୍ଣ ଖାଲ ପାଟ ଅଞ୍ଚଳ। ବର୍ଷା ଋତୁରେ ବତରରେ ଠାଏ ଠାଏ ପାଣି ଜମିଥାଏ। ବ୍ତରର ଶେଷ ମୁଣ୍ଡରେ ଏ ଅଞ୍ଚଳର ସୁପରିଚିତ କୋଠାର ଗାଁ'। ସୂର୍ଯ୍ୟାସ୍ତ ଆଇନ ବଳରେ କଲିକତା ନିବାସୀ ଜନୈକ ଧନୀଲୋକ ଏ ଅଞ୍ଚଳର ଜମିଦାରୀ କିଣିନେଇ,ଜମିଦାରୀ ବୁଝାବୁଝି କରିବା ପାଇଁ ବଙ୍ଗାଳୀ କର୍ମଚାରୀ ବା ଇଷ୍ଟେଟ୍ ମେନେଜର ଏଠାରେ ରଖାଇଥିଲେ। କୋଠାରରୁ ଆଖଣ୍ଡଳମଣି ପର୍ଯ୍ୟନ୍ତ ପ୍ରାୟ ୧୦ ମାଇଲ୍ ଦୀର୍ଘ ଅଞ୍ଚଳ ଏହି ଜମିଦାରୀରେ ଅନ୍ତର୍ଭୁକ୍ତ ଥିଲା। ଜମିଦାରୀ ଅଫିସ୍ ସ୍ଥାପନ ପରେ ପରେ ଏକ ସୁନ୍ଦର ରାଧାକୃଷ୍ଣ ମନ୍ଦିରଟିଏ ନିର୍ମାଣ କରାଯାଇଥିଲା ଏବଂ ଏ ଅଞ୍ଚଳରେ ସର୍ବପ୍ରଥମ ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ଥାପନ କରାଯାଇଥିଲା। ମୁଁ ଏହି କୋଠାର ମାଇନର ସ୍କୁଲର ଛାତ୍ର ଥିଲି। ଛାତ୍ରାବାସରେ ରହୁଥିଲି। ବର୍ଷା ଚାରିମାସ ଏହି ରାସ୍ତାରେ ଯିବା ଆସିବା ବେଳେ କେତେ କଷ୍ଟ ପାଉଥିଲୁଁ ମନେ ପଡ଼ିଯାଉଛି। ବଢ଼ିପାଣି ଆସିଥିଲେ, କୋଠାର ଗାଁ' ମୁଣ୍ଡରୁ ଡଙ୍ଗାରେ ଆସିବାକୁ ପଡ଼େ ବାଲିଚତରୀ ନାଳ ପାର ହେବା ପର୍ଯ୍ୟନ୍ତ। ବଢ଼ି ଛାଡ଼ିଗଲେ କାଦୁଅ ପିଚିପିଚି ରାସ୍ତାରେ ଲୁଗା ବା ପ୍ୟାଣ୍ଟ୍ ଆଣ୍ଠୁ ପର୍ଯ୍ୟନ୍ତ ଟେକି ଚାଲିବାକୁ ପଡ଼େ। ଜମିଦାରୀ ସିରସ୍ତାର ପକ୍କା ଘର, ବଙ୍ଗାଳୀ ମ୍ୟାନେଜରଙ୍କ ବାସଗୃହ, ବେଶ୍ ବଡ଼ ଓ ସୁନ୍ଦର ଥିଲା। ମନ୍ଦିରଟିର ପୂଜାର୍ଚ୍ଚନା ଖର୍ଚ୍ଚ ବହନ କରୁଥିଲେ ଜମିଦାର। ଏହି ଶ୍ୟାମସୁନ୍ଦର ମନ୍ଦିରଟି ବେଶ୍ ଆକର୍ଷଣୀୟ। ମନ୍ଦିରର ଯୁଗଳ ମୂର୍ତ୍ତି ରାଧାକୃଷ୍ଣଙ୍କ ଅପରୂପ ସୌନ୍ଦର୍ଯ୍ୟ ଆମ୍ଭମାନଙ୍କ ବାଳକ ହୃଦୟକୁ ବିମୋହିତ କରୁଥିଲା। ପରୀକ୍ଷା ନିକଟ ହୋଇଆସିଲେ ସନ୍ଧ୍ୟା ଆଳତି ବେଳେ ପିଲାମାନେ ଅଧିକ ସଂଖ୍ୟାରେ ମନ୍ଦିରକୁ ଆସନ୍ତି। ମନ୍ଦିର ପରିଚାଳକ କେତେଜଣ ଗରିବ ଛାତ୍ରଙ୍କୁ ପ୍ରତ୍ୟେକ ଦିନ ଅନ୍ନ ଭୋଜନ ଦେଇଥାନ୍ତି। ତେଣୁ ମନ୍ଦିରର ପ୍ରସାଦ ବେଳର ଘଣ୍ଟି ବାଜିଲେ, ଆମେ ମନେ ମନେ ଗାଉଥାଉଁ 'ଶ୍ୟାମସୁନ୍ଦରଙ୍କ ବାଜିଲା ଘଣ୍ଟା ପୁଲାଖିଆଙ୍କର ଫିଟିଲା ଅଣ୍ଟା'। ଆମ ଭଳି ଆର୍ଥିକ ସ୍ୱଚ୍ଛଳ ଛାତ୍ରାବାସରେ ଥିବା ପିଲାମାନେ ଦାରିଦ୍ର୍ୟର ଲଜ୍ଜା କ'ଣ ବୁଝିପାରନ୍ତି ନାହିଁ। ଜମିଦାରୀ ପରିଚାଳକ ଓ ଅନ୍ୟ ବଙ୍ଗାଳୀ କର୍ମଚାରୀଙ୍କ ଫିନ୍ ଫିନ୍ ଧୋତି ଓ ପଞ୍ଜାବୀ ଆଦି ଦେଖିଲେ ବାରି ହୋଇଯାଏ ସେମାନେ ଆମ ଓଡ଼ିଆଙ୍କ ଠାରୁ କେତେ ଭଲରେ ଅଛନ୍ତି, କେତେ ଶିକ୍ଷିତ ପରିମାର୍ଜିତ। ଜମିଦାରୀର ମ୍ୟାନେଜର ଜମିଦାରୀ ଅନ୍ତର୍ଗତ ଗାଁ' ଲୋକମାନଙ୍କ ମଧ୍ୟରେ ଜମିବାଡ଼ି ସଂକ୍ରାନ୍ତୀୟ କଳିଗୋଳ ମେଣ୍ଟାଇବା ପାଇଁ ସବାରୀରେ ଗାଁ'ମାନଙ୍କୁ ଯାଉଥିଲେ। ମୋର ପିଲା ଦୃଷ୍ଟିରେ ସେ ରାଜକୁମାର ପରି ଦିଶନ୍ତି। ଭାବେ ସେ

ନିଜେ ବୋଧହୁଏ ଜମିଦାର, ରାଜବଂଶୀୟ। ଟିକିଏ ବଡ଼ ହେଲାପରେ ଜାଣିଲି, ସେ ଜଣେ କର୍ମଚାରୀ, ଦରମା ଥିଲା ମାସକୁ ମାତ୍ର ୯ଟଙ୍କା । ଆମ ଗାଁ ସ୍କୁଲ ମାଷ୍ଟରଙ୍କ ଦରମା ସହ ସମାନ। କିନ୍ତୁ ଉପୁରି, ତାହା ହିସାବ ବାହାରେ। ସେ ଯେ ଏକ ବିସ୍ତୃତ ଭୂଖଣ୍ଡର ପ୍ରକୃତ ମାଲିକ। ମର୍ଜିରେ ଚତୁରତାର ସହ ଜମି ମାଲିକାନା ହସ୍ତାନ୍ତର କରିପାରେ। ମ୍ୟାନେଜରଙ୍କ ଭଳି ବା ତାଙ୍କଠାରୁ ଅଧିକ ସୌଖୀନ ଜୀବନ ଯାପନ କରୁଥିବା, ଜମିଦାରୀ ବ୍ୟବସ୍ଥାର ଲୋକଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରୁଥିଲେ ସଂଗ୍ରାମୀ ନବ ନାୟକ, ବୈଷ୍ଣବ ନାୟକ। ଜମିଦାରି ଉଚ୍ଛେଦ ହୋଇଗଲା। ବଙ୍ଗାଳି ବାବୁମାନେ ଚାଲିଗଲେ। ମାତ୍ର ରହିଯାଇଛି ଜମିଦାରବାବୁ ଘରର କାର୍ତ୍ତି। କୋଠାର ମଧ ଇଂରାଜୀ ବିଦ୍ୟାଳୟ, ଯାହାର ଭିତ୍ତିଭୂମି ଉପରେ ଗଢ଼ି ଉଠିଲା ୧୯୪୯ ମସିହାରୁ କୋଠାର ହାଇସ୍କୁଲ ଏବଂ ଏକ ସୁରମ୍ୟ ଶ୍ୟାମସୁନ୍ଦର ମନ୍ଦିର। ଏବେ ମଧ ଏହି ମନ୍ଦିରଟି ଅକ୍ଷତ ଅବସ୍ଥାରେ ଅଛି। ସୁଚାରୁରୂପେ ପରିଚାଳିତ ହେଉଛି। ମନ୍ଦିରର ନିଜସ୍ୱ କିଛି ଜମି ଅଛି ଏବଂ ସରକାରୀ, ବେସରକାରୀ ସହାୟତା ମିଳୁଛି। ସେହି ମନ୍ଦିର, ଯେଉଁଠି ପାଦ ପଡ଼ିଥିଲା ମା' ସାରଦା ଦେବୀଙ୍କର ରାମକୃଷ୍ଣ ଓ ମା' ସାରଦାଦେବୀଙ୍କ ପବିତ୍ର ସ୍ମୃତିରେ ଧନ୍ୟ ହୋଇଛି କୋଠାର ଗାଆଁଟି। ସାରଦା ଦେବୀଙ୍କ ଶୁଭ ଆଗମନକୁ ଚିର ସ୍ମରଣୀୟ କରି ରଖିବା ପାଇଁ ବର୍ତ୍ତମାନର ସରକାର ପଦକ୍ଷେପ ନେଉଛନ୍ତି। ନାରୀ ଜାଗରଣ ଧ୍ୱନି ଯେତେବେଳେ ସମାଜ, ରାଜନୀତି, ଅର୍ଥନୀତି ସବୁ କ୍ଷେତ୍ରରେ ଗୁଞ୍ଜରିତ ହେଉଛି, ମାତୃଭକ୍ତିର ଅପୂର୍ବ ରସାଗ୍ରହ କ୍ଷୀଣ ହୋଇଆସୁଛି, ସେତିକିବେଳେ ମା' ଶାରଦାମଣିଙ୍କ ସ୍ମୃତି ବନ୍ଦନାର ପ୍ରଚେଷ୍ଟା ନିଶ୍ଚିତ ରୂପେ ଅଭିନନ୍ଦନୀୟ। ମାଆର ବାତ୍ସଲ୍ୟ ମମତା, ମାତୃଭକ୍ତିର ସ୍ୱର୍ଗୀୟାନନ୍ଦ କେଉଁ ସମାଜ ତ୍ୟାଗ କରିପାରିବ ? ଏ ଐଶ୍ୱର୍ଯ୍ୟ ପ୍ରତି ଅବହେଳା କଲେ, ସମାଜ ଓ ବ୍ୟକ୍ତି ଜୀବନ ଯେ ଅବକ୍ଷୟ ଘଟିବ। ମିଛରେ କ'ଣ ରାମକୃଷ୍ଣ ପରମହଂସ ମା'ଙ୍କ ହାତଧରି ମୁଗ୍ଧ କଣ୍ଠରେ ଗାଉଥିଲେ -

'ଆର ଭୁଲାଲେ ଭୁଲବ ନା ଗୋ
ହୋଇବ ନା ଗୋ, ଦୁଲବ ନା ଗୋ
ପ୍ରସାଦ ବଲେ, ଦୁଧ ଖେୟେଛି
ଘୋଲେ ମିଶେ ଘୁଲବ ନା ଗୋ ।'
'ଆଉ ଭୁଲେଇଲେ କି ଭଣ୍ଡେଇଲେ
ଭୁଲିବି ନାହିଁ,
ଭୟରେ ଥରିବି ନାହିଁ କି ଟଳିବି ନାହିଁ।
ମୁଁ ଦୁଧ ପିଇଛି, ଆଉ ଘୋଳକୁ,
ମନ ବଳାଇବି ନାହିଁ।'

ମା' ସାରଦାମଣିଙ୍କ ପ୍ରତି ଭକ୍ତି ରସରେ ଆପ୍ଲୁତ ହୋଇ ଏ ଅଞ୍ଚଳର ଲୋକେ ନାରୀ ଜାତିର ଉତ୍ଥାନରେ ମନ ଦେବେ, ଏହି ବିଶ୍ୱାସ ଉଲ୍ଲସିତ କରୁଛି।

//୩୩//

କୋଠାର ଗାଁ'ର ପଶ୍ଚିମ ପଟେ ଅଛି ଏକ ବଡ଼ ପୁଷ୍କରିଣୀ। ବଡ଼ ପୋଖରୀ ନାମରେ ଖ୍ୟାତ। ଏହି ପୋଖରୀହୁଡ଼ାର ପୂର୍ବପଟ ବଡ଼ ପ୍ରଶସ୍ତ। ଏହି ପ୍ରଶସ୍ତ ପଡ଼ିଆରେ ପିଲାଏ ଖେଳନ୍ତି, ପୋଲିସ୍ ଛାଉଣୀ ପଡ଼େ ଆବଶ୍ୟକ ହେଲେ। ଗାଁର ଦକ୍ଷିଣ-ପଶ୍ଚିମ ପଟେ, ଧାମନଗରକୁ ଯାଉଥିବା ସଡ଼କ ଆଡ଼କୁ ଏକ ଛୋଟ ପୋଖରୀ। ପୋଖରୀ କୂଳରେ ଏକ ଗ୍ରାମ୍ୟଦେବୀ ମନ୍ଦିର, ଠାକୁରାଣୀଙ୍କ ନାମ କୋଠାର ନାହାକାଣୀ- ଡାକୁଆ ଠାକୁରାଣୀ କୋଠାରୀ, ଯାହା ଭକ୍ତିରେ କବି ଜୟକୃଷ୍ଣ ସାମଲ ଲେଖିଛନ୍ତି -

'ଶକ୍ତିମୟୀ ମା' ମୋର
ମହାଶୂନ୍ୟ- ଅନନ୍ତ ଆକାଶ
ତୋତେ ଧାୟୀ କୋଠାରରେ
କଟାଇଛି ବର୍ଷ ପରେ ବର୍ଷ।
ତୋସରାକୁ ଅନୁଭବି
ପ୍ରତି ମୁହୂର୍ତ୍ତରେ
ଦୁର୍ବଳତା ଠେଲି ଦେଇ
ଚାଲିଛି ମୁଁ ଆଗକୁ ଆଗକୁ।'

ଭକ୍ତ ମାତୃତ୍ୱର ଦୁଃଖ ବୁଝି କବି ରମାକାନ୍ତ ରାଉତ କୁହନ୍ତି - 'ଆଜି ଏଇ ନିର୍ଜୀବ ବେଳାରେ, ଆଜି ଏଇ ତାମସୀ ତିଥିରେ, ଆଜି ମୋର ଘୋର ଦୁର୍ଦ୍ଦିନରେ, ପୂର୍ଣ୍ଣାହୁତି ଦେଇ ତୋ'ର ପୂଜା ନିରାଜନା ମନାସି ମୁଁ ଚିରକାଳ ଘେନୁଛି ମେଲାଣି'।

କୋଠାରର ମଧୁର ସ୍ମୃତି ତା' କୋଳରେ ଅଧ୍ୟୟନ କରୁଥିବା ମୋ ଭଳି ଶତ ଶତ ଛାତ୍ରଙ୍କୁ ଭାବବିଭୋର କରିଛି, ଯାହା କବିଙ୍କ ଲେଖାରେ ଫୁଟି ଉଠିଛି - 'ଅଭୁଲା ମାଇଲା ସ୍ତମ୍ଭ କୋଠାର, ତାରି କୋଳରେ ମୋର ବିତିଛି କୈଶୋରର ଋରିଟି ବସନ୍ତ। ମହମହ ବାସ୍ନାୟିତ ଫୁଲ ଫଗୁଣର ରଙ୍ଗୀନ ପରିବେଶ। ମମତାଭରା ତାର ନିବିଡ଼ ସଂପର୍କ। ପ୍ରକୃତି ରାଣୀର ପଲ୍ଲବିତ ଶୋଭାର ଭଣ୍ଡାର। କେତେ ସ୍ୱପ୍ନାୟିତ ଅତୀତ।' (ଜୟକୃଷ୍ଣ ସାମଲ)

ଏବେ ବି ବହିଯାଉଛି ରେବ ନଈ କୁଳୁକୁଳୁ ନାଦ କରି ଆଷାଢ଼ରୁ ଚୈତ୍ର ପର୍ଯ୍ୟନ୍ତ। ସେହି ବିସ୍ତୃତ ବାଲିବତରୀ ଅଛି, ବନ୍ୟା ଓ ବର୍ଷାର ପ୍ରକୋପ କମିଯାଇ ଥିବାରୁ ବତରାଟି ଆଉ ପୂର୍ବଭଳି ଜଳପୂର୍ଣ୍ଣ ହୋଇ ରହୁ ନାହିଁ ବେଶି ଦିନ। ରେବ ନଈରେ ପୋଲ ହୋଇଛି। ରାସ୍ତା ଲମ୍ବିଯାଇଛି ବାଲିଚତରରେ ମେରୁଦଣ୍ଡ ପରି, କଂକ୍ରିଟ୍ ରାସ୍ତା, ପୋଲ। ଲୁଗା ଟେକି ସାବଧାନରେ କାଦୁଅ ପାଣିରେ ଆଉ ଯିବାକୁ ପଡୁନି। କଅଁଳ କାଦୁଅ ମାଟି ବଦଳରେ ଅଛି କଠିନ କଂକ୍ରିଟ୍ ପଥରଗୁଡ଼ିକ ବାହ୍ୟ ପରିବେଶ ସହ ତାଳ ରଖି ବଦଳି ଯାଉଛି କି ନରମ କୋମଳ, ମଣିଷ ହୃଦୟ, ଦରଦହୀନ କୋଠାର ? ପୂର୍ବର କଚେରୀଘର ବର୍ତ୍ତମାନ ପଞ୍ଚାୟତ ଅଫିସ୍ ହୋଇଛି। ଶୋଷଣର ପରିବର୍ତ୍ତେ ଋଲିଛି କି ଉନ୍ନୟନ ?-ଏହି ପ୍ରଶ୍ନ ଆନ୍ଦୋଳିତ କରୁଛି।

(୧୩)

ମାଟିର ବାସନା କାହାକୁ ବିହ୍ୱଳ ନ କରେ ? ଧୂସର ଉର୍ବର ମାଟି ଉପରେ, ସବୁଜ ଗଛଲତା, ଭେଣ୍ଡି, କାକୁଡ଼ି, ବାଇଗଣ, ବୋଇତି କଖାରୁ ଜହ୍ନି, ପୋଇର ଛନ୍‌ଛନ୍ ପତ୍ର, ଲଟେଇ ଯାଉଥିବା ସର୍ପିଳ ଗତି, ସୂର୍ଯ୍ୟାଲୋକର ଉଷ୍ମ ସ୍ପର୍ଶ ପାଇ ଆନନ୍ଦରେ ଫୁଲି ଉଠୁଥିବା ପନିପରିବା, ଫଳର ପବନ ସହ ନାଚ, କେବଳ କ'ଣ ଚାଷୀକୁ ବିମୋହିତ କରେ ? ଏକ ଅଜଣାଶକ୍ତି ଟାଣିନିଏ ପଥିକକୁ, ପିଲା, ବୁଢ଼ା, ଯୁବକ, ଯୁବତୀ ସଭିଙ୍କୁ। ପଚାଶ କି ଷାଠିଏ ବର୍ଷ ତଳେ ମୁଁ ଯେତେବେଳେ ଯାଉଥିଲି ଚାଲିଚାଲି ଏକା ବା କାହା ସଙ୍ଗରେ, ଧୁଷୁରୀ ହରିହଂସ ଦେଇ ପଙ୍ଗଟା, ପାଟ, କୁଚିଲା ନଈ, ବୈତରଣୀ ପାର ହୋଇ କଟକ ଜିଲ୍ଲାର - ଅହିୟାସ କସ୍‌ପାକକୁ। ନଈକୂଳିଆ ପନିପରିବା ଚାଷ, ଲଙ୍କା, ସୋରିଷ ଫୁଲର ମଂଜୁଳ ଦୃଶ୍ୟ ଯେଉଁ ନୈସର୍ଗିକ ଆନନ୍ଦ ଦେଉଥିଲା, ତା' ବର୍ଣ୍ଣି ହେବନି ଏବେ।

ହରିହଂସରୁ କୁଚିଳା ନଈ ପର୍ଯ୍ୟନ୍ତ ପ୍ରାୟ ଦେଢ଼ ମାଇଲ ବିସ୍ତୀର୍ଣ୍ଣ ଜମି, କେଉଁଠି ଧାନ ତ କେଉଁଠି ବିରି, ମୁଗ, ପନିପରିବା ଚାଷ, କଅଁଳ ଖରାରେ ଗଲାବେଳେ, ଦିପହର ଖରା ନଇଁ ଆସିଲାବେଳେ ଫେରିଲା ବେଳେ ନିଛାଟିଆ ବିଲରେ ଗୁଣୁଗୁଣୁ ଗୀତ ଗାଉଥାଏ। କ'ଣ ଭାବି ଜାଣେନା। ପାଦର ଗତି ଚଞ୍ଚଳ ଥାଏ। ସମ୍ଭବତଃ ମନ ଭିତରେ ଏକା ଏକା ଭାବର ଡ଼ର। ବିଲ ମଝିରେ ଗୋଟିଏ ପୋଖରୀ। ତା ହୁଡ଼ାରେ କେତୋଟି ତାଳଗଛ। ଦି' ତିନୋଟି ବର ଆଶ୍ୱତ୍ଥ ଗଛ। ଗୋଟିଏ ଖୁବ୍ ବଡ଼ ଗହଳିଆ। ସେହି ଗଛରେ ଭୂତ ପ୍ରେତ ଖପିସ୍ ଥାଆନ୍ତି ବୋଲି ଜନରବ। ପକ୍ଷୀଟିଏ ପର ଝାଡ଼ି ଦେଲେ ବା ପୋକଟିଏ ଚେଁ ଚାଁ ଶବ୍ଦ କଲେ, ମୋର ପିଲା ଛାତି ଥରିଯାଏ ଡ଼ରରେ, ଶଙ୍କାରେ।

କୁଚିଳା ନଈରେ ଅଳ୍ପ ପାଣି। ଚାଲି ଚାଲି ପାଦ ଥକିଥାଏ। ବାଲିଆ ନଈର ଥଣ୍ଡା ପାଣିରେ ପାଦ ଦେଇ ନଈପାର ହେଲାବେଳେ ଥକା ମରିଯାଏ। ନଈର ଅପର କୂଳରୁ ବୈତରଣୀ ପର୍ଯ୍ୟନ୍ତ ଦୂରତା ଏକ ମାଇଲ ହେବ। ମଝିରେ ଏକ ବିରାଟ ପଡ଼ିଆ। ଅନେକଗୁଡ଼ିଏ ଆମ୍ବଗଛ। ସେଥିରୁ ଗୋଟିଏ ଥାଏ ବାରମାସୀ, ଗଛର ଆମ୍ବଟିଏ ପାଇଗଲେ ମନରେ ଅପାର ଆନନ୍ଦ ଜାତ ହୁଏ। ପଡ଼ିଆ ପାର ହେଲେ, ବୈତରଣୀ କୂଳକୁ ଲାଗି ହସନାବାଦ ବନାମ ଗୋପବନ୍ଧୁନଗର ଗାଁ'। ଏହି ଗାଁ'ରେ କଂଗ୍ରେସ ନେତା ଗାନ୍ଧିବାଦୀଲୋକ ଅନେକ। ଗାଁଟିରେ ଅଧିକାଂଶ ଲୋକ ଖଣ୍ଡାୟତ। ଏହି ଗାଁରେ ମୋର ଅତିପ୍ରିୟ ବାଲ୍ୟ ବନ୍ଧୁ ବିଭୂତି ଓ ତାରୁଣ୍ୟ ସମୟର ବନ୍ଧୁ ବିମଳାନନ୍ଦ (ବିନ)ର ଘର। ଦୁହେଁ ଜୀବନ ଯାପନ କରିଥିଲେ ମୋ ଭଳି ନିଷ୍ଠାପର ଦକ୍ଷ ଶିକ୍ଷକ ରୂପେ। ବନ୍ଧୁ ବିଭୂତି ଇହଧାମ ଛାଡ଼ି ଗଲାଣି। ବିନ ବଂଚିଛି, ପତଳା, ଶାନ୍ତ ଧୀର ଚିରୋତ୍‌ଫୁଲ୍ଲ ଲୋକଟିଏ। ଶିକ୍ଷା ଓ ସମାଜ ସେବାରେ ବିଶେଷ ଆଗ୍ରହ। ବିଭୂତି ଓ ମୁଁ କୋଠାର ମାଇନର ସ୍କୁଲରେ ଏକ ସଙ୍ଗେ ପଢୁଥିଲୁଁ। ଦୁହିଁଙ୍କ

ଭିତରେ ଥିଲା ଗଭୀର ମମତା। ଆମେ ଶ୍ରେଣୀରେ ପ୍ରଥମ, ଦ୍ୱିତୀୟ ହେଉଥିଲେ ହେଁ ଆମ ଭିତରେ ପ୍ରତିଯୋଗିତାମୂଳକ ବୈରିତା ନ ଥିଲା। ପାରସ୍ପରିକ ମମତା ପରସ୍ପରର ଘରକୁ ଟାଣି ନେଉଥିଲା ଛୁଟି ଦିନମାନଙ୍କରେ। ବିଭୂତିର ଘରକୁ ଯାଇଛି କେତେଥର, ରାତ୍ରିଯାପନ କରିଛି। ଉଣିଶ ଦଶକର ଶେଷ ଭାଗରେ ସେ ଗାଁରେ ଜାତିଭେଦ ଓ ଛୁଆଁ ଅଛୁଆଁ ଭାବର କ୍ରମ ଅପସାରଣ ମୋତେ ମୁଗ୍ଧ ବିସ୍ମିତ କରିଥିଲା। ଉଲ୍ଲସିତ କରିଥିଲା ବିଭୂତିର ଛୋଟ ଭଉଣୀର କୋମଳ ସୁନ୍ଦର ରୂପ, ଗେହ୍ଲାଳିଆ ଢଙ୍ଗ, କଅଁଳ କଥା। ପୁରୁଷ, ନାରୀ, ମଧ୍ୟରେ ଥିବା ଆଜନ୍ମ ଆକର୍ଷଣ ସୁପ୍ତାବସ୍ଥାରୁ ଉଦ୍ରିତ ହୋଇ ଆସୁଥିଲା ବିଭୂତି ଭଉଣୀର ସଂସ୍ପର୍ଶରେ। କି ପିଲାଳିଆମି। ମନେ ମନେ ଭାବୁଥିଲି ଏହି ସୁକୁମାରୀ ଝିଅଟିକୁ ବାହା ହୁଅନ୍ତି କି। ବିଭୂତି ଓ ମୋ ଭିତରେ ବନ୍ଧୁତା ଦୃଢ଼ ଓ ସ୍ଥାୟୀ ହୋଇଯା'ନ୍ତା। କେତେ ଆଦରରେ ତାକୁ ଚକ୍ ଖଡ଼ି ଦେଉଥିଲି ସ୍ମରଣ କଲେ ହସ ମାଡ଼େ। ମୋର ନିର୍ବୋଧତାରେ ଜାତିଭେଦର କଠିନ ଜଂଜିରକୁ ଭୁଲି ଯାଉଥିଲି। ତେଲି ଖଣ୍ଡାୟତ ପରିବାର ଭିତରେ ବୈବାହିକ ସଂପର୍କ ପଚାଶ ବର୍ଷ ପରେ ମଧ୍ୟ ସହଜ ନୁହେଁ । ସେତେବେଳେ ପାଗଳଙ୍କ ପରି କାହିଁକି ଏ ସ୍ୱପ୍ନ ଦେଖୁଥିଲି ? ବନ୍ଧୁ ନାହାନ୍ତି, କିନ୍ତୁ କୈଶୋର ବନ୍ଧୁତା ଅସ୍ପଷ୍ଟ ଚମକ ଆଜି ନୀଳ ସ୍ୱପ୍ନର ଝାପ୍‌ସା ଝାପ୍‌ସା ଛବି ଆଙ୍କି ଦେଉଛି।

ହସନାବାଦର ସେହି ବିରାଟ ପଡ଼ିଆରେ ଷାଠିଏ ଦଶକର ଶେଷ ବେଳକୁ ହାଇସ୍କୁଲଟେ ମୁଣ୍ଡ ଟେକିଲା। ସେ ସ୍କୁଲର ହେଡ୍‌ମାଷ୍ଟର ହେଲେ ମୋର ବନ୍ଧୁ ବିମଳାନନ୍ଦ ସାହୁ (ବିନ) ଧୁଷୁରୀ ସ୍କୁଲର ହେଡ୍‌ମାଷ୍ଟର ପଦ ଛାଡ଼ି ନିଜ ଗାଁ' ସ୍କୁଲକୁ ଆସିବା ମୂଳରେ ବ୍ୟକ୍ତିଗତ ସ୍ପୃହା କି ରାଜନୀତିର ଖେଳ ଥିଲା, ସେ ଜାଣନ୍ତି। ସେହି ସ୍କୁଲକୁ ଏବଂ ସ୍କୁଲ ପଡ଼ିଆରେ ଅନ୍ୟ ସାଂସ୍କୃତିକ ସଭାକୁ ସମ୍ମାନିତ ଅତିଥି ଭାବେ ମୁଁ କେତେଥର ଯାଇଛି। ଭାଷଣରେ ପ୍ରଶଂସା ଓ ସାଦର ଆତିଥ୍ୟ ଲୋକଙ୍କଠାରୁ ପାଇଛି, ଆନନ୍ଦିତ ହୋଇଛି। କିନ୍ତୁ ଅତୀତର କିଶୋର ବେଳର ଏହି ଗାଁ'ରେ କେତୋଟି ମଧୁର ରାତିର ଅଙ୍କୁରମାନ ସ୍ୱପ୍ନିଳ ପ୍ରେମାନୁରାଗର ଅଦ୍ଭୁତ ଶିହରଣ ଫେରିପାଇନି, ପାଇବି ନାହିଁ ଏ ଜୀବନରେ।

ହସନାବାଦ ଘାଟରେ ବୈତରଣୀ ପାର ହେଲେ ପଡ଼େ ଛୋଟ ଗାଁ'ଟିଏ ପଲ୍ଲୀସାହି, ନଈ କୂଳରେ। ସେହି ଗାଁ'ରେ ମୋ ବଡ଼ଭାଇ ବାହା ହୋଇଥିଲେ। ମୁଁ ପିଲା ଥାଏ, ଦ୍ୱିତୀୟ କି ତୃତୀୟ ଶ୍ରେଣୀରେ ପଢୁଥାଏ। ନୂଆବୋଉଙ୍କ ଘରକୁ ବାହାଘର ପରର ଭାର ବେଭାର ନେଇ ବାରିକ ସହ ଯାଏ। ନୂଆବୋଉଙ୍କ ମାଆ ମୋତେ ବୈତରଣୀ ପାଣିରେ ଘଷି ପୋଛି ଗାଧୋଇ ଦିଅନ୍ତି। ବୈତରଣୀର ପାଣି ସ୍ୱଚ୍ଛନିର୍ମଳ, ଶୀତଳ ମଧ୍ୟ। ନଈର ଶଯ୍ୟା ବାଲୁକାମୟ। ମୋ ଗାଁ' ନଈର ଶଯ୍ୟା କର୍ଦ୍ଦମାକ୍ତ। ପିଲାର ପାଦକୁ କଅଁଳ ବାଲିର ତରଳ ଗତି ଆରାମ ଦିଏ। ନୂଆବୋଉଟି ମୋର ବେଶ୍ ସ୍ୱାସ୍ଥ୍ୟବତୀ, ତନ୍ୱୀ, ଦୀର୍ଘାଙ୍ଗୀ ଏବଂ ସ୍ନେହପ୍ରବଣା ଥିଲେ। ବୈତରଣୀ ନଈ ପଠାର ସତେଜ ମନଲୋଭା ଛନ୍‌ଛନିଆ କଖାରୁ, ବାଇଗଣ, ଅମୃତଭଣ୍ଡା ପରି ନୂଆବୋଉଙ୍କ ଦେହ ମନ ରସାଳ ଓ ବଢ଼ନ୍ତା ଆକର୍ଷଣୀୟ ଥିଲା। ଲୋକେ କୁହନ୍ତି

ବୈତରଣୀ କୂଳିଆ ଗାଈ ବେଶ୍ ଦୁଧିଆଳ। ଏବକାର ଜର୍ସି ଗାଈର ପ୍ରତିରୂପ। ନୂଆବୋଉଟି ମୋର ସେହିପରି ଥିଲେ। ନଅଟି ସନ୍ତାନର ମାଆ ହୋଇ ଅକ୍ଷୁଣ୍ଣ ରଖିଥିଲେ ଦେହକୁ ବହୁକାଳ ପର୍ଯ୍ୟନ୍ତ। ଢାଳି ଦେଉଥିଲେ ସ୍ନେହ ଶ୍ରବାର କ୍ଷୀର, ପରିବାର ପଡ଼ିଶାଙ୍କ ମନ ସନ୍ତୁଷ୍ଟ କରି। ସେହି ଗାଁ'ର ନଦୀର ଆକର୍ଷଣ ଓ ମଧୁର ସ୍ମୃତିରେ ମୁଁ ଲେଖିଥିଲି କବିତାଟିଏ 'ଦୂର ଗାଆଁ ନଈ' ମନଛୁଆଁ କବିତା।

'ଡର ଲାଗେ ଦୂର ଗାଆଁ ନଇ,
କାହିଁ ଲୁଚିଥିବ ମତ୍ସ୍ୟକନ୍ୟା
ଚଦେଲେଇ ମୋ ଭୀଷ୍ମ ଶପଥ,
ଆଲୋକ ସନ୍ଧାନୀ ମନ, କରିବ ଚଞ୍ଚଳ
ମାୟାବିନୀ ଦୂର ଗାଆଁ ନଈ,
ଉଚ୍ଛଳ ତା ଜଳର ତରଙ୍ଗ
ନୂତନର ଆବାହନ,
ପୁରାତନେ କରେ ସଦା ବ୍ୟଙ୍ଗ।'

ବନ୍ୟା ଦାଉରୁ କଟକ ଜିଲ୍ଲାର ନଈକୂଳିଆ ଗାଆଁମାନଙ୍କୁ ସୁରକ୍ଷା ଦେବା ପାଇଁ ବୈତରଣୀର ଦକ୍ଷିଣ ତୀରରେ ପଶ୍ଚିମରୁ ପୂର୍ବକୁ ଦୀର୍ଘ ଚଉଡ଼ା ବନ୍ଧ ହୋଇଛି। ସେହି ବନ୍ଧ ଉପରେ ସାଇକେଲ, ଜିପ୍, ରିକ୍ସା ଯାଉଥାଏ ବର୍ଷା ବ୍ୟତୀତ ଅନ୍ୟ ଋତୁରେ। ସେହି ବନ୍ଧରେ କିଛି ଦୂର ପଲ୍ଲୀସାହିରୁ ଗଲେ କମାଳପୁର ଗାଁ।' ସେଠାରୁ ଦକ୍ଷିଣକୁ ୨ ମାଇଲ ଗଲେ କଣପା। ପଛପଡ଼ାଠାରେ କାଣି ନଈ ପାର ହେଲେ କଣପା ଓ ଅହିୟାସ ଗାଁ'। ଏହି ଗାଁ'ଟି ୫୦/୬୦ ବର୍ଷ ତଳେ ସହରର ଛାପ କିଛି ବହନ କରିଥିଲା। ସ୍ଥାୟୀ ଘ, ଜଳଖିଆ, ମିଠାଇ ଦୋକାନ ଥିଲା ଗାଁ'ରେ। ପଠାଣ ସାହି, ପରେ ପରେ ମହାନ୍ତି ସାହି, ପୁରୁଣା ହାଇସ୍କୁଲ, ବ୍ରହ୍ମଋଗାପାଟଣା। ସ୍ୱଚ୍ଛଳ ଉନ୍ନତ ଶିକ୍ଷିତ ପରିବାରର ସମାହାର। ସେ ବେଳର ଚହଳ, ପକାଇଥିବା ଧରମ ଝିଅ ଉପନ୍ୟାସ, ଏହି ଗାଁ'ର ଗୋଟିଏ ଝିଅ ସହିତ ସ୍କୁଲ ପରିଦର୍ଶକଙ୍କ ପ୍ରେମକୁ ନେଇ ଲେଖା। ପିଲାବେଳେ ଉପନ୍ୟାସଟି ମୋ ମନକୁ ସ୍ୱପ୍ନିଳ କରି ଦେଉଥିଲା। ପଲ୍ଲୀସାହିରୁ ଅହିୟାସ, ମୋର ଆଦରର ଗଉାନାନୀ (ବାପାଙ୍କ ଭାଣିଜୀ) ଘରକୁ ଗଲାବେଳେ କମାଳପୁର ନିକଟସ୍ଥ ବିରାଟ ଝଙ୍କାଳିଆ ବରଗଛଟି ଆକର୍ଷିନିଏ। ତା'ର ବିସ୍ତୃତ ଛାୟା-ଶୀତଳ ଅଣ୍ଟୋଚ ଡାଳରେ ବସି ଚଢ଼ି କିଛି ସମୟ ଚିରବିନୋଦନ କରେ। ରାସ୍ତାର ଦୁଇ ପାର୍ଶ୍ୱରେ ଅନେକ ଗଛ ଥିବା ପଥ ଅତିକ୍ରମ କରି କଣପାରେ ପହଞ୍ଚେ। କାଣି ନଈ କୂଳସ୍ଥ ପଛପଡ଼ା। ଗାଁ'ର ପାଣମାନେ ଧାମନଗର ଯାଜପୁର ଅଞ୍ଚଳରେ ମନମୁଗ୍ଧକର ଢୋଲପିଟାଳୀ (ବାଦ୍ୟକାର) ରୂପେ ପ୍ରସିଦ୍ଧି ଲାଭ କରିଥିଲେ। ମୋ ବଡ଼ ଭାଇଙ୍କ ବାହାଘରକୁ ଏମାନେ ଯାଇଥିଲେ ବରଯାତ୍ରୀ ସଙ୍ଗରେ। ସେମାନଙ୍କର ଷେଏନାଚ, କେଳା କେଳୁଣୀ ନାଚ ଆମ ଗାଁ' ଲୋକଙ୍କୁ ବିମୋହିତ କରିଥିଲା। ଆଜି ସେମାନଙ୍କର ସେ ଅଭୁତ ଚିରହରା କଳା

ଉଜ୍ଜୀବିତ ଅଛି କି ନାହିଁ, ମୁଁ ଜାଣେନା। ଯାହାର ସ୍ନେହ ଡୋରିରେ ଟାଣି ହୋଇ ମୁଁ ଗାଁଠାରୁ ୬/୭ ମାଇଲ ଦୂରରେ ଥିବା ଗଉାନାନୀ ଘରକୁ ଧାଉଁଥିଲି, ସେ ଆଜ ନାହିଁ। ତାଙ୍କ ଘର ସହିତ ବନ୍ଧୁତାର ଡୋରି ଛିନ୍ନ ହୋଇଗଲାଣି। ମାତ୍ର ଗଉାନାନୀର ଅକୃତ୍ରିମ ସ୍ନେହର ସ୍ମୃତି ଆଜିବି ମୋତେ ଉଲ୍ଲସିତ କରେ। ଗରିବ ଭିଣେଇଟି କଲିକତାରେ ଆମ ଦୋକାନରେ କର୍ମଚାରୀ। ତଥାପି ମୁଁ ବା ମୋ ସାହିର କେହି ଲୋକ ପହଞ୍ଚିଲେ, କେତେ ଜିନିଷ କେଉଁଠୁ ଆଣି ଗଉାନାନୀ ଯେ ଖୁଆଏ ମୁଁ ଭାବି ଆଶ୍ଚର୍ଯ୍ୟ ହୁଏ। ସୁଦାମାର ଖୁଦ୍ ମୁଠାଟି ଶ୍ରୀକୃଷ୍ଣଙ୍କୁ ଅମୃତର ସ୍ୱାଦ ଦେଲା ଭଳି, ତାର ବଡ଼ିଚୁରା,ଶାଗ ଭଜା ଆମକୁ ପରମ ତୃପ୍ତି ଦିଏ। ତୃପ୍ତି ଥାଏ ସ୍ନେହର କୋମଳ ଆବେଗରେ ନା ଦ୍ରବ୍ୟରେ ? ତୃପ୍ତି ଥାଏ ଭଲ ପାଇବାରେ। "ଭଲ ପାଇବା ହେଉଛି, ନିଜେ ଅନ୍ୟକୁ ସମର୍ପି ଦେବା, ଭଲ ପାଇବା ହେଉଛି ନିଜକୁ ଅନ୍ୟ ଭଳି ଗଢ଼ିବା, ଭଲ ପାଇବା ହେଉଛି ଜୀବନକୁ ନିଜ ନିଜ ଭିତରେ ବାଣ୍ଟି ଦେବା।" (ଏସ୍‌ଥେର ଗ୍ରେସ୍- ଡ୍ରେମାର୍କ) ଗଉାନାନୀ ଥିଲା ଭଲ ପାଉଥିବା ନାରୀଟିଏ। ଶାନ୍ତିର କପୋତୀଟିଏ। ଅଭାବ ଅନାଟନ ଭିତରେ ସେ ସାଉଁଟି ରଖିଥିଲା, ବିଛୁରି ଦେଉଥିଲା ସ୍ନେହର ଅବିର।

## (୧୪)

ଦୋଳ ପୂନେଇ, ହୋରି, ଅବିର ଖେଳ, ରଙ୍ଗ ପିଚ୍‌କାରୀ ମରାମରି, ରାଧାକୃଷ୍ଣଙ୍କ ବିମାନ ମନ୍ଦିରରୁ ବାହାରି ଘର ଘର ଯାତ୍ରା, ଝାଞ୍ଜ କରତାଳ ମୃଦଙ୍ଗ ବାଦ ସହ ଲଳିତ କଣ୍ଠର ଗାନ 'କଳାକଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ / କରନ୍ତି ମଥୁରା ବିଜୟ ଦାଣ୍ଡେ ଦେଖ ସଙ୍ଗାତ', ଗାଁ' ପିଲାଙ୍କର ମଉଜ ମଜଲିସ୍, କେତେ ନଡ଼ିଆ ଉଖୁଡ଼ା କଦଳୀ ଭୋଗ, ଶେଷରେ ଗାଁ' ମୁଣ୍ଡ ପଡ଼ିଆରେ ମେଳନ, କେତେ ଗାଁ'ରୁ ଆସିଥିବା ବିମାନ, ବିଭିନ୍ନ ଢଙ୍ଗରେ ରଙ୍ଗରେ ସାଜସଜ୍ଜା, ପୁନ୍ନେଇ ରାତିର ଜହ୍ନ ଆଲୁଅ ସାଙ୍ଗକୁ ଡ୍ରେ-ଲାଇଟ୍ ଉଜ୍ଜ୍ୱଳ ଆଲୋକ ରାତି ପାଲିଟି ଯାଏ ଦିନ ଭଳି ନିଶବ୍ଦ କୋଳାହଳମୟ। ପାଲା ଅବା ଯାତ୍ରାର ମନ ମତାଣିଆ ଗାନ, ନାଚ, ସଂଳାପ, ଅଭିନୟ ସୃଷ୍ଟି କରିଥାଏ ଏକ ନୂତନ ଜଗତ, ଆନନ୍ଦ ଉତ୍ସାହ ଉଦ୍ଦୀପନାର। ଗ୍ରାମ୍ୟ ଜୀବନର ଏହି ଚିତ୍ତାକର୍ଷକ ମୁହୂର୍ତ୍ତ ସହରରେ ମିଳେନି। ତେଣୁ ଦୋଳ ସମୟ ଆସିଲେ ମନେ ପଡ଼େ ଗାଁ' କଥା, ନିଜ ଗାଁଠାରୁ କିଛି ଦୂରରେ ଥିବା ସୂର୍ଯ୍ୟପୁର ଏବଂ ତା'ଠାରୁ ଅଧିକ ଦୂରରେ ଥିବା ବୟାଗଡ଼ି ମେଳନ କଥା।

ସୂର୍ଯ୍ୟପୁରର ଗୋବିନ୍ଦଜୀଙ୍କ ମନ୍ଦିର ମୋର ପିଲାବେଳେ ଆମ ଅଞ୍ଚଳରେ ବେଶ୍ ଆକର୍ଷଣୀୟ ଥିଲା। ସୂର୍ଯ୍ୟପୁର ପଡ଼ିଆରେ ଦୋଳ ମେଳନରେ ଆମ ଗାଁ ରାଧାଗୋବିନ୍ଦ ଯୋଗ ଦେଉଥିଲେ। ସାଜସଜ୍ଜା, ବାଦ୍ୟ, ସଂଗୀତ, ବାଣଫୁଟାର ପ୍ରତିଯୋଗିତା ଦର୍ଶକମାନଙ୍କୁ ମୁଗ୍ଧ କରି ଦେଉଥିଲା। ସୂର୍ଯ୍ୟପୁରଠାରୁ କୋଠାର ନିକଟସ୍ଥ ବୟାଗଡ଼ି ହାଟର ମେଳନ ଥିଲା ଅଧିକ ବଡ଼ ଏବଂ ଜାକଜମକପୂର୍ଣ୍ଣ- ଆମ ଗାଁ'ଠାରୁ ୫ ମାଇଲ୍ ଦୂର। କିଶୋର ଓ ଯୁବକ ଅବସ୍ଥାରେ ଆମେ ଏକଜୁଟ୍ ହୋଇ ମେଳନ ଦେଖି ଯାଉଁ।

ବୟାଙ୍ଗଡ଼ି ମେଳନ ପଡ଼ିଆରେ ଥରେ ମୋତେ କେନ୍ଦ୍ର କରି ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇଥିଲା। ମୁଁ ସେତେବେଳେ ଭଦ୍ରକ ହାଇସ୍କୁଲର ଛାତ୍ର। ଗାଁ' ପିଲାଙ୍କ ସହ ବୟାଙ୍ଗଡ଼ି ମେଳନ ଦେଖି ଯାଇଥାଏ। ରାତିସାରା ଉଜାଗର ରହି ଶୋଭାଯାତ୍ରାରେ ପହଞ୍ଚୁଥିବା ବିମାନ ଦେଖୁଥାଏ। କ୍ଲାନ୍ତ ହୋଇ ଗୋଟିଏ ଦୋକାନ ପିଣ୍ଡାର ଖୁଣ୍ଟକୁ ଆଉଜି ବସି ପଡ଼ିଲି। ନିଦ ଆସିଗଲା। ପାହାନ୍ତା ସମୟ, ନିଦରେ କେତେବେଳେ ମୋର ହାତ ପିଣ୍ଡା ତଳେ ବସିଥିବା ଜଣେ ସ୍ତ୍ରୀ ଲୋକର କାନରେ ବାଜିଗଲା। ସେ ଚିତ୍କାର କରି ଉଠିଲା, 'ଏ ପିଲା ମୋ କାନ ସୁନା ଟାଣି ନେଉଛି'। ତା ଚିତ୍କାରରେ ପାଖଲୋକେ ମୋତେ ଘେରିଗଲେ। ପାଟିରୁ କଥା ବାହାରୁ ନ ଥାଏ। ଦୈବାତ୍ କୋଠାର ହାଇସ୍କୁଲରେ ପଢୁଥିବା ସ୍ଥାନୀୟ ପିଲା ଦି' ଜଣ, ମାଇନର ସ୍କୁଲରେ ମୋର ସହପାଠୀ, ସେଠାରେ ପହଞ୍ଚିଗଲେ। ସେମାନେ କହିଲେ, 'ଏ ଭାରି ଭଲ ପିଲା। ଆମ ସାଙ୍ଗରେ ପଢୁଥିଲା। କଦାପି ଏ ଏପରି କାମ କରି ନଥିବ।' ମୁଁ ନିନ୍ଦା ଓ ମାଡ଼ରୁ ରକ୍ଷା ପାଇଗଲି। ଗୋଟିଏ ଗ୍ରହ ମୋର କଟିଗଲା ବୋଲି ଭାବି ଆଶ୍ୱସ୍ତ ହେଲି।

କୋଠାରରୁ ଧାମନଗର ଯାଇଥିବା ମାଟି ସଡ଼କଟି, ବୟାଙ୍ଗଡ଼ି ଗାଁ'କୁ ଦୁଇଭାଗ କରି ଦେଇଛି। କୋଠାରରୁ ଏକ ମାଇଲ୍ ଦୂରରେ ଥିବା ଏହି ଗାଁ'ର ମଝିରେ ସଡ଼କର ବାମ ପାର୍ଶ୍ୱରେ ବୟାଙ୍ଗଡ଼ି ଜମିଦାର ମହାପାତ୍ରଙ୍କ ଘର। ଘରଟି ଅଧା ପକ୍କା, ଘର ସାମ୍ନେ ପୋଖରୀଟିଏ, ପକ୍କାରେ ତିଆରି ଘାଟଟି ମାଲିକର ଆଭିଜାତ୍ୟର ସୂଚନା ଦିଏ। ମହାପାତ୍ର ବାବୁଙ୍କର ଝିଅଟିଏ କୋଠାର ମାଇନର ସ୍କୁଲର ଉଚ୍ଚ ଶ୍ରେଣୀରେ ପଢୁଥିଲେ। ଗୋରୀ ସୁନ୍ଦରୀ ଝିଅଟି ମୋର ବନ୍ଧୁ ଅକ୍ଷୟ ଜେନାଙ୍କୁ ବିବାହ କରିଥିଲା। ହାଇସ୍କୁଲ ଓ କଲେଜରେ ପଢୁଥିଲା ବେଳେ ସେହି ରାସ୍ତା ଦେଇ ଧାମନଗର ଗଲାବେଳେ, ମହାପାତ୍ରଙ୍କ ଘର ପାଖରେ ସେହି ସୁନ୍ଦରୀ ଝିଅର ଛବି ଭାସିଯାଏ ମୋ ଆଗରେ। ସାହସ କି ତୀବ୍ର ଇଚ୍ଛା ନଥାଏ ଝିଅଟିର ଘରକୁ ଯାଇ ଆନନ୍ଦରେ କିଛି ସମୟ କଟାଇବାକୁ। ଧନୀ ଘରର ଅଲିଅଳ ଝିଅ। ସମାଜରେ ନିମ୍ନ ଜାତିର ଦୂରଗାଁ' ପିଲାଟିକୁ କାହିଁକି ସେ ଆଦର କରିବ ? କିନ୍ତୁ ତା'ର ବିପରୀତ ଦିଗରେ ରାଢ଼ି ସାହିର ମାଟିକାନ୍ଥ ଘଳ ଛପର ଘରେ ଥାଏ ବୋହୂଟିଏ। ନାଁଟି ତା'ର ପାର୍ବତୀ। ଡାକ ନାଁ ପାର। ଗୋରୀ, ସ୍ୱାସ୍ଥ୍ୟବତୀ, ଉନ୍ଦମୁହିଁ। ଆମ ସାହିର ଶେଷ ମୁଣ୍ଡରେ ତା'ର ବାପଘର। ଚୁଡ଼ା ପାଇଁ ଯାଉଁ ତା' ଘରକୁ। ତା'ର ହସହସ ମୁହଁ, ଛନ୍ଦାୟିତ ଗତି, ଘର ପଛପଟେ ଆମ୍ବ ବଗିଚାରେ ରଜଦୋଳି ଖେଳ ମୋ ପିଲା ମନରେ ଛାପ ପକାଇଥିଲା। ଦିପହରେ ନିର୍ଜନ ବେଳାରେ ରଜ ପୂର୍ବଦିନରେ ଦୋଳି ଖେଳିବାକୁ ଧାଇଁ ଯାଉଁ। ସେ ଜଗେ ଆମ୍ବ, ମୁଁ ଲୋଭେଇ ଯାଏ ବନିଲା ବନିଲା ଆମ୍ବ ଦେଖି ସବୁଜ ପତ୍ର ଗହଳ ଭିତରେ। ଆଲୁଅ ଅନ୍ଧାରର ଭିଥରରେ ନାଚି ନାଚି ଯାଏ ସୁନ୍ଦର ଦ୍ରବ୍ୟର ଅଣୁକଣିକା, ଛୁଇଁ ଯାଏ ସତେଜ ମଣିଷର ଦେହ,ମନ, ତୋଳେ ଅବୁଝା ପୁଲକିତ ସ୍ପନ୍ଦନ।

ସେହି ସୁନ୍ଦର ସ୍ମୃତି ଥରେ ଟାଣି ନେଲା ତା'ର ଶାଶୁଘରକୁ ମୋତେ। ସେ ତ ଆଉ ମୁକ୍ତ ବିହଙ୍ଗ ଦାୟିତ୍ୱହୀନ ଆଦରର କନ୍ୟା ନୁହେଁ। କର୍ମବ୍ୟସ୍ତ ସାମାଜିକ, କଟକଣାରେ

ନିୟନ୍ତ୍ରିତ ବୋହୂ। କେତେ ବା ମିଶିବ ଜଣେ ତରୁଣାୟିତ କିଶୋର ସାଥୀରେ। କ'ଣ ଟିକିଏ କଥା। ସରବତ ଗ୍ଲାସରେ ଆପ୍ୟାୟିତ କରି ଚାଲିଗଲା ଅନ୍ଧାରିଆଘର ଭିତରକୁ। ଅଳ୍ପ ବୟସରେ ଝିଅମାନଙ୍କର ରୂପାନ୍ତରରେ ବିସ୍ମିତ ହୋଇ ମୁଁ ଆଗେଇ ଯାଏଁ ମୋର ଗନ୍ତବ୍ୟ ପଥରେ ଏକା ଏକା। ସହଚରୀ ଆସିବାକୁ ଅପେକ୍ଷା ନ କରି। ମନେ ମନେ ଭାବୁଥାଏ ବାଳିକାର ଜୀବନ କେତେ ତଫାତ ବାଳକର ଜୀବନଠାରୁ। 'ଭଗ୍ନୀ ରୂପେ ଦେଖା ଦେଇ ହୁଏ କାର ଜାୟା, ମାଆ ରୂପେ ଜଗତରେ ବୁଣିଦିଏ ମାୟା'। ମନେ ପଡ଼ିଯାଏ କବି ହୃଷୀ ମଲ୍ଲିକଙ୍କ ପଦ୍ୟ-

'ତାକୁ ପାଇବି ବୋଲି
ନଇଁ ଦେଲି ଜାମୁଡାଳ
ଖଜୁରୀ ଗଛ ମୂଳରେ ଆରମ୍ଭିଲି
ଛକା ପଞ୍ଝା ଖେଳ
ତାକୁ ତ ପାଇବି ବୋଲି
ବାଲିଛତୁ ତୋଳୁଥିଲି
ଭାଙ୍ଗୁଥିଲି ଜିଆଙ୍କର
କାଦୁଅ ଦିଆଲ
ସିଏତ ଓଳି ତଳେ ଛପିଥିବା
ବଉଳ ଫୁଲର ବାସ୍ନା
ବାରି ହୁଏ, ଧରା ଦିଏ ନାହିଁ।'

(୧୪)

ମୋ ସାହିର ଦକ୍ଷିଣ ମୁଣ୍ଡରେ ବଡ଼ ପଡ଼ିଆଟିଏ, ସର୍ଭା ନଈ କୂଳକୁ ଲାଗି। ନଈ ଧାରକୁ ଲାଗି ପଡ଼ିଆର କିଛି ଅଂଶରେ କେତେଗୁଡ଼ିଏ ବର, ଅଶ୍ୱତ୍ଥ ଗଛ ମେଲି ଯାଇଥାଏ ଡାଳପାଲା, ଗଛର ଛାଇରେ ପଡ଼ିଆର ପଶ୍ଚିମ ଭାଗରେ ଆମ ଗାଁ' ପ୍ରାଥମିକ ଓ ମଧ୍ୟ ଇଂରାଜୀ ବିଦ୍ୟାଳୟର ପକ୍କା ଓ ଖଡ଼ଘର। ପ୍ରାଥମିକ ବିଦ୍ୟାଳୟର ପକ୍କା ଘର ଉପରେ ଏଜ୍‌ବେଷ୍ଟସ୍‌ର ଛାତ। ପ୍ରାୟ ୫୦ ବର୍ଷ ତଳେ ମୋ ଭାଇ ଓ ତାଙ୍କର ତରୁଣ ସାଙ୍ଗମାନଙ୍କ ଉଦ୍ୟମରେ ଏହା ନିର୍ମିତ ହୋଇଥିଲା। ପରବର୍ତ୍ତୀ କାଳରେ ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ଉଚ୍ଚଇଂରାଜୀ ବିଦ୍ୟାଳୟ ପାଇଁ କେତୋଟି ପକ୍କା ଓ ଖଡ଼ଘର ତିଆରି ହେଲା। ସ୍କୁଲର ପଶ୍ଚିମପଟ କାନ୍ଥକୁ ଲାଗି ଚାଷ ଜମି, ବେଶ୍ ଉର୍ବର। ପଡ଼ିଆ ମଝିରେ କିଛି ବର୍ଷ ତଳେ ସରକାରଙ୍କ ସାହାଯ୍ୟରେ ପୋଖରୀଟିଏ ଖୋଳା ହୋଇଥିଲା। ଏବେ ସେ ପୋଖରୀଟି ପୋତି ହୋଇ ପଡ଼ିଲାଣି। ନଈର ପଶ୍ଚିମ କୂଳକୁ ଖାଇ ଯାଉଛି ବନ୍ୟା। ତେଣୁ ପଡ଼ିଆର କେତେ ଅଂଶ ଖୁବ୍ ଖାଲ ହୋଇଗଲାଣି।

ପଡ଼ିଆ ମୁଣ୍ଡରେ ନଈ ପାର ହୋଇ ପୂର୍ବ ଦକ୍ଷିଣ ଦିଗକୁ ଗଲେ କେତେଗୁଡ଼ିଏ ଗାଁ' ପଡ଼େ। ଗାଁମାନଙ୍କ ଭିତରେ ସବୁଠୁଁ ଡାକ ଗାଁ' ଟି ମୋ ଗାଁ'ଠାରୁ ସିଧା ବିଲ ରାସ୍ତାରେ ପ୍ରାୟ ସାତ ମାଇଲ ଦୂର। ଶୈବପୀଠ ରୂପେ ଆଖଣ୍ଡଳମଣିଙ୍କ ମନ୍ଦିର ଓ ଆରେଡ଼ି ଗାଁ' ଓଡ଼ିଶାର କଟକ, ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର ଓ ପଶ୍ଚିମବଙ୍ଗର ମିଦ୍‌ନାପୁର ଜିଲ୍ଲାରେ ବେଶ୍ ଜଣାଶୁଣା। ପ୍ରାୟ ୨୫ ବର୍ଷ ତଳେ ଯେତେବେଳେ ଧୁଷୁରିରୁ ଆରେଡ଼ିକୁ ସବୁଦିନିଆ ବସ୍ ରାସ୍ତା ନ ଥିଲା ରୀତିମତ ବସ୍, ଟ୍ରେକର ଯାଉ ନଥିଲା ଆମେ ଗାଁ'ରୁ ନଈ ପାର ହୋଇ ବିଲ ରାସ୍ତାରେ ଆଖଣ୍ଡଳମଣିଙ୍କ ପୂଜା ସରଞ୍ଜାମ ଧରି ଆରେଡ଼ି ଯାତ୍ରା କରୁଁ। ଭଦ୍ରକ ଯାଜପୁର ସବ୍‌ଡ଼ିଭିଜନ୍‌ର ଲୋକେ ପ୍ରାୟ ପ୍ରତ୍ୟେକ ବର୍ଷ ଅନ୍ତତଃ ଥରେ ଆଖଣ୍ଡଳମଣିଙ୍କୁ ଦର୍ଶନ କରିବାକୁ ଯାଆନ୍ତି। ଆଖଣ୍ଡଳମଣି ଏକ ପ୍ରତ୍ୟକ୍ଷ ଦେବତା। ଲୋକେ ବିପଦ ଆପଦରୁ ରକ୍ଷା ପାଇବା ପାଇଁ, ପିଲାଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରି କିଛିନା କିଛି ମାନସିକ କରିଥାନ୍ତି। ଏହି ମାନସିକ ଭୋଗ ଦେବା ପାଇଁ ଆଖଣ୍ଡଳମଣି ଯାଆନ୍ତି। ହସ, ଖୁସି, ଗପସପ ହୋଇ କେତେଜଣ ସାଙ୍ଗରେ ଗଲେ ବାଟଚଲା ବ୍ୟଥା ଟିକିଏ କମ୍ ହୁଏ। ସେଇଥିପାଇଁ ବୋଧହୁଏ ଗାଁ'ର ତିନି ଚାରି ପରିବାର ସାଙ୍ଗ ହୋଇ ଆଖଣ୍ଡଳମଣି ଯାଆନ୍ତି। ପିଲାବେଳେ କେତେଥର ଚାଲି ଚାଲି ଆରେଡ଼ି ଯାଇଛି। ଶେଷଥର ଚାଲି ଚାଲି ଯାଇଥିଲି ପ୍ରାୟ ୩୬ ବର୍ଷ ତଳେ। ବଡ଼ ପୁଅ ପାଇଁ ଥାଏ ମାନସିକ। ପୁଅ ବାବୁଲାକୁ ଗାଁର କିଶୋରଟିଏ ସାଇକେଲ୍‌ରେ ବସାଇ ଧୁଷୁରି ବାଟ ଦେଇ ନେଇଗଲା। ମୁଁ ଓ ମୋର ଶାଳିକା ମାଳତି ଓ ଅନ୍ୟ କେତେଜଣ ଚାଲି ଚାଲି ଗଲୁଁ।

ନଈ ପାର ହେଲେ ବିଲ୍, ଧାନକଟା ସରିଥାଏ। ହଳ ହୋଇ ନ ଥାଏ। ବିଲ୍‌ରେ ଚଳନ୍ତି ରାସ୍ତା ପଡ଼ିଥାଏ। ଧୂଳି ଓ ଧୂସର ମାଟି ରାସ୍ତା ପାଦକୁ କାଟେନାହିଁ। ପ୍ରାୟ ତିନି ମାଇଲ ପରେ ପଡ଼ିବ ଗାଁ' ଶାଆଁଳପୁର, ବେତାଳିଗାଁ'। ଦକ୍ଷିଣ-ପୂର୍ବ ପଟେ ଆମ ଗାଁ'ର ଉତ୍ତର-ପୂର୍ବ ପଟେ ଦେଉଳବାଡ଼ି, ଖଡ଼ିମାହାରା। ଉତ୍ତର ଦକ୍ଷିଣ ପାଞ୍ଚ ଛଅ ମାଇଲ, ପଶ୍ଚିମ-ପୂର୍ବ ସାତ ଆଠ ମାଇଲ ବ୍ୟାପୀ ବିସ୍ତୃତ ବିଲ ଜମି। ମଝିରେ ଗୋଟେ ଅଧେ ଗାଁ, ଛୋଟ ନାଳ, ଖାଲ ଇତ୍ୟାଦି। ଭଦ୍ରଭଦିଆ ଖରାବେଳେ ଏହି ବିସ୍ତୀର୍ଣ୍ଣ ବିଲ ଦେଇ ଗତି କଲେ ଶଙ୍କା ଜାତ ହୁଏ। ମହାଶୂନ୍ୟରେ ଏକ ରିକ୍ତ ପ୍ରାଣୀଟିଏ ପରି ଲାଗେ। ଆମ ଗାଁ'ଠାରୁ ପ୍ରାୟ ଦୁଇତିନି ମାଇଲ ଦୂର ପର୍ଯ୍ୟନ୍ତ ବିଭିନ୍ନ ଦିଗରେ ଗାଁ' ବାସୀଙ୍କର ଚାଷଜମି ଅଛି। ଶୁଣାଯାଏ ପ୍ରାୟ ଶହେବର୍ଷ ତଳେ ଏଜମିଗୁଡ଼ିକର ଚାହିଦା ନ ଥିଲା। ଯିଏ କାୟିକ ଶ୍ରମ କରି ଚାଷ କରି ପାରୁଥିଲା, ହିଡ଼ବାଡ଼ ଦେଇ ଜମିର ହେପାଜତ ନେଉଥିଲା, ସିଏ ଜମିର ମାଲିକ ହେଉଥିଲା। ଏହି ସୂତ୍ରରେ ମୋର ସାଆନ୍ତ (ଗୋସବାପା) ଆମ ଗାଁ'ଠାରୁ ଦୂରରେ କେତେ ମାଣ ଜମି ଆମ୍ଭମାନଙ୍କ ପାଇଁ ରଖି ଯାଇଛନ୍ତି।

ଗାଁ' ନଈ ପାର ହୋଇ ବେତାଳିଗାଁ' ଆଡ଼କୁ ଗଲେ ଏକ ମାଇଲ୍ ଦୂରରେ ଗର୍ଗା ନଈ ପଡ଼େ। କୁଚିଳାରୁ ଶାଖା ହୋଇ ଆସିଥିବା ସରୁ ନଈରେ ଗୋଟିଏ ଜାଗାରେ ଗଣ୍ଡଟିଏ। ସେ ଗଣ୍ଡରେ ଖରାଦିନରେ ମଧ୍ୟ ପାଣି ଥାଏ। ଏହି ଗଣ୍ଡ କୂଳସ୍ଥ ଜମି ଉର୍ବର। ବାପା ଆମର

କିଛି ଜମି ଏଠାରେ କିଣିଥିଲେ। ଗର୍ରା ନଈର ଗଭୀର ଅଂଶର ପାଣି ବେଶ୍ ସଫା ଓ ଶୀତଳ। ନଈ କୂଳରେ ସ୍ଥାନେ ସ୍ଥାନେ ବଡ଼ ବଡ଼ ଗଛ ଥାଏ। ବାଟୋଇମାନେ ବିଶ୍ରାମ ନିଅନ୍ତି ଗଛର ଛାଇରେ। ମୋର ମନେ ହେଉଛି ଆଖଣ୍ଡଳମଣି ବା ବେତାଳିଗାଁକୁ ଯିବା ବା ସେଠାରୁ ଫେରିବା ବେଳେ ଗର୍ରା କୂଳର ଗଛ ମୂଳେ ବସି, ଥଣ୍ଡା ଖୋଲାପବନ ସେବନ କରି ଆମେ ବେଶ୍ ଆନନ୍ଦ ପାଉଁ। କିଶୋର, ତରୁଣ ମନରେ ମୁକ୍ତ ନିର୍ବାଦ ପ୍ରାକୃତିକ ପରିବେଶରେ ନାନା ଭାବ ଜାତ ହୁଏ। ପବନରେ ଚହଲି ଯାଉଥିବା ପାଣିର କୁଳୁକୁଳୁ ଶବ୍ଦ କାଚ ପରି ପାଣିରେ ଛୋଟ ବଡ଼ ମାଛଙ୍କ ଖେଳ, ଆମକୁ ଆକୃଷ୍ଟ କରେ। ଏହି ନଈରେ ଭଲ ମାଛ ରୁହନ୍ତି। ଆମ ଗାଁ' ମାଝୀମାନେ ମାଛ ଦରିବା ପାଇଁ ଜମିଦାର ବା ସରକାରଙ୍କଠାରୁ ନିଲାମରେ ଅଧିକାର ନେଇଥାନ୍ତି। ଗର୍ରା ନଈର ଜୀଅନ୍ତା ମାଛ ତରକାରୀର ସୁଆଦ ଏବେ ବି ମୋତେ ବିଭୋର କରିଦିଏ।

ଶାଆଁଳପୁର ଗାଁ'ଟି ମୋ ବାଲ୍ୟ ସ୍ମୃତିରେ ଫୁଲଟିଏ ପରି ଶୋଭା ପାଉଛି। ଏହିଗାଁ'ରେ ଥିଲେ ଜଣେ ମହାଜନ। ତାଙ୍କର ଝିଅ ସହ ମୋ ଭାଇଙ୍କର ବିବାହ ପ୍ରସ୍ତାବ ପଡ଼ିଥିଲା। କୌଣସି କାରଣରୁ ତାହା ସଂପନ୍ନ ହେଲା ନାହିଁ। ମହାଜନ ଗୌର ସାହୁ ମୋ ବାପାଙ୍କୁ କହିଥିଲେ, ମୋର ଦ୍ୱିତୀୟ ଝିଅକୁ ତୁମର ଦ୍ୱିତୀୟ ପୁଅ ସହିତ (ମୋ ସହିତ) ବାହା ଦେବି। ମୁଁ ସେତେବେଳେ ଗାଁ' ସ୍କୁଲରେ ପଢୁଥାଏ। ବିବାହ ପାଇଁ ଉତ୍ସୁକତା କ'ଣ ଜଣା ନ ଥାଏ। ତେବେ ଅଞ୍ଚଳର ଧନୀ ମହାଜନ ଘରେ ଯେ ଆମର ବନ୍ଧୁତା ହେବ, ଏହା ମୋ ମନରେ ଗୋପନରେ ଗର୍ବ ଆଣି ଦେଉଥାଏ। ମୁଁ ଯେତେ ଭଲ ପାଠ ପଢ଼ିଲି ମୋର ବିବାହ ସେତେ ବିଳମ୍ବ ହେଲା। ଶାଆଁଳପୁରର ସୁକୁମାରୀ ଝିଅଟିକୁ ଜୀବନ ସଂଗିନୀ ରୂପେ ପାଇଲି ନାହିଁ। ସେ ହେଲା ମୋ ସ୍କୁଲ ପଢୁଆ ସାଙ୍ଗର ସହଧର୍ମିଣୀ। ତେବେ ଜୀବନରେ ବିବାହ ସଂପର୍କିତ ସ୍ୱପ୍ନିଳ ଚିତ୍ରରେ ସେ ଅଦେଖା ଝିଅଟି ପ୍ରଥମ ରେଖା ହୋଇରହିଲା। ବାଲ୍ୟଜୀବନର କେତେଜଣ ପ୍ରିୟ ସହପାଠୀ ଥିଲେ ଶାଆଁଳପୁର ପାଳସାହିର ପିଲା। ସେମାନଙ୍କ ବନ୍ଧୁତାର ରୋମାଞ୍ଚକର ସ୍ମୃତି ଏ ଗାଁ' ପାଖ ଦେଇ ଭଦ୍ରକ ଆଖଣ୍ଡଳମଣି ପକ୍କା ସଡ଼କ ଯାଇଛି। ଶାଆଁଳପୁରରେ ଖୋଲାଯାଇଛି ଇନ୍ଦିରା ଗାନ୍ଧି ମହାବିଦ୍ୟାଳୟ। ବିଦ୍ୟାଳୟଟି ଏକ ବିସ୍ତୀର୍ଣ୍ଣ ପଡ଼ିଆ ଭିତରେ ଅବସ୍ଥିତ। ରାଜୀବ ଗାନ୍ଧି ହେଲିକେପ୍ଟରରେ ୧୯୮୫ ମସିହାରେ ଏହି ପଡ଼ିଆରେ ଅବତରଣ କରି ଗୋଟିଏ ନିର୍ବାଚନୀ ସଭାରେ ଭାଷଣ ଦେଇଥିଲେ। ମହାବିଦ୍ୟାଳୟର ପ୍ରଧାନ ଉଦ୍ୟୋକ୍ତା ମୋର ସହପାଠୀ ଦେବେନ୍ଦ୍ର ମହାନ୍ତି। ସହଯୋଗ କରିଛନ୍ତି କଂଗ୍ରେସର ଆଞ୍ଚଳିକ ନେତାମାନେ। ରାଜନୈତିକ ମତବାଦ ମୋର ଭିନ୍ନ ହେଲେ ହେଁ କଲେଜ ପରିଚାଳକମାନେ ମୋତେ ଶ୍ରଦ୍ଧା ସମ୍ମାନ କରନ୍ତି। ଶାଆଁଳପୁରଠାରୁ ଏକ ମାଇଲ ଦୂରରେ ବେତାଳି ଗାଁ,' ସେଠାରେ ପ୍ରତିଷ୍ଠିତ ହୋଇଛି ଆଉ ଏକ କଲେଜ ଆଖଣ୍ଡଳମଣିଙ୍କ ନାମରେ। ଏହି କଲେଜ ପ୍ରତିଷ୍ଠାରେ ହୃଦାନନ୍ଦ ମଲ୍ଲିକଙ୍କ ଉଦ୍ୟମ ଏବଂ ମୋର ନିବିଡ଼ ଅକୁଣ୍ଠିତ ସହଯୋଗ ରଚନାତ୍ମକ ଜୀବନର ଏକ ଉପାଦେୟ ଅଧ୍ୟାୟ। ସାଂପ୍ରତିକ ଗ୍ରାମ୍ୟ

ସମାଜର ଭରରଣର ଆନନ୍ଦ ବିଷାଦ ଛବିର ଏହି ଅଧ୍ୟାୟ ପରେ ବର୍ଣ୍ଣନା କରିବି। ଏବେ କହୁଛି ମୋ ବିଲର କଥା, ପାଣି, ପବନ,ଗଛଲତାର ମଧୁର ସ୍ପର୍ଶର କଥା।

ଛୋଟପୁଅ, କିଶୋରୀ ଶାଳିକା ଓ ସାହିର କେତୋଟି ପିଲାଙ୍କ ସହ ଆଖଣ୍ଡଳମଣି ଦର୍ଶନ କରି ଦି ପହରେ ଫେରି ଆସିଲୁ ଗାଆଁକୁ। ମୋର ସିନା ଚାଲିବାର ଅଭ୍ୟାସ ଥାଏ, ଶାଳିକାର କଅଁଳ ପାଦକୁ ବେଶ୍ ପରାସ ଲାଗୁଥାଏ। ଶିବଙ୍କର ବର ପାଇବାର ଲାଳସା ସମ୍ଭବତଃ ତା'ର ମନୋବଳ ଦୃଢ଼ କରି ଦେଇଥାଏ। କଷ୍ଟ ନ କଲେ କୃଷ୍ଣ ମିଳେନା ବିଶ୍ୱାସର ସହ ସେ ଧାଇଁଯାଇଛି ଏତେ ଦୂର ଶିବଦର୍ଶନକୁ। ବେଳେବେଳେ ମୁଁ ଭାବେ, ତରୁଣ କୃଷ୍ଣ ତ ସାଙ୍ଗରେ ଅଛନ୍ତି, ଲଳିତା ବିଶାଖାମାନେ କାହିଁକି ଶିବପୂଜା କରୁଛନ୍ତି ? ଏ କ'ଣ ଦ୍ୱାପର ଯୁଗ। ଖୋଲା ପ୍ରେମ ନିଷେଧ ଏଠି। କଳି ଯୁଗରେ ଗଳିପଶି ଯାହା କିଛି କରିବ, କେହି ଯେପରି କିଛି ଜାଣିପାରିବେ ନାହିଁ।

ତେବେ ଯାହା ହେଉ ସୁନ୍ଦରୀ ଶାଳିକାଟି ସାଥୀହୋଇ ଯାଇଥିବାରୁ ଯାତ୍ରାର ବ୍ୟଥା ଉଭେଇ ଯାଇଥିଲା। ଗାଁ'ରେ ପହଞ୍ଚିବା ଅଳ୍ପ ଦୂର ଥାଏ। ସନ୍ଧ୍ୟା ଆସନ୍ନ ପ୍ରାୟ କ୍ଳାନ୍ତ ହୋଇ ବିଲମଝିରେ ବସିପଡ଼ିଲା ସାଥୀଟି। ଗୋଧୂଳିର ରକ୍ତିମା ତା'ର ଚିକ୍କଣ ଶ୍ୟାମଳ ଗଣ୍ଡରେ ବିଛୁରି ପଡ଼ିଥାଏ। ବିଲ୍‌ରେ କାମକରା ଲୋକ କେହି ନାହାନ୍ତି। ଗାଁର ଅନ୍ୟ ପିଲାଏ ଆଗେଇଗଲେଣି। ଆମେ ଦୁହେଁ ପୁରୁଷ ଓ ପ୍ରକୃତି। ବସି ପଡ଼ିଲି ତଳେ। ଛାତି ଉପରକୁ ଟାଣି ଆଣିଲି। ସୁକେଶୀର ମସ୍ତକଟି ମୋ ଛାତି ଉପରେ। ମୋର କଠିନ ଆଙ୍ଗୁଳିରେ ତା'ର କପୋଳ ଚପି ଦେଲି। ଆଉଁଶି ଦେଲି ପିଠି ଓ ମୁହଁ। ଗଣ୍ଡଦେଶରେ ଲାଗିଗଲା ଓଠ। ସେ ଆଖି ବୁଜିଦେଲା। ଦୁହେଁ ନୀରବ ନିଶ୍ଚଳ। ସେ କବି ନୁହେଁ,କବିତା। ମୁଁ କବି। ମନର ଭାବକୁ ରୂପଦେଉଥିଲି କବିତାରେ, ଗପରେ। ତା' କଥା ମନେ ପକାଇ କେତେବେଳେ ଗାଉଥିଲି-

"ଛୋଟ ଏଇ ନଈକୂଳେ
ଶିରୀଷ ଗଛର ମୂଳେ
ସ୍ମରେ ମୋ ଉଦ୍ଦାମ ପ୍ରୀତି
ଅପାସୋରା ସାଥୀ।'

ଆଉ କେତେବେଳେ ଗାଁ' ବିଲେ ଦିଅଁ ଦେଖା ପଦଯାତ୍ରା ଅନୁରାଗ ସ୍ମରି ଡାକୁଥିଲି-

'ଆସ ସାଥୀ ଗୁଜୁରାଟୀ ଶାଢ଼ୀ ପିନ୍ଧି ସାବରମତୀ ଶାନ୍ତି ଘେନି
ଅତିକ୍ରମି ଦୂର ବିଲ
ନିଛାଟିଆ ପାଟ
ଜାଗର ଜାଳିବା ଆମେ
ଜଳାଇ ବିରହ

ଜୀବନ ସୂର୍ଯ୍ୟାସ୍ତେ ହେରି ଜପ
ଗୋଧୂଳିମା
ଆକାଶ ପବନ ଘୋରା ଶୂନ୍ୟ ଇଲାକାରେ
ଇତୁମତୀ ମାଟି ପରେ ଫୁଟାଇବା
ସ୍ୱପ୍ନର ସୁମନ।' (ସ୍ମୃତି ବିସ୍ମୃତି)

(୧୬)

ବେଶ୍ ଦୂର ଆରେଡ଼ି, ଆଖଣ୍ଡଳମଣିଙ୍କ ପବିତ୍ର ପୀଠ। ଓଡ଼ିଶାର ଇତିହାସ ପୃଷ୍ଠାରେ ଏହି ଦେବତାଙ୍କ ପ୍ରସିଦ୍ଧି ଉଲ୍ଲେଖ କରାଯାଇନି। କିନ୍ତୁ ଆମ ଅଞ୍ଚଳ, ଭଦ୍ରକ, ଯାଜପୁର, ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାର ଲୋକଙ୍କ ନିକଟରେ ଏ ଏକ ଆକର୍ଷଣୀୟ ଶୈବପୀଠ, କପିଳାସ ଶିବ ଓ ପଞ୍ଚଲିଙ୍ଗେଶ୍ୱରଙ୍କ ପରି ବେଶ ଖ୍ୟାତ। ସମ୍ଭବତଃ ଉନବିଂଶ ଶତାବ୍ଦୀର ଶେଷଭାଗରେ ଆଖଣ୍ଡଳମଣିଙ୍କର ଆବିର୍ଭାବ ଘଟିଥିଲା। କିମ୍ବଦନ୍ତୀ କହେ,ଏକଦା ଜଣେ ହଳିଆ ଆରେଡ଼ି ଗ୍ରାମସ୍ଥ ଗୋଟିଏ ବିଲରେ ହଳ କରୁଥିଲା। ହଳ କରିବା ସମୟରେ ଲଙ୍ଗଳ ମୁନ ମାଟି ଭିତରର ଏକ ଶିଳା ଦେହରେ ବାଜି ରକ୍ତ ପ୍ରସବଣ ହେଲା। ହଳିଆଟି ଭୀତତ୍ରସ୍ତ ଓ ଚକିତ ହୋଇ ଗ୍ରାମବାସୀଙ୍କୁ ଏକଥା ଜଣାଇବାରୁ ସେମାନେ କନିକା ରଜାଙ୍କୁ ଏ ଅଦ୍ଭୁତ ଘଟଣା ଜଣାଇଲେ। ରଜା ଶିଳାଟିକୁ ବୈଦିକ ରୀତିରେ ପୂଜାର୍ଚ୍ଚନା କରି ସେଠାରେ ଏକ ମନ୍ଦିର ନିର୍ମାଣ କରି ପ୍ରତ୍ୟହ ପୂଜାର ବ୍ୟବସ୍ଥା କରିଦେଲେ। ପୀଡ଼ିତ ବିଶେଷତଃ ସର୍ପାଘାତ ଓ ମହାବ୍ୟାଧି (କୋଷ୍ଠରୋଗ) ଗ୍ରସ୍ତ ଲୋକେ ଏହି ଶିବଙ୍କୁ ଧ୍ୟାନ ତପସ୍ୟା କରି ଆରୋଗ୍ୟ ଲାଭ କଲେ। ଅପୁତ୍ରିକ ଏହାଙ୍କୁ ପୂଜା କରି ପୁତ୍ର ଲାଭ କଲେ। ପିତାମାତା ମାନେ ପୁତ୍ରର ମଂଗଳ ମନାସି ଆଖଣ୍ଡଳମଣିଙ୍କ ପୂଜା କଲେ। ଲୋକଙ୍କର ବିଶ୍ୱାସ ଓ ଭକ୍ତି ଫଳପ୍ରାପ୍ତି ଦ୍ୱାରା ଦୃଢ଼ୀଭୂତ ହେଲା। ସମୟ ଅତିବାହିତ ହେବା ସଙ୍ଗେ ସଙ୍ଗେ ଆଖଣ୍ଡଳମଣିଙ୍କ ଖ୍ୟାତି ପ୍ରସାରିତ ହେବାକୁ ଲାଗିଲା। ଆଜି ମୋ ଭଳି ଉଚ୍ଚଶିକ୍ଷିତ ମାନଙ୍କ ମନରେ ଆଖଣ୍ଡଳମଣିଙ୍କ ଠାରେ ଏତେ ବିଶ୍ୱାସ ଅଛି ଯେ କିଛି ବିପଦ ଆପଦ ପଡ଼ିଲେ, ସଙ୍ଗେ ସଙ୍ଗେ ତାଙ୍କର ଆଶିଷ ଭିକ୍ଷା କରି ପୂଜାର୍ପଣ କରିବାକୁ ମନାସିଥାନ୍ତି। ଦୂରରେ ଥିବା ମୋର ନାତିନାତୁଣୀଙ୍କ ଦେହ ଖରାପ କଥା ଶୁଣିଲେ ଘରେ ରଖି ପୂଜା କରୁଥିବା ଆଖଣ୍ଡଳମଣିଙ୍କ ପ୍ରତିମୂର୍ତ୍ତିକୁ ଜୁହାର ହୋଇ ବଡ଼ଭୋଗ ଦେବାକୁ କହି ତାଙ୍କର କରୁଣା ପ୍ରାର୍ଥନା କରିଥାଏ। ପାଠକେ ଅନୁମାନ କରନ୍ତୁ, ମୋର ବୌଦ୍ଧିକ ଜୀବନସ୍ତରରେ ଆଖଣ୍ଡଳମଣିଙ୍କ ଠାରେ ଯଦି ଏତେ ଭକ୍ତି ଓ ବିଶ୍ୱାସ, ପିଲାଟି ବେଳେ ସେ ଠାକୁରଙ୍କ ସଂପର୍କରେ କି ପ୍ରକାର ଧାରଣା ଥିବ। ଏହି ଧାରଣାର ବଶବର୍ତ୍ତୀ ହୋଇ ପରିବାର ଓ ସାହିର ଲୋକଙ୍କ ସହ ପ୍ରାୟ ପ୍ରତିବର୍ଷ ନିଶ୍ଚିତ ରୂପେ ଥରେ ଆଖଣ୍ଡଳମଣି ଦର୍ଶନରେ ଯାଉଥିଲୁଁ।

ଆମ ଗାଁଠାରୁ ପ୍ରାୟ ୭ ମାଇଲ ରାସ୍ତା ଗଲା ପରେ ସୁନ୍ଦରପୁର ଗାଁ ପରେ ଗୋଟିଏ ଛୋଟ ଗାଁପଢ଼େ, କୁଳଡ଼ିଅ। ଏଠାରେ ଗୋଟିଏ ପରିବାର ଥା'ନ୍ତି। ପରିବାରର ମୁଖ୍ୟ ଶ୍ରୀଯୁକ୍ତ ନାୟକ ଏକଦା କନିକା ରାଜାଙ୍କର ଜଣେ ଗୁମାସ୍ତା ଓ ଜମିଦାର ଥିଲେ। ତାଙ୍କର ସୁପୁତ୍ର ସଦାଶିବ ନାୟକ ମୋର ସମସାମୟିକ। ସ୍କୁଲ ହେଡ୍‌ମାଷ୍ଟରରୁ ପଦୋନ୍ନତି ପାଇ ସେ ଇନ୍‌ସପେକ୍ଟର ଅଫ୍ ସ୍କୁଲ ହୋଇଥିଲେ। ସୁନ୍ଦରପୁରଠାରୁ ଆରେଡ଼ି ରାସ୍ତାରେ ଗଲେ ଓଳଗ ଗାଁ ଆରମ୍ଭ ହେବ ବାମପାର୍ଶ୍ୱରେ, ଡ଼ାହାଣ ପାର୍ଶ୍ୱରେ ଗାଁ ନିକଟବର୍ତ୍ତୀ ଏକ ସୁନ୍ଦର ପୋଖରୀ ଓ ପୋଖରୀ କୂଳରେ ଗୋଟିଏ ମଠ ଥାଏ। ଯାତ୍ରୀମାନେ ଆରେଡ଼ି ଗଲା ବେଳେ ଓ ଫେରିବା ବେଳେ ଏହି ପୋଖରୀର ଶୀତଳ ପରିଷ୍କାର ଜଳରେ ମୁହଁ ହାତ ଧୋଇ, ପାଖ କୂଅ ପାଣି ପିଇ। କ୍ଲାନ୍ତି ଦୂର କରନ୍ତି। ପୋଖରୀ କୂଳରେ ଥିବା ଆମ୍ବ ପିଜୁଳି ଗଛରୁ ପିଲାଏ ଫଳ ଖାଆନ୍ତି। କିଛି ବର୍ଷ ହେଲା ଏହି ପୋଖରୀ ତଟରେ ମାଇନର ଓ ହାଇସ୍କୁଲଟିଏ ସ୍ଥାପନ କରାଯାଇଛି। ଏବେ ବି ସେହି ପୋଖରୀଟି ଅଛି ପଥକ୍ଲାନ୍ତ ଯାତ୍ରୀମାନଙ୍କୁ ବିଶ୍ରାମ ଦେବା ପାଇଁ ଏହି ଗାଁର ପୂର୍ବ ଏକ ଗାଁ ଦୋହରାପାଟଣା। ଏଠାରେ ଅନେକ ଗଉଡ଼ ଜାତିର ଲୋକ ବାସ କରନ୍ତି। ଦହି, ଛେନା ଓ କ୍ଷୀର ପ୍ରଚୁର ମିଳେ। ଏହି ଗାଁ ଠାରୁ ଆରେଡ଼ି ପର୍ଯ୍ୟନ୍ତ ରାସ୍ତାରେ ସ୍ଥାନେ ସ୍ଥାନେ ଗଉଡ଼ ଗଉଡ଼ୁଣୀ ଭାର ପସରା ମେଲି ବସିଥାନ୍ତି। ଆଖଣ୍ଡଳମଣିଙ୍କର ପ୍ରସିଦ୍ଧ ଭୋଗ ହେଉଛି ଘର୍ଷଣ। ଛେନା, ଗୁଡ଼, ଦହି, ଦୁଧ, ନଡ଼ିଆ, କଦଳୀ ଓ ମହୁର ଘର୍ଷଣ ଅତ୍ୟନ୍ତ ସ୍ୱାଦୁସଂପନ୍ନ ଓ କ୍ଷୁଧା ତୃଷା ନିବାରକ। ଯାତ୍ରୀମାନେ ରାସ୍ତାରୁ ଏହି ଦ୍ରବ୍ୟ ସବୁ କିଣି ନେଇଥା'ନ୍ତି। ନୋହିଲେ ଆରେଡ଼ି ଗାଁ ପାଖରେ ସାମାନ୍ୟ ଅଧିକ ଦର ଦେଇ କିଣନ୍ତି।

ଓଳଗ ଗ୍ରାମଠାରୁ ଆରେଡ଼ି ପ୍ରାୟ ଦୁଇ ମାଇଲ ରାସ୍ତା ଏକ ବିରାଟ ପାଟ, ଗାଁ ଗଣ୍ଡା ଘରଦ୍ୱାର ଗଛବୃକ୍ଷ ମଝିରେ ନଥାଏ। ବର୍ଷାଋତୁରେ ଅଞ୍ଚଳଟି ଜଳାର୍ଣ୍ଣବ ହୋଇଯାଏ। କାର୍ତ୍ତିକ-ମାର୍ଗଶିର ଠାରୁ ପାଟ ଭିତରେ ରାସ୍ତାରେ ଚାଲି ହୁଏ। ଶାରଦ ଚାଷ ପ୍ରାୟ ହୁଏନି। ଚାଲୁଅ ଚାଷ କରାଯାଏ। ଚାଷ ଜମି ହିଡ଼ରେ କୋଇଲି କଣ୍ଟା ଭର୍ତ୍ତି ଥାଏ। ପିଲାବେଳେ ଆମେ ଖୁବ୍ ସାବଧାନରେ ଏ ରାସ୍ତାରେ ଯାଉଥିଲୁଁ। ଏହି ବିସ୍ତୀର୍ଣ୍ଣ ଜନଶୂନ୍ୟ ଅଞ୍ଚଳକୁ ଘଇତାମାରିପାଟ କୁହାଯାଏ। ଲୋକମୁଖରୁ ଜଣାଯାଏ ଏକଦା ଜଣେ ହଳିଆ କାଳି ଅଂଧାରରୁ ହଳ କରିଯାଇଥିଲା ଏହି ଭେଡ଼ାକୁ। ସ୍ତ୍ରୀ ତାର ଭାତ ତୋରାଣି ବା ପିଠାପାଣି ନେଇଯିବାରେ ବିଳମ୍ବ କଲା। ତୃଷାରେ ହଳିଆଟି ବ୍ୟତିବ୍ୟସ୍ତ, ଦୂରରୁ ସ୍ତ୍ରୀ ପାଣି ନେଇ ଆସୁଥିବା ଦେଖି ପାଞ୍ଚଣ ହଲେଇ ସେ ସଂକେତ ଦେଲା। ବିଚରୀ ସ୍ତ୍ରୀ ଲୋକଟି ଭାବିଲା ଡେରି ହୋଇଥିବାରୁ ତାର ସ୍ୱାମୀ ତାକୁ ପାଞ୍ଚଣରେ ପିଟିବାକୁ ଧମକ ଦେଉଛି। ତେଣୁ ସେ ଭୟରେ ସ୍ୱାମୀ ପାଖକୁ ନ ଯାଇ ଘରକୁ ଫେରି ଆସିଲା। ଏଣେ ସ୍ୱାମୀଟି ଶେଷରେ ବ୍ୟାକୁଳ ହୋଇ ତା ପଛେ ପଛେ ଧାଇଁଛି। ସ୍ତ୍ରୀଟି ଧାଇଁ ଧାଇଁ ଆସି କବାଟ କିଳି ଘରେ ଡର ଭୟରେ। ସ୍ୱାମୀ ଫେରିନି। ମଧାହ୍ନ ଗଡ଼ି ଦ୍ୱିପହର ହେଲା, ମନରେ ନାନା ଦୁଶ୍ଚିନ୍ତା। ଏହି ସମୟରେ ଗାଁର କେତେ ଜଣ ଲୋକ ସ୍ୱାମୀର ମୃତ ଦେହକୁ ଧରି ଆସି ପହଞ୍ଚିଛନ୍ତି, ତା ଘର ସାମ୍ନାରେ। ହତବାକ୍ ସ୍ତ୍ରୀଟି ଜୀବନ

ସାରା ହେଲା ସନ୍ତାପିତ ଦୁର୍ନାମ ରହିଗଲା। ପାଟିର, ଅଶ୍ଳୀଳ ଚିରବିଦାରକ -ଘଣ୍ଟାମାରିପାଟା। କବି ରମାକାନ୍ତଙ୍କ ଭାଷାରେ "ଅଣଭଦିଆ ବେଳେ ରହିଲେ ବି

ଆଖି ପାଏ ନା ତା ବିଶାଳ ରେଳହଦିକି
ଚିତ୍ ହୋଇ ଶୋଇଥାଏ ଲମ୍ବ ଲମ୍ବ ଗୋଡ଼କୁ
ବିସ୍ତାରି ଆଦିଗନ୍ତ ଅନନ୍ତ ବିସ୍ମୃତି
ଶୂନ୍ ଶାନ୍ ଖାଁ, ଖାଁ, ଲାଗେ ସବୁ ଖାଲି
ଭୌତିକ ଆସର, ନିଝୁମ୍ ନଛାଟିଆ ଭେଦ୍ବା।

ମାଘ ମାସର ଶିବରାତ୍ରି ଏଠାକାର ଏକ ବଡ଼ ଉତ୍ସବ। ଶିବ ମନ୍ଦିର ଚୂଡ଼ାରେ ମହାଦୀପ ପ୍ରଜ୍ୱଳନ ଦେଖିବା ପାଇଁ ଦୂରଦୂରାନ୍ତରୁ ସହସ୍ର ସହସ୍ର ଲୋକ ଆସନ୍ତି। ମାଘ ମାସଠାରୁ ବୈଶାଖ ଶେଷ ପର୍ଯ୍ୟନ୍ତ ବହୁ ଯାତ୍ରୀଙ୍କର ସମାଗମ ହୋଇଥାଏ ଏହି କ୍ଷେତ୍ରରେ ଏଠାକାର ପୂଜକମାନେ ମନ୍ଦିର ଦର୍ଶନାର୍ଥୀଯାତ୍ରୀଙ୍କ ଠାରୁ ବେଶ୍ ଦକ୍ଷିଣା ଆଦାୟ କରି ସ୍ୱଚ୍ଛଳ ଅବସ୍ଥାରେ ଅଛନ୍ତି। ତଳମାଳ ଅଞ୍ଚଳ। ସ୍ୱଳ୍ପ ଉଚ୍ଚଭୂମି ଉପରେ ଲଗାଲଗି ଚାଳଘର। ଘରପୋଡ଼ି ଘଟିଲେ ବସ୍ତିର କ୍ଷତି ହୁଏ। କେତେକଙ୍କର ପକ୍କାଘର ବି ବହୁକାଳୁ ଅଛି। ଏହି ଗାଁର ଜଣେ କିଶୋର ଭଦ୍ରକ ଉଚ୍ଚ ବିଦ୍ୟାଳୟର ଛାତ୍ର ଥିଲେ। ସମ୍ଭବତଃ ସେ ଏହି ଗାଁର ପ୍ରଥମ ମେଟ୍ରିକ୍ ପଢୁଆ ପିଲା। ସ୍ୱାଧୀନତା ପ୍ରାପ୍ତିରେ ଶିକ୍ଷାର ଦ୍ରୁତ ପ୍ରସାର ଘଟିଛି। ପ୍ରାୟ ୩୦ବର୍ଷ ହେଲା ଏଠାରେ ଏକ ହାଇସ୍କୁଲ ପ୍ରତିଷ୍ଠା ହୋଇଛି। ମୋର ଛାତ୍ରଟିଏ ଏ ସ୍କୁଲରେ ପ୍ରଥମ ହେଡ୍‌ମାଷ୍ଟର ଥିଲେ। ମୁଁ ହାଇସ୍କୁଲରେ ପଢୁଥିଲା ବେଳେ ସ୍ୱେଚ୍ଛାସେବୀ ଭାବେ ଭଦ୍ରକରୁ ଆରେଡ଼ି ଆସିଥିଲି ଜାଗରଯାତ୍ରାରେ। ଏହି ବୋଧହୁଏ ପ୍ରଥମ ଓ ଶେଷ ଜାଗରଯାତ୍ରା ଦେଖା ଆଖଣ୍ଡଳମଣି ଧାମରେ। ରାତ୍ରି ଉଜାଗର ବ୍ୟଥା ଆନନ୍ଦ ରାତିସାରା। ଏଠି ସେଠି ବସି ବୁଲି ଏଣୁ ତେଣୁ ପାଚି ସୁଆଦିଆ ଜିନିଷ ଖାଇ, ଗୀତ, ପାଲା ଶୁଣି, ନାଚ୍ ତାମସା ଦେଖି ସମୟ କଟାଇବାର ଅଭାବନୀୟ ସୁଯୋଗ ଆଉ କ'ଣ ଏ ଜୀବନରେ ମିଳିବ। ମିଳିଲେ ବି କାହିଁ ମନୋବଳ ଓ ଶାରୀରିକ ଶକ୍ତି ସେ ସୁଯୋଗ ଆଦରି ନେବାକୁ ?

"The heart bee has flown
From flower to flower,
Don't ask me where " (K.S. Narashima Swamy)

"ହୃଦୟର ମହୁ ମାଛିଟି ଫୁଲରୁ ଫୁଲକୁ ଉଡ଼ିଗଲାଣି। କେଉଁଠିକି ଯାଇଛି ପଚାରନି" ଅଧୁରା ମନହୃଦୟ ଘୂରି ବୁଲୁଛି କେଉଁ ଏକ ଅଦୃଶ୍ୟ ଅପ୍ରାପ୍ୟବସ୍ତୁର ସଂଧାନରେ। କାହିଁ ଆସକ୍ତି ପାର୍ଥିବ ବସ୍ତୁରେ ?

(୧୭)

କୋଠାର ଠାରୁ ପ୍ରାୟ ଦେଢ଼ମାଇଲ ଭଦ୍ରକ ଆଡ଼କୁ ଗଲେ, ରେବ ନଦୀ ପରେ ପରେ ବେଶ୍ ଜଣାଶୁଣା ଗାଁଟିଏ ପଡ଼େ। ଗାଁଟିର ନାମ ଅସୁରାଳି। ଏହି ଗାଁରେ ଗୋଟିଏ ସଂଭ୍ରାନ୍ତ ପରିବାର, ପରିବାରର ତିନି ଜଣ ଲୋକ ଆମ ଅଞ୍ଚଳରେ ସୁପରିଚିତ ଏବଂ ଆଦୃତ। ଜଣେ ବାବାଜୀ ଚରଣ ନାୟକ। ଅନ୍ୟ ଜଣେ ତାଙ୍କ ବଡ଼ଭାଇ ବୈରାଗୀ ଚରଣ ନାୟକ। ଓ ସାନ ଭାଇ ବଳରାମ ନାୟକ ବାବାଜୀବାବୁ ଜଣେ ନିଷ୍ଠାପର ସମାଜସେବୀ ଏବଂ କଂଗ୍ରେସ କର୍ମୀ। ବୈରାଗୀବାବୁ ଜଣେ ତାନ୍ତ୍ରିକ କାଳି ସାଧକ, ବଳରାମ ସମାଜବାଦୀ ଦଳର ସମର୍ଥକ। ବାବାଜୀବାବୁ ସ୍ୱାଧୀନତା ସଂଗାମୀ ମୂରଲୀଧର ଜେନାଙ୍କ ବିଶ୍ୱସ୍ତ ବଂଧୁ, ବଳରାମ ବାବୁ ସମାଜବାଦୀ ନେତା ସ୍ୱାଧୀନତା ସଂଗାମୀ ବୈଷ୍ଣବ ନାୟକଙ୍କ ବଂଧୁ ଓ ସମର୍ଥକ। ବୈରାଗୀବାବୁ ତନ୍ତ୍ର ମାଧମରେ ବହୁଲୋକଙ୍କର ହିତସାଧନ କରିଥିଲେ। ସାଧକ ଭାବେ ତାଙ୍କର ସୁନାମ ବାଲେଶ୍ୱର, କେନ୍ଦୁଝର ଓ କଟକ ଜିଲ୍ଲାର କେତେକ ଅଞ୍ଚଳରେ ପ୍ରସାରିତ। ତାଙ୍କ ଦ୍ୱାରା ଉପକୃତ ହୋଇଥିବା ବହୁ ଭକ୍ତଙ୍କ ସାହାଯ୍ୟରେ ଅସୁରାଳିଠାରେ ଏକ କାଳିପୀଠ ବା ଆଶ୍ରମ ଗଢ଼ାଯାଇଛି। ବୈରାଗୀବାବୁ ଇହଧାମ ଛାଡ଼ିଗଲେଣି। ତଥାପି ଏବେ ବହୁ ଲୋକ ଅସୁରାଳି ଆଶ୍ରମକୁ କାଳିଙ୍କ ଆଶୀର୍ବାଦ ଲଭିବାକୁ ଆସନ୍ତି। ବାବାଜିବାବୁ ବେଶି ସମୟ ରହୁଥିଲେ ଭଦ୍ରକରେ। ସେଠାରେ ତାଙ୍କର ଗୋଟିଏ ଛାପାଖାନା ଓ ବହି ଦୋକାନ ଥାଏ। ଜଣେ ସ୍ନେହୀ ଉଦାର ପରୋପକାରୀ ଲୋକ ଭାବେ ସେ ଭଦ୍ରକ ଧାମନଗର ଅଞ୍ଚଳରେ ବେଶ୍ ସୁପରିଚିତ ଏବଂ ସମ୍ମାନିତ ବ୍ୟକ୍ତି ଥିଲେ। ଷାଠିଏ ଦଶକର ପ୍ରଥମ ଭାଗରେ ସେ ଧାମନଗର ପଞ୍ଚାୟତ ସମିତିର ଅଧକ୍ଷ (Charirman) ଥିଲେ। ଗୋଟିଏ ଘଟଣାରେ ତାଙ୍କର ସାହାଯ୍ୟ ମୁଁ ଜୀବନରେ ଭୁଲିପାରିବି ନାହିଁ। ୧୯୬୨ ମସିହା ଜୁନ୍ ମାସରେ ମୋର ବିବାହ ଉତ୍ସବ ଅନୁଷ୍ଠିତ ହେଲା, ବାଉଦପୁର ରେଳଷ୍ଟେସନ୍ ମାଷ୍ଟରଙ୍କ ଗୃହରେ। ବିବାହ ପରେ ବରକନ୍ୟା ଓ ବରଯାତ୍ରୀ ଫେରିବା ପାଇଁ ଠିକ୍ ହୋଇଥିବା ବାସ୍‌ଟି କେଉଁ ଏକ କାରଣରୁ ସଂଧାରେ ଭଦ୍ରକରୁ ଧାମନଗର ଆସିବାକୁ ନାରାଜ। ସେତେବେଳେ ବର୍ତ୍ତମାନର ଆରେଡ଼ି ରାସ୍ତାରେ ବାସ୍ ଚଳୁ ନଥାଏ ସବୁ ଋତୁରେ। ସେଦିନ ବର୍ଷା ହୋଇଯାଇଥାଏ। ଆମେ ଧାମନଗର ଆସି ସେଠାରୁ ଚାଲି ଚାଲି ଓ ସବାରିରେ ଗାଁକୁ (ସାହସପୁର) ଆସିବୁଁ। ମୁଁ ତ ବର କ'ଣ କରିବି ? ବାସ୍‌ର ମାଲିକ ବାବାଜିବାବୁଙ୍କ କଥା କେବଳ ମାନିବ। ତେଣୁ ସେହି ବର ବେଶରେ ବାବାଜିବାବୁଙ୍କୁ ଦେଖାକରି ଅନୁରୋଧ କଲି। ସେ ନିଜେ ନିଜର ବସାଘରୁ ଆସି ବସ୍‌ମାଲିକଙ୍କୁ କହିବାରୁ ଆମେ ଧାମନଗର ଆସି ସେଠାରୁ ସାହସପୁର ଆସିଲୁଁ। ସ୍ୱର୍ଗତ ବାବାଜିବାବୁଙ୍କ ଛାତ୍ର ଓ ଶିକ୍ଷିତ ଯୁବକଙ୍କ ପ୍ରତି ସ୍ନେହ ଥିଲା ଅକୃତ୍ରିମ। ତାଙ୍କର ଉଦାର ଶ୍ରଦ୍ଧାଶୀଳ ହସ ହସ ମୁହଁ ଏବେ ବି ମୋ ସ୍ମୃତିରେ ଅମ୍ଳାନ ଅଛି। ବୈରାଗୀବାବୁଙ୍କ ଗୋଟିଏ ପୁଅ କଟକ ଆକାଶବାଣୀରେ ନିଯୁକ୍ତ। ସେ ସୁନ୍ଦର ନାଟକ - ଅଭିନୟ କରନ୍ତି। ଅସୁରାଳି

ଗାଁଟି ମୋର ମାଇନର ପଢ଼ିବା ବେଳେ ଏକ ସାଧାରଣ ଗାଁ ଥିଲା ମାତ୍ର କାଳକ୍ରମେ ଆରେଢ଼ି ରାସ୍ତା ପକ୍କା ହେବା ସଙ୍ଗେ ସଙ୍ଗେ ସେଠାରେ ଗୋଟିଏ ଛୋଟ ବଜାର ଗଢ଼ି ଉଠିଲା। ପଞ୍ଚାୟତ ଅଫିସ୍ ଖୋଲା ହେଲା। ପଞ୍ଚାୟତ ସହିତ ସଂପୃକ୍ତ ଗ୍ରାମସେବକ ରହିଲେ। ଗୋଟିଏ ହାଇସ୍କୁଲ ସ୍ଥାପିତ ହେଲା।ଏହି କେତେବର୍ଷ ହେଲା ସେଠାରେ ଗୋଟିଏ ଯୁକ୍ତ ୨ ବାଳିକା ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି। ଷାଠିଏ ଦଶକରେ ବିଜୁବାବୁଙ୍କ ପଞ୍ଚାୟତ ଶିଳ୍ପ ଯୋଜନାରେ ସେଠାରେ ଗୋଟିଏ ଚିନିକାରଖାନା ସ୍ଥାପିତ ହୋଇଥିଲା। ପରବର୍ତ୍ତୀ କାଳରେ ଗୋଟିଏ Card Board କାରଖାନା ସ୍ଥାପିତ ହେଲା। ମାତ୍ର ଉଭୟ ଶିଳ୍ପ ପ୍ରତିଷ୍ଠାନ ପରିକଳ୍ପନାଗତ ତ୍ରୁଟି ଓ ଅନ୍ୟାନ୍ୟ କାରଣରୁ ବନ୍ଦ ହୋଇଯାଇଛି। ଅସୁରାଳିଠାରେ ଚିନିକାରଖାନା ସ୍ଥାପନର ପ୍ରଧାନ କାରଣ ଥିଲା, ଏ ଅଞ୍ଚଳରେ ପ୍ରଚୁର ଆଖୁଚାଷ ହୁଏ। ସମ୍ଭବତଃ ଯେତେ ଜମି ଚାଷ କରାଯାଉଥିଲା ତାହା କାରଖାନାଟିକୁ ବର୍ଷର ୬ ମାସ ଉତ୍ପାଦନରେ ଲିପ୍ତ ରଖିବାକୁ ଯଥେଷ୍ଟ ନଥିଲା। ତେଣୁ ଚିନି କାରଖାନା ସ୍ଥାପନ ସଙ୍ଗେ ସଙ୍ଗେ ଅଧିକ ଜମିରେ ଆଖୁଚାଷ ହେବା ବ୍ୟବସ୍ଥା କରିବା ଉଚିତ ଥିଲା। କୃଷିଭିତ୍ତିକ ଯେକୌଣସି ଶିଳ୍ପ କୃଷିର ଉନ୍ନତି ଉପରେ ନିର୍ଭରଶୀଳ। ଆମର ଶିଳ୍ପାୟନ ଯୋଜନା- କୃଷି ଶିଳ୍ପ ସଂପର୍କଟିକୁ ଠିକ୍ ରୂପେ ବା ସବିଶେଷ ବିଚାର କରାଯାଇ ନଥିବାରୁ ଶିଳ୍ପ ବିକାଶ କି କୃଷି ବିକାଶ ଆଶାନୁରୂପ ହୋଇନି। ଏଠାରେ ଯେତେ ଆଖୁ ଚାଷ ହେଉଥିଲା ତାହା ହୁଏତ ଅଞ୍ଚଳଗୁଡ଼ିକର ଚାହିଦା ମେଣ୍ଟାଇବାକୁ ଯଥେଷ୍ଟ ଥିଲା। ରେବ ନଦୀର କୂଳେ କୂଳେ ଆଖୁଚାଷ ହୁଏ। ଚାଲି ଚାଲି ଗାଁରୁ ଭଦ୍ରକ ପ୍ରାୟ ୨୦ ମାଇଲ୍ ରାସ୍ତା ଗଲାବେଳେ ଶୋଷ ଲାଗିଲେ ଆଖୁ ଅମଳ ରତୁରେ ଆଖୁ ଚୋବାଇ ଖାଉଁ ନଚେତ୍ ଆଖୁରସ ବା ଦୁରୁଅ ପିଉଁ। ଚାଷୀଟି ତା କ୍ଷେତରେ ଆଖୁ ବା ରସ ଦିଏ, ପଇସା ନିଏନାହିଁ। ଆଖୁପେଡ଼ା ଦେଖିବାରେ ଆଖୁରସ ଏବଂ ବଡ଼ ଚୁଲାରେ ମରାହୋଇ ଗୁଡ଼ ତିଆରି ହେବା ଦେଖିବାରେ ଆମେ ଆନନ୍ଦ ପାଉଁ।

ଗ୍ରାମାଞ୍ଚଳରେ ପୂର୍ବେ ଚିନିର ବ୍ୟବହାର ଖୁବ୍ କମ୍ ଥିଲା। ଗାଁଲୋକେ ମୁଢ଼ିଚୁଡ଼ା ବା ଚକୁଳି ପିଠା ଗୁଡ଼ ଲଗେଇ ଖାଉଥିଲେ, ଗୁଡ଼ଟି ହାତରେ ତିଆରି ହେଉଥିବାରୁ ଏବଂ ସେଥିରେ ଅନ୍ୟ କିଛି ରାସାୟନ ଦ୍ରବ୍ୟ। ମିଶୁ ନ ଥିବାରୁ ଅଧିକ ସ୍ୱାସ୍ଥ୍ୟପ୍ରଦ ଓ ପବିତ୍ର। ଠାକୁରଙ୍କ ନିକଟରେ ଗୁଡ଼ କଦଳୀ ନଡ଼ିଆ ଭୋଗ ହୁଏ। ଚିନି ବ୍ୟବହାର ନିଷିଦ୍ଧ। ଏବେ ବି ହିନ୍ଦୁ ଦେବତାଙ୍କ ପୂଜାରେ ଚିନି ବ୍ୟବହାର ହୁଏନି, ଗୁଡ଼ ବ୍ୟବହାର ହୁଏ। ଅଟାଗୁଡ଼ରେ ତିଆରି ସିରିଣି, ଦହି ଛେନା କଦଳୀରେ ହୋଇଥିବା ଘର୍ଷଣ ବା ପଣାରେ ମିଶାଇ ଖାଇବା କେତେ ଯେ ତୃପ୍ତିକର ଆଜି ମନେପଡ଼ିଲେ ଜିଭରୁ ଲାଳ ବହିଆସେ। ତ୍ରିନାଥ ବା ପଞ୍ଚାନନ ମେଳାରେ ଘର୍ଷଣ ସିରିଣି ଭୋଗ ଟିକିଏ ପାଇବା ପାଇଁ ପିଲାଦିନେ କେତେ ବ୍ୟଗ୍ର ହେଉଥିଲୁଁ। ଆଜିକାଲି ସେପରି ସିରିଣି ଭୋଗ ହେଉନାହିଁ। ଗାଁ ସ୍କୁଲରୁ ଫେରି ଅଧଲାକର ଗୁଡ଼ କିଣି ତେନ୍ତୁଳି, ଆମ୍ବୁଲରେ ଗୁଡ଼ ଦେଇ ପଖାଳ ଖାଇ ଯାଉଥିଲୁଁ ବେଶ୍ ଖୁସିରେ। ଅତୀତର ରାସାୟନିକ ସାର ହୀନ ଉତ୍ପାଦିତ ସବୁ ଦ୍ରବ୍ୟ ପନିପରିବା ଫଳ କେଡ଼େ ଯେ ସ୍ୱାଦୁଯୁକ୍ତ ଥିଲା ତା ଭାବି ହେଉନାହିଁ।

ଅସୁରାଳି ଅତିକ୍ରମ କରି କିଛି ଦୂର ଗଲେ କପାଳି ନଈ, ସାଳନ୍ଦୀର ଶାଖା, ଅଣଓସାରସିଆ ମାତ୍ର ଗଭୀର, ବର୍ଷର ଅଧିକାଂଶ ସମୟ ଡ଼ଙ୍ଗାରେ ପାର ହୋଇଯିବାକୁ ପଡ଼େ। ସେହି ନଈ ପାରି ହେଲେ ଅଳ୍ପଦୂରରେ ଡାହାଣକୁ ଗାଁଟିଏ ପଡ଼େ। ପୁରୁଣା ନାମ ତାର ଲୁଣିଆ, ଏବେ ସହିଦନଗର ନାମରେ ପରିଚିତ। ୧୯୪୨ ଅଗଷ୍ଟ ବିପ୍ଳବ ସମୟରେ ଲୁଣିଆରେ ଗୁଳି ଚାଳନା ହୋଇଥିଲା, ସଂଗ୍ରାମୀଙ୍କ ଉପରେ। କେତେଜଣ ସହୀଦ ହୋଇଥିଲେ। ଅତୀତର ସେହି ବୀରତ୍ୱ ବ୍ୟଞ୍ଜକ ଘଟଣା ସ୍ମରଣ କରି ସହିଦ୍‌ମାନଙ୍କ ଅମର ଆତ୍ମାକୁ ଶ୍ରଦ୍ଧାଞ୍ଜଳି ଦେବାକୁ ପ୍ରତ୍ୟେକ ବର୍ଷ ଅଗଷ୍ଟ ମାସ ଏଠାରେ ଏକ ସଭା ଅନୁଷ୍ଠିତ ହୁଏ।

ଭଦ୍ରକ ରାସ୍ତାରେ କପାଳି ନଈ ପାର ହୋଇ କିଛି ଦୂର ଗଲେ, ସଡ଼କ କଡ଼ରେ ଗୋଟିଏ ଗାଁ ପଡ଼େ। ଯେଉଁଠାରେ ବିଖ୍ୟାତ ନାଟ୍ୟକାର ରଘୁନାଥ ପଣ୍ଡା ତାଙ୍କର ଯାତ୍ରାଦଳ ଗଢ଼ିଥିଲେ। ବଂଗଳା ନାଟକର ଛାୟାରେ ସେ ଓଡ଼ିଆରେ ବିଭିନ୍ନ ନାଟକ ରଚନା କରି ଏବଂ ସେଗୁଡ଼ିକୁ ଅଭିନୀତ କରି ଓଡ଼ିଶାର ଯାତ୍ରାପ୍ରେମୀଙ୍କ ମଧ୍ୟରେ ବେଶ୍ ସୁନାମ ଅର୍ଜନ କରିଥିଲେ। ସ୍ୱର୍ଗତ ରଘୁନାଥ ପଣ୍ଡା ନିଜେ ଥିଲେ ଜଣେ ଦକ୍ଷ ଅଭିନେତା ଏବଂ ନିର୍ଦ୍ଦେଶକ। ସ୍କୁଲମାନଙ୍କରେ ବାର୍ଷିକ ନାଟକ ପିଲାମାନେ କରନ୍ତି। ରଘୁନାଥ ପଣ୍ଡା ନିର୍ଦ୍ଦେଶନା ଦିଅନ୍ତି। ମୁଁ ପଢୁଥିଲାବେଳେ କୋଠାର ମାଇନର ସ୍କୁଲର ଏକ ନାଟକ ଓ ଭଦ୍ରକ ହାଇସ୍କୁଲର କେତୋଟି ନାଟକର ସେ ନିର୍ଦ୍ଦେଶନା ଦେଇଥିଲେ। ଆମ ଗାଁରେ ଗୋଟିଏ ବର୍ଷ ରଜ ଉତ୍ସବରେ ନାଟକ ଅଭିନୀତ ହୋଇଥିଲା, ଜୟଦେବ ନାଟକ, ସେଥିଲେ ନିର୍ଦ୍ଦେଶକ, ମୁଁ ଶ୍ରୀକୃଷ୍ଣ ଭୂମିକାରେ ଅଭିନୟ କରୁଥିଲି। ତାଙ୍କ ରଚିତ ଗୀତ ବେଶ୍ ଲୋକପ୍ରିୟ ଥିଲା ଗାଁମାନଙ୍କରେ। ତାଙ୍କର ଏକ ପ୍ରତିମୂର୍ତ୍ତି ସ୍ଥାପିତ ହୋଇଛି ଅନ୍ନପାଳ ପୂର୍ବସ୍ଥ ବଜାରରେ। ଓଡ଼ିଶାର ଗ୍ରାମ୍ୟଜୀବନର ସାଂସ୍କୃତିକ ବିକାଶରେ ତାଙ୍କର ଅବଦାନ ଚିରସ୍ମରଣୀୟ। ତାଙ୍କର ଗୋଟିଏ ବାକ୍ୟ ଏବେ ବି ମୋର ମନେ ଅଛି। ତାଙ୍କ ମୁଣ୍ଡରେ ଧଳା ବାଳ କିଏ ଜଣେ ଦେଖାଇ ଦେବାରୁ ସେ କହିଥିଲେ "ଏତ ବୟସର ଦାବି"। ଏହି ସାମାନ୍ୟ ବାକ୍ୟରୁ ତାଙ୍କର ନାଟକୀୟ ସ୍ୱଭାବ ସ୍ପଷ୍ଟ ହୁଏ।

ଭଦ୍ରକରୁ ପୁରୁଣାବଜାର, ଗୁଳି ଦରଢ଼ା ଦେଇ କୋଠାର ଆସିଲେ ଅଧାବାଟରେ ପଡ଼େ ଅନ୍ନପାଳ। ଏହି ଗାଁଟି ମଧ୍ୟସ୍ଥଳରେ ହୋଇଥିବାରୁ ପଥଚଲା ଲୋକଙ୍କର ବିଶ୍ରାମ ଘାଟି ହୋଇଥାଏ। ଗୋଟିଏ ହାଟ ଏଠାରେ ବସେ ଏବଂ କେତୋଟି ସ୍ଥାୟୀ ଦୋକାନ ଥାଏ। ଭଦ୍ରକକୁ ଗଲାବେଳେ କିମ୍ବା ଫେରିଲାବେଳେ ଛାତ୍ରାବସ୍ଥାରେ ମୁଁ ଏଠାରେ ଜଳଖିଆ ଖାଇ ଭୋକ ମେଣ୍ଟାଉଥିଲି। ଆମ ଗାଁର ଜଣେ ସଂଭ୍ରାନ୍ତ ବ୍ରାହ୍ମଣ ପରିବାରର ଭଣଜାଙ୍କ ଘର ଏଠାରେ। ସେ କଲେଜରେ ପଢୁଥିଲେ ପଞ୍ଚାଶ ଦଶକରେ। ଇଂରାଜୀରେ ଲେଖା କଲେଜ ପାଠ୍ୟ ଇତିହାସ ବହି ମୋତେ ଦେଇଥିଲେ। ତାହା ପଢ଼ି ମୁଁ ଜ୍ଞାନ ଅର୍ଜନ କରିଥିଲି ସତ, ମାତ୍ର ମେଟ୍ରିକ୍ ପରୀକ୍ଷାରେ ଏ ବହିର ପାଠ ଲେଖି କମ୍ ନମ୍ବର ପାଇଥିଲି। ସମ୍ଭବତଃ ସ୍କୁଲ ପରୀକ୍ଷକ ଶିକ୍ଷକ ଏହାର ପାଠ ଅଜଣାଥିବାରୁ ମୋତେ କମ୍ ନମ୍ବର ଦେଇଥିଲେ। ଅନ୍ନପାଳ

ଏବେ ଏକ ଜନଗହଳି ଛୋଟ ସହର ହୋଇଗଲାଣି। ଭଦ୍ରକ-ଆରେଡ଼ି ବସ୍ ଏଠାରେ କିଛି ସମୟ ରହେ ଯାତ୍ରୀଙ୍କ ଯିବା ଆସିବା ସୁବିଧା ଲାଗି। ଅନ୍ନପାଳରେ ଗୋଟିଏ କଲେଜ ମଧ ପ୍ରତିଷ୍ଠା ହୋଇଛି। ପୂର୍ବର କେନ୍ଦ୍ରସ୍ଥଳୀ ବିଶ୍ରାମର ଗାଁଗୁଡ଼ିକ ସହରୀକରଣ ପ୍ରକ୍ରିୟା ଓ ପରିବହନ ବ୍ୟବସ୍ଥାର ଉନ୍ନତି ଯୋଗୁଁ ଛୋଟ ଛୋଟ ଗ୍ରାମ୍ୟ ସହର ହୋଇଯାଇଛି । ସହର ଓ ଗ୍ରାମ୍ୟ ଜୀବନ ମଧ୍ୟରେ ପ୍ରଭେଦ ସଂକୁଚିତ ହୋଇଗଲାଣି।

ମନେପଡ଼େ ମୋର ଉପର ଶ୍ରେଣୀରେ ପଢୁଥିବା ସୁନ୍ଦର ଚେହେରାର ପିଲାଟି କଥା। ନାମ ତାଙ୍କର କାଶୀନାଥ। ଅନ୍ନପାଳରେ ତାଙ୍କର ଲୁଗାଦୋକାନ। କାଶୀନାଥବାବୁ ମାଇନର ପରେ ମେଟ୍ରିକ୍ ଅଧା ପଢ଼ି ବାପାଙ୍କ ବ୍ୟବସାୟର ଦାୟିତ୍ୱ ନେଇ ତାର ବୃଦ୍ଧି ସାଧନ କରିଥିଲେ। ପ୍ରଚୁର ଧନ ଉପାର୍ଜନ କରି ନିଜର ସନ୍ତାନମାନଙ୍କୁ ଉଚଶିକ୍ଷା ଦେଇଛନ୍ତି। ସେ ମୋର ଜଣେ ଅନ୍ତରଂଗ ବାନ୍ଧବୀଙ୍କ ବଡ଼ ଭଉଣୀ ଜୋଇଁ। ଆମ ଗାଁ ନିକଟସ୍ଥ ଜଣେ ବଂଧୁଙ୍କ ଭିଣେଇ। ସହରୀକରଣରେ ତ ବ୍ୟବସାୟୀ ଗୋଷ୍ଠୀଙ୍କ ଲାଭ। ଗରିବଙ୍କର ଅର୍ଥାଭାବରୁ କଷଣ। କାହାର ପୁଷମାସ ତ କାହାର ସର୍ବନାଶ। କିଏ ରୋକିବ ଏ ପରିବର୍ତ୍ତନ ?

(୧୮)

ପୂଜାଛୁଟି ଶେଷ, ଶେଷ ଶରତର ଚୁମ୍ବନ ରସରେ କିମ୍ବା ଆଦ୍ୟ ଶିଶିରରେ ଭିଜା ଧାନଗଛର ଚିକ୍କଣ ଦେହରେ ସରାଗରେ ମିଶିଯାଉଥାଏ ପବନ, ଶିହରି, ଉଠେ ତା ଦେହ,ମାଇଲ୍ ମାଇଲ୍ ଧରି ଲମ୍ବି ଯାଇଥିବା ଧାନକ୍ଷେତର ହିଡ଼ରେ ମୁଁ ଚାଲୁଥାଏଁ ଏକା ଏକା ରେବନ୍ତପାଳି ପାର ହୋଇ ଅନ୍ନପାଳ ବଜାରରୁ କିଛି ଅନ୍ନ ଭୋକିଲା ପେଟରେ ପକେଇ। ଥକି ଯାଉଥିବା ପାଦକୁ ଦମ୍ଭିଲା କରି ଆଗେଇ ଚାଲେ ଜଗନ୍ନାଥ ସଡ଼କ ଧରିବାକୁ। ସଡ଼କ ଧରିଲେ ଦିଶେ ଭଦ୍ରକ ସହର, ମୋ ପ୍ରିୟ ବିଦ୍ୟାଳୟ, ଖେଳ ପଡ଼ିଆ। ମଧ୍ୟାହ୍ନ ଅତିକ୍ରମ କରି ଯାଇଥାଏ। ସୂର୍ଯ୍ୟଙ୍କ ଦୀପ୍ତିମାନ ଶିଖା ମଉଳି ଆସୁଥାଏ। ମନେ ମନେ ଗାଉଥାଏ ଗୀତ, ମୋର ସ୍ୱର ସଂଗେ ତାଳ ରଖି ନାଚୁଥାଏ ସବୁଜ କେଦାର ରାସ୍ତା ଧାରରେ, ଗୋଚର ପଡ଼ିଆଳରେ ଆମ୍ବ ବଉଳ, ବର ଅଶ୍ୱତ୍ଥଗଛ। ଗଛ ଡାଳରେ କିଚିରି ମିଚିରି କରୁଥିବା ପକ୍ଷୀ। ଦି'ପହର, ଲୋକଙ୍କର ଯାତାୟତ ବିରଳ, ନିର୍ଜ୍ଜନତା ଭଙ୍ଗ କରି ପକ୍ଷୀର କାକଳି, ମନରେ ଆଣୁଥାଏ ଆନନ୍ଦ ଓ ସାହସ। ମୁଁ ଗାଇ ଉଠେ 'କାହିଁ କୁସୁମିତ ଲତା ଦୋଳିମାନ ହୋଇଛନ୍ତି ସୁସଜ୍ଜିତ, ତୋତେ କୋଳେଇବା ପାଇଁ ବିହଙ୍ଗ ମା' ବସି ଗାଉଛନ୍ତି ଗୀତ।' ଧୁଧୁ ଖରାରେ ନୀଳ ଆକାଶର ମୁହଁ ପାଲଟିଛି ଏକ ସଫେଦ ଚଦର। ସତେ ଯେମିତି ଅନ୍ତିମ ଶଯ୍ୟାରେ ଶୋଇ ରହିଛି ନିର୍ଲିପ୍ତ ନିର୍ଜୀବ ମଣିଷ। ଡ଼ର ଲାଗେ ବେଳେବେଳେ ଖୋଜେ ସାଙ୍ଗ ସାଥୀ, ମନେପଡ଼େ ବୋଉ ବାପା କଥା, ନଈଧରା ଟଟକା ମାଛ ଚଡ଼ଚଡ଼ି, ବଡ଼ିଚୁରା, ପଖାଳ ମଜଜ। ହଷ୍ଟେଲ୍‌ର ପାଣିଆ ଡାଲି ଭାସେ ଆଖି ଆଗେ। ଆଗକୁ ଯେ କେତେ ମାସ ଇମିତି

ଚାଲି ବଗଡା ଭାତ ଖାଇ ବଂଚିବାକୁ ହେବ। ଜ୍ଞାନର ସଂଧାନେ ଆମେ ଚାଲିଅଛୁ ଆଗକୁ ଆଗକୁ। ହିଡ଼ମାଟି ଅପନ୍ତରା ଟାଙ୍ଗରା ଭୂଇଁରେ। କଅଁଳ ପାଦକୁ ବଥା, ଏତ ଜ୍ଞାନ ଚାଷ, ଫସଲ ଫଳିବ କେବେ ଭୋଗିବା କି ଇପ୍ସିତ ମମତା ? ସାମ୍ନାରେ ବିଲକୁ ଚାହେଁ, କେତେ ଚାଷୀ ହୃଦୟ ମନର ଆବେଗ ଆବେଶ ଧରି ଦୋହାଲା ମାଟି ମଣିଷର ସ୍ୱପ୍ନ ଦରଦୀ ପବନ। ସେ କି ଭାବେ ନିଷ୍ଠୁର ବାସ୍ତବତାର କଥା। ସାହୁକାର ପ୍ରପୀଡ଼ିତ ଚାଷୀର ବେଦନା, ଦୁଃଖରେ ଯେ କାନ୍ଦି କହେ – 'ଉଷୁମାନକୁ ଉଳୁଡ଼ିଗଲା ମୋ ଫଳର କ୍ଷେତ, ଉଷୁମାନକୁ ଉଭାନ ହୋଇଗଲା ମୋ ହାଣ୍ଡିର ଭାତ।' ମୁଁ ମୁଗ୍ଧ ହେଉଥିଲି ସବୁଜ କ୍ଷେତ, ମନ୍ଦ ମଳୟରେ ଧାନ ଗଛର ନୃତ୍ୟ ଏବଂ ଏକ ଶାନ୍ତ ମଧୁର ନିର୍ଜନ ପରିବେଶ ଦେଖି। ଏହି ସୁନ୍ଦର କ୍ଷେତର କଳାକାର, ଗରିବ ଚାଷୀ କି କ୍ଷେତ ମୂଲିଆର ସ୍ୱପ୍ନ କେମିତି ବ୍ୟର୍ଥ ହୁଏ, ବର୍ଷ ସାରା ହାଡ଼ଭଙ୍ଗା ଖଟଣି ତା'ର ଉଦର ଓ ମନକୁ ଯେ ଶାନ୍ତି ଦେଇପାରେ ନା ମୁଁ କ'ଣ ଛାତ୍ରାବସ୍ଥାରେ ଉପଲବ୍ଧି କରୁଥିଲି ? ପ୍ରକୃତିର ସୌନ୍ଦର୍ଯ୍ୟରେ ଶ୍ରମିକ ସଫଳ ଉତ୍ପାଦନ କ୍ରିୟାରେ ମୁଁ ବିମୋହିତ ହେଉଥିଲି। ଧାନଗଛକୁ ଲାଗି ହିଡ଼ ମୂଳେ ବସି ପଡୁଥିଲି। ଧାନପତ୍ର ଦେହରେ ବାଜି ଦେହ ମୋର ସଲସଲ ହୋଇ ଉଠୁଥିଲା। ମୋର ଓଠମାନ ତାରୁଣ୍ୟ କେଉଁ ଏକ ବନ ସୁନ୍ଦରୀର ସ୍ପର୍ଶରେ ସ୍ପନ୍ଦିତ ହୋଇ ଉଠୁଥିଲା। ଗୁଣୁଗୁଣୁ ଗୀତ ଗାଉଥିଲି। ଭକ୍ତି ଓ ପ୍ରେମର ମୋ ପଦ୍ୟାବହିରେ ଥିବା କଲ୍ଲୋଳିତ ଛନ୍ଦ। ଅଙ୍କୁର ଉଠୁଥିବା ଯୌବନର ରୋମାଞ୍ଚିତ ଭାବନା ମୋ ମନରେ ପ୍ରବେଶ କରି କେଉଁଆଡ଼େ ଉଭେଇ ଯାଉଥିଲା। ମୁଁ ଅନ୍ୟମନସ୍କ ହୋଇ ବସି ରହୁଥିଲି କିଛି କ୍ଷଣ। ସମୟର ଚେତନା ମୋତେ ଆଗକୁ ଟାଣି ନେଉଥାଏ। ଦ୍ରୁତ ପାଦରେ ଆଗେଇ ଯାଏ କିଛି ବାଟ। ଏକ ଢ଼ାପୁ ଜାଗା, ବଡ଼ ପଡ଼ିଆ, ଗଛ ତଳ ଛାଇରେ ବସିପଡ଼େ। ପଡ଼ିଆର ମଧ୍ୟ ଭାଗରେ ଗୋଟିଏ ବର ଅଶ୍ୱତ୍ଥ ଗଛ ମୂଳେ କେତେ ଠାକୁରାଣୀଙ୍କ ପଥର ମୂର୍ତ୍ତି।ସ୍ଥାନଟା ଯମ ମାଆ ସାତଭଉଣୀ ନାମରେ ପରିଚିତ। ବହୁକାଳରୁ ଏହି ଦେବୀମାନେ ଦୁର୍ଗା, କାଳିଙ୍କ ସହଚରୀବୃନ୍ଦ, ପୂଜା ପାଉଛନ୍ତି। ସ୍ଥାନଟି ଏକଦା ବୌଦ୍ଧିକ ବା ବୈଦିକ ତନ୍ତ୍ର ପୂଜାର ପ୍ରସିଦ୍ଧ ପୀଠ ଥିଲା ବୋଲି ଲୋକେ କହନ୍ତି। ପଶ୍ଚିମବଙ୍ଗରୁ ପୁରୀ ଜଗନ୍ନାଥ ଦର୍ଶନ ପାଇଁ ଚାଲି ଚାଲି ଯାଉଥିବା ଧର୍ମଯାତ୍ରୀମାନେ ଏହି ବାଟେ ଯାଉଥିଲେ ଏବଂ ଏଠାରେ ବିଶ୍ରାମ ନେଉଥିଲେ। ବର୍ତ୍ତମାନର ଜଗନ୍ନାଥ ସଡ଼କ ପାଞ୍ଚ ନମ୍ବର ଜାତୀୟ ରାଜପଥ ଏଠାରୁ ଦୁଇ ମାଇଲ ପୂର୍ବକୁ। ଯମ ମାଆ ସାତଭଉଣୀ ଦେବାଳୟ (ନା ଯମାଳୟ) ପାଖରେ ଗୋଟିଏ ଛୋଟ ପୋଖରୀ। ପୋଖରୀରେ ଗଭୀର ଜଳ ପରିଷ୍କାର କିଛି ପଦ୍ମଫୁଲ ଓ କଇଁଫୁଲ ଫୁଟିଥାଏ ଜଳ ଉପରେ। କ୍ଳାନ୍ତ ଶ୍ରାନ୍ତ ପଥିକକୁ ସ୍ଥାନଟି ବେଶ୍ ଆରାମ ଦିଏ। ଠାକୁରାଣୀଙ୍କ ଠାରୁ ଅନତି ଦୂରେ କୂଅଟିଏ ଥାଏ। କୂଅ ପାଣି ପଥିକଙ୍କ ଶୋଷ ମେଣ୍ଟାଏ। ଏହି ପଡ଼ିଆର ଅଳ୍ପଦୂରରେ, କୋରେଇ ଗାଁ। ଏଠାରେ ସାହିତ୍ୟ ଶିକ୍ଷକ ଭବବବାବୁଙ୍କ ଘର। ଭବବ ସାର୍ ବେଶ୍ ହୃଷ୍ଟପୁଷ୍ଟ, ଦୀର୍ଘାଙ୍ଗୀ ଶ୍ୟାମଳ ରଂଗର ଲୋକଟିଏ। ଛାତ୍ରମାନଙ୍କୁ ପରୀକ୍ଷାରେ କମ୍ ନମ୍ବର ଦିଅନ୍ତି। ମୁଁ ତ ଶ୍ରେଣୀରେ ପ୍ରଥମ ହୁଏ। ମୋତେ ଟେଷ୍ଟ ପରୀକ୍ଷାରେ ଦେଉଥିଲେ

୧୦୦ରୁ ୬୪ ନମ୍ବର। ମୋର ପୂର୍ବ ବର୍ଷର ପ୍ରଥମ ପିଲା ନମ୍ବରଠାରୁ ଅଧିକ। ଏସବୁ ଉଚ୍ଚ ନମ୍ବର ମୋ ମନରେ ଯେଉଁ ଉଚ୍ଚାଶା ଜନ୍ମେଇ ଥିଲା ତା ନିୟତିର ଇଂଗିତରେ ପଣ୍ଡ ହୋଇ ଯାଇଥିଲା ମେଟ୍ରିକୁଲେସନ୍ ପରୀକ୍ଷାରେ ଆଜି କବିଙ୍କ କଥାର ସତ୍ୟତା ମୁଁ ଉପଲବ୍ଧି କରୁଛି-

'What can be avoided,
whose end is purposed
by the mighty gods?' Shakespeare
'ନିୟତି ଲିଖନ କେ କରିବ ଆନ ?'

ଅନୁପାଳଠାରୁ ଜଗନ୍ନାଥ ସଡ଼କ ପର୍ଯ୍ୟନ୍ତ ଥିଲା ବିସ୍ତୀର୍ଣ୍ଣ ଧାନ ବିଲ, ଦକ୍ଷିଣ ଦିଗରେ କୋରେଇ ଓ ଅନ୍ୟ କେତୋଟି ଗ୍ରାମ। ଉତ୍ତର ଦିଗରେ ଭଦ୍ରକ ପୁରୁଣା ବଜାରକୁ ଲାଗି ସହର ତଳି ଗାଁ'। ଉତ୍ତର ଦକ୍ଷିଣ ପ୍ରାୟ ଚାରି ମାଇଲ ମଧ୍ୟଭାଗରେ ଚଳନ୍ତି ରାସ୍ତା। ରାସ୍ତା କଡ଼ରେ ଗଛ ଠାଏ ଠାଏ।। ଏବେ ଭଦ୍ରକ ସହର ବଢ଼ି ଯାଇଛି। ଜଗନ୍ନାଥ ସଡ଼କ ତଳକୁ ଏହି ରାସ୍ତା କଢ଼େ କଢ଼େ ଅନେକ ପକ୍କା ଘର ହୋଇଗଲାଣି। ରାସ୍ତାଟି ମଧ୍ୟ କଂକ୍ରିଟ୍। ବର୍ଷର ସବୁ ଋତୁରେ ମଟରଗାଡ଼ି ଚଳାଚଳ କରୁଛି। ବାଟୋଇଟି ଜଗନ୍ନାଥ ସଡ଼କରେ ପାଦ ଦେଲାକ୍ଷଣି ମୁଣ୍ଡିଆଟିଏ ମାରେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ। ଧର୍ମର ଏ ବିଶ୍ୱାସ ମୋର ପିଲା ମନକୁ ମଧ୍ୟ ଆଚ୍ଛନ୍ନ କରିଥାଏ। ଜଗନ୍ନାଥ ସଡ଼କରେ ମୁଣ୍ଡିଆଟିଏ ମାରି ଚାଲେ କଚେରୀ ପାଖ ମୋ ସ୍କୁଲକୁ। ବାମ କଡ଼ରେ ଖେଳ ପଡ଼ିଆ। ପିଲାଏ ଏଠାରେ ଫୁଟବଲ୍ ଖେଳନ୍ତି। ପଡ଼ିଆଟି ସହରବାସୀଙ୍କ ଦ୍ୱାରା ମଧ୍ୟ ବ୍ୟବହୃତ ହୁଏ। ପଚାଶ ଷାଠିଏ ଦଶକରେ ଆମ ଦେଶର ପ୍ରିୟ ଖେଳ ଥିଲା ଫୁଟବଲ୍। ଆଜିକାଲି ଭଳି କ୍ରିକେଟ୍ ଖେଳର ଆକର୍ଷଣ ଏପରି ବ୍ୟାପକ ହୋଇ ନଥାଏ। ବର୍ଷା ଋତୁରେ ଫୁଟବଲ ମ୍ୟାଚ୍ ଦେଖିବା ପାଇଁ ଆମେ ଉତ୍କଣ୍ଠିତ ହେଉ। ମୁଁ ଖେଳରେ ଦୁର୍ବଳ। ଶାରୀରିକ ଦୁର୍ବଳତା ଓ ପଢ଼ାରେ ଅତ୍ୟଧିକ ମନୋନିବେଶ ସମ୍ଭବତଃ ଏହାର କାରଣ ଥିଲା କ୍ରୀଡ଼ା ଯେ ସୁସ୍ଥ ସବଳ ରଖିବା ସଂଗେ ସଂଗେ ମାନସିକ ତେଜ ପ୍ରଖର କରେ ଏ ଧାରଣା ମୋ ଭଳି ପିଲାଙ୍କର ନ ଥିଲା। ମେଧାବୀ ପିଲାର ଗୌରବ ଅର୍ଜନ ଇଚ୍ଛା ବ୍ୟକ୍ତିତ୍ୱର ଅନ୍ୟାନ୍ୟ ଦିଗ ପ୍ରତି ଅନ୍ଧ କରିଦେଇଥିଲା।

ଅନୁପାଳଠାରୁ ଭଦ୍ରକ ଆସିବା ପାଇଁ ଦୁଇଟି ରାସ୍ତା ଥାଏ। ଗୋଟିଏ ମଝି ବିଲରେ ଜଗନ୍ନାଥ ସଡ଼କ ପାଖ ଗେଲଟିଆ ଗାଁ ପର୍ଯ୍ୟନ୍ତ। ଅନ୍ୟଟି ଭଦ୍ରକର ପୂର୍ବ ଭାଗରେ ଥିବା ଚନ୍ଦନ ବଜାର ବା ପୁରୁଣା ବଜାରକୁ ଗୁଜ୍ଜିଦରଢ଼ା ଗାଁ' ଦେଇ। ଏହି ରାସ୍ତାଟି ଥିଲା ଅପେକ୍ଷାକୃତ ଉଚ୍ଚ। ମାତ୍ର ଭଦ୍ରକ ହାଇସ୍କୁଲ ଏହି ରାସ୍ତାରେ ଥିଲା ଅଧିକ ଦୂର। ତେବେ ଲୋକ ଚଳାଚଳ ଏ ରାସ୍ତାରେ ଅଧିକ ଥିବାରୁ ବେଳବେଳେ ଏହି ରାସ୍ତା ଦେଇ ମୁଁ ଆସିଛି। ଗୁଜ୍ଜି ଦରଢ଼ା ଗାଁ'ରେ ମୁସଲମାନଙ୍କ ସଂଖ୍ୟା ଅଧିକ। ସ୍ୱାଧୀନ ଉତ୍କଳର ଶେଷସଂଗ୍ରାମରେ ଗୋହିରଟିକିରଠାରେ ଯୁଦ୍ଧ କରିବା ପାଇଁ ବହୁସଂଖ୍ୟକ ବଙ୍ଗ ସୁଲତାନଙ୍କ ସୈନ୍ୟ ଆସି ବୋଧହୁଏ ଏଠାରେ ଏବଂ ଧାମନଗରରେ ବସବାସ ସ୍ଥାପନ କରିଥିଲେ। ଗୁଜ୍ଜିଦରେଢ଼ା ଗାଁ

ଶେଷ ହେଲେ ପଡ଼େ ପୁରୁଣା ବଜାର। ଏଠାରେ ମଧ ଗୋଟିଏ ହାଇସ୍କୁଲ ଥାଏ। ଆମ ଭଦ୍ରକ ହାଇସ୍କୁଲର ପ୍ରଖ୍ୟାତ ସାହିତ୍ୟିକ ଓ ଶିକ୍ଷକ କିଛି ବର୍ଷ ଏହି ସ୍କୁଲରେ ହେଡ୍‌ମାଷ୍ଟର ହୋଇଥିଲେ ତାଙ୍କର ନାମ ଉପେନ୍ଦ୍ର ପ୍ରସାଦ ମହାନ୍ତି। ତାଙ୍କର ଗୋଟିଏ ଝିଅ ମୋର ସହପାଠିନୀ ଥିଲା। ବେଶ୍ ସୁନ୍ଦର। ଏହି ସ୍କୁଲରେ ମଧ୍ୟ ଇଂରାଜୀର ପ୍ରଥମ ସାଧାରଣ ପରୀକ୍ଷା ଅନୁଷ୍ଠିତ ହୋଇଥିଲା ୧୯୪୮ ମସିହାରେ। କେଠାର ସ୍କୁଲରେ ଛାତ୍ର ଭାବେ ଏଠାରେ ମୁଁ ପରୀକ୍ଷା ଦେଇ ସମଗ୍ର ଭଦ୍ରକ ସବଡ଼ିଭିଜନରେ ପ୍ରଥମ ହୋଇଥିଲି। ପରୀକ୍ଷା ଶେଷ ଦିନରେ ସବୁ ସ୍କୁଲ ପିଲାଙ୍କ ମଧରେ ବକ୍ତୃତା ପ୍ରତିଯୋଗିତାରେ ମୁଁ ପ୍ରଥମ ହୋଇ ପୁରସ୍କାର ପାଇଥିଲି। ବକ୍ତୃତାର ବିଷୟ ଥିଲା-ଗ୍ରାମ୍ୟ ଜୀବନ ସହରୀ ଜୀବଠାରୁ ଶ୍ରେୟ। ମୋର ମନେ ହୁଏ ମୁଁ ଗ୍ରାମ୍ୟ ଜୀବନ ସଂପର୍କରେ ଯୁକ୍ତି ବାଢ଼ିଥିଲି। ପିଲାଦିନର ଆସକ୍ତି ଓ ବୟଃପ୍ରାପ୍ତ ଜୀବନର ଆସକ୍ତି, ଅନୁରାଗ ଭିତରେ କେତେ ପାର୍ଥକ୍ୟ? ସହରୀ ଜୀବନର ଚାକଚକ୍ୟ, ସୁଖସ୍ୱାଚ୍ଛନ୍ଦ୍ୟ କେତେ ଯେ ମୋହଗ୍ରସ୍ତ କରିଦେଲା, ଗାଆଁକୁ ଆଉ ଫେରି ଯାଇନି।

ପୁରୁଣା ବଜାର ମଧ ସ୍ଥଳରେ ଚନ୍ଦନ ବଜାର, ବଡ଼ ବଡ଼ ମାରଓ୍ୱାଡ଼ିଙ୍କ ବ୍ୟବସାୟ ପ୍ରତିଷ୍ଠାନ। ଦି'ତାଲା ତିନିତାଲା ସୁଦୃଶ୍ୟ ଘର। ସମଗ୍ର ସବଡ଼ିଭିଜନର ନିକଟ ଓ ଦୂର ଅଞ୍ଚଳର ଖୁଚୁରା ବ୍ୟବସାୟୀ ଏଠାରୁ ପାଇକାରୀ ଦରରେ ଲୁଗାପଟା, ତେଲରାତି ଜିନିଷ ନିଅନ୍ତି। ପକ୍କା ରାସ୍ତା ଗ୍ରାମାଞ୍ଚଳରେ ନ ଥିବାରୁ ଶଗଡ଼ଗାଡ଼ିରେ ଜିନିଷପତ୍ର ନେବା ଆଣିବା ହୁଏ। ମଫସଲ ଅଞ୍ଚଳରୁ ପନିପରିବା, ମାଛ, ଧାନ ଆସେ, ବଡ଼ ବ୍ୟବସାୟୀମାନେ କିଣନ୍ତି। ଚନ୍ଦନ ବଜାରରେ ଥାଏ ଋଉଳ କଳ! ଏଠାକାର ବୁଧବାର ହାଟରେ ଗାଈ, ବଳଦ, ଛେଳି, ମେଣ୍ଢା ବିକ୍ରି ହୁଏ ପ୍ରଚୁର। ସମଗ୍ର ଉତ୍ତରଓଡ଼ିଶାରେ ଗୋରୁହାଟ ରୂପେ ଏହା ପ୍ରସିଦ୍ଧି ଲାଭ କରିଥାଏ। କାହିଁ କେତେ କାଳରୁ ରାଜସ୍ଥାନରୁ ଆସି ମାରଓ୍ୱାଡ଼ିମାନେ ଓଡ଼ିଶାର ପୁରପଲ୍ଲୀରେ ବ୍ୟବସାୟ ମେଲି ଦେଇଛନ୍ତି। ସେମାନେ ଓଡ଼ିଆ ବ୍ୟବସାୟୀଙ୍କୁ ପଛରେ ପକେଇ ଆଗେଇ ଯାଇଛନ୍ତି ଶ୍ରମ, ଅଧବସାୟ ସଂଚୟଶୀଳତା ଓ ପ୍ରଖର ବ୍ୟବସାୟିକ ବୁଦ୍ଧି ଯୋଗୁଁ। ଏହି ଚନ୍ଦନ ବଜାର ମାରଓ୍ୱାଡ଼ିଙ୍କ ସହାୟତା ଓ ବଦାନ୍ୟତାରେ ଭଦ୍ରକ ସହରର ପ୍ରଥମ ମହାବିଦ୍ୟାଳୟ ସ୍ଥାପିତ ହୋଇଥିଲା। 'ଧନ ଅର୍ଜନେ ଧର୍ମ କରି' କଥାର ମର୍ମ କିଛିଟା ବୁଝିଛନ୍ତି ଏବଂ ଓଡ଼ିଶାକୁ ଆପଣେଇ ନେଇଛନ୍ତି ସେମାନଙ୍କର ଦାୟାଦମାନେ।

(୧୯)

ମାଟିର ସନ୍ତାନ ମୁହିଁ ମାଟିର ମଣିଷ। ଭଲ ଲାଗେ ମାଟି ପାଣି କାଦୁଅରେ ଖେଳିଖେଳି ଦେଖିବାକୁ ଗଛଲତା ଫୁଲଫଳ ନଈ ନାଳ, କେତେ ରଂଗେ ଖେଳୁଥିବା ବାଳକବାଳିକା ପୁଣି କର୍ମରତ ନାରୀ ଓ ପୁରୁଷ। ମୋ ଗାଁ'ର ଚାରିପଟେ ଛୋଟବଡ଼ କେତେ ଗାଆଁ, ଚିହ୍ନା ଅଚିହ୍ନା ମଣିଷ, ନୂଆ ପରିବେଶ, ମୋ ଗାଆଁ ଉତ୍ତରପଟେ ବହିଯାଏ ରେବ ନଦୀ, ତା

କୂଳରେ ବଡ଼ ଛୋଟ ଗାଆଁ, ଛୋଟ ଏକ ହରିଜନ ବସ୍ତି-ବନ୍ଧ ସାହି, ଆମ ଘର ଠାରୁ ଅଧ ମାଇଲ୍ ଦୂର। ଆମର ଥାଏ ଚାଷ ଜମିଟିଏ। ଶୀତଦିନ ଧାନକଟା ସମୟରେ ମୂଲିଆଙ୍କ ପାଇଁ ପିଠା ଓ ନାଲି ଚା' ନେଇଯାଏ। ସେହି ଜମିକୁ ଲାଗି ମଂଗଳା ଠାକୁରାଣୀଟିଏ। ବନ୍ଧସାହି ଲୋକଙ୍କର ଅରାଧ ଦେବୀ। ଏହି ଗାଆଁର ଲୋକେ, ପଟଲା (ବଡ଼ଡ଼ଂଗା) ସାହାଯ୍ୟରେ ଚାନ୍ଦବାଲି ଯା' ଆସ କରୁଥିଲେ। ମାଛ, ଶୁଖୁଆ, ଧାନ, ଚଉଳ ବ୍ୟବସାୟ ପାଇଁ କିଣୁଥିଲେ। ମତୋ, ଚାନ୍ଦବାଲିଠାରୁ ଧାନ ଅମଳ ସମୟରେ ପାଖ ଆଖ ଗାଁରୁ ଧାନ ନେଇ ଚାନ୍ଦବାଲିର ଧାନ କଳ ମାଲିକଙ୍କୁ ଦେଉଥିଲେ। ମୋର ପିଲାଦିନେ ରେବନଦୀ ବେଶ୍ ଜୁଆରିଆ ଥିଲା। ସମୁଦ୍ରର ଜୁଆର ପାଣି ଆସିଯାଉଥିଲା ବମୁକୁରା ପର୍ଯ୍ୟନ୍ତ। ଏବେ ଜୁଆରର ବେଗ କମି ଗଲାଣି। ସଡ଼କରାସ୍ତାର ଉନ୍ନତି ହେତୁ ଆଗଭଳି ନାଆରେ ଆଉ ବ୍ୟବସାୟ ବା ଜିନିଷପତ୍ର ନେବା ଆଣିବା ହେଉନି। ନଦୀ ମାତୃକାର ଦେଶରେ ନଦୀମାନଙ୍କୁ ବଂଦୀ କରି ଦେଲୁଣି। ନଦୀଜଳର କଳକଳ ନାଦ ବେଶି ଶୁଣିବାକୁ ପାଉନୁ। ଗାଡ଼ି ମଟରର କ୍ରିଂ କ୍ରିଂ ପେଁ ପେଁ ଶବ୍ଦ ଆମ କାନକୁ ବଧୀରା କରିଦେଲାଣି। ବନ୍ଧ ସାହିର କେତେ ଲୋକେ ଅନ୍ୟର ବିଲରେ ମୂଲ ଲାଗନ୍ତି। ଆମ ଘରେ ଏହି ଗାଁ'ର ବୀର ଜେନା ବାରମାସିଆ ରହିଥଲା କିଛି କାଳ। ହୃଷ୍ଟପୃଷ୍ଟ ଓ ବିଶ୍ୱାସୀ ନିଷ୍ଠାପର ମୂଲିଆ। ଆମ ଗାଁ' ଓ ପାଖ ଗାଁ ବମୁକୁରାରେ ମାଇନର - ହାଇସ୍କୁଲ ଖୋଲିଲା। ଏହି ଗାଁ'ର ହରିଜନ ପିଲାମାନେ ମଧ ପାଠପଢ଼ି ସରକାରୀ ଚାକିରି ଖୋଜୁଛନ୍ତି। କିଏ ପାଉଛି ତ କିଏ ପାଉନି।

ବମୁକୁରା ଆମ ଅଞ୍ଚଳର ଏକ ବଡ଼ଗାଁ'। ରେବ ନଈ ଦୂଇ ପାଖରେ ପ୍ରାୟ ତିନିଶହ ଘର। ବିଭିନ୍ନ ଜାତିର ଲୋକେ ବାସ କରନ୍ତି, ତେବେ ସଂଖ୍ୟାଗରିଷ୍ଠ ହେବେ ବ୍ରାହ୍ମଣ ଜାତିର ଲୋକେ। ପୂର୍ବେ କୋଲକାତାରେ ଗଙ୍ଗାଘାଟରେ ବା ଦୋକାନମାନଙ୍କରେ ଏହି ଗାଁ'ର ବ୍ରାହ୍ମଣମାନେ ପୂଜାର୍ଚ୍ଚନା କରି ବେଶ୍ କିଛି ରୋଜଗାର କରୁଥିଲେ। କୋଲକାତା ସହରର ପ୍ରସିଦ୍ଧି କମିଯିବା ସଂଗେ ସଂଗେ ଏବଂ ନୂଆପିଢ଼ିର ପିଲାଏ ପାଠ ପଢ଼ି ଚାକିରି ପାଇବା ପରେ, ଘାଟ ପୂଜାର ପ୍ରାଧାନ୍ୟ ହ୍ରାସ ପାଇଛି। ସୂର୍ଯ୍ୟପୁରରେ ପ୍ରଥମେ ଯେବେ ମାଇନର ସ୍କୁଲ ଖୋଲିଥିଲା ଏବଂ ମୁଁ ସେ ସ୍କୁଲର ଚତୁର୍ଥ ଶ୍ରେଣୀରର ଛାତ୍ର ଥିଲି ସେତେବେଳେ ଏହି ଗାଁ'ର ଜନୈକ ପଣ୍ଡାବାବୁ ସେ ସ୍କୁଲର ହେଡ଼ମାଷ୍ଟର ହୋଇଥିଲେ। ସୌମ୍ୟସୁନ୍ଦର ଚେହେରା, କୋଲକାତା କଲେଜରୁ ଆଇ.ଏ. ପାଶ୍ କରିଥିଲେ। ଏକ ଉଚ କାଠ ଘର ପକ୍କା ପିଣ୍ଡା, ବାଟେଇମାନଙ୍କ ଆଖି ଝଲସେଇ ଦେଉଥିଲା। ଆମ ସାହିର ମାଝୀ ଦୁଇଘରର ବଂଧୁଘର ବମୁକୁରାରେ। ସେହି ଘରର ପିଲା ମୋ ସାଙ୍ଗସାଥୀ। ମୁଁ ବମୁକୁରାକୁ ପିଲାବେଳେ ଗଲାବେଳେ, ସ୍ୱଚ୍ଛଳ ବ୍ରାହ୍ମଣ ପରିବାରର ସୁନ୍ଦରୀ ବୋହୂଙ୍କ ଗୌରବର୍ଣ୍ଣ ଦେହ ଏବଂ ମୂଲ୍ୟବାନ ଶାଢ଼ି ଓ ଅଳଙ୍କାର ଦେଖି ମୁଗ୍ଧ ହୋଇଯାଏ। ମୁଁ ଯେତେବେଳେ ଭଦ୍ରକ କଲେଜରେ ପ୍ରଥମେ ଅଧ୍ୟାପକ ଚାକିରି କଲି ଏହି ଗାଁ'ରେ କେତେ ଜଣ ପିଲା ମୋର ଛାତ୍ର ଥିଲେ। ଏହି ଗାଁ'ର ହାଇସ୍କୁଲର ଶୁଭ ଦେଉଥିଲି ମୁଁ ସତୁରି ଦଶକର ଶେଷ ଭାଗରେ। ବଡ଼ ଗାଁ'ଟିରେ ବହୁ

ଘର ଥିବାରୁ ଘରଗୁଡ଼ିକ ବେଶ୍ ଲଗାଲଗି। ଗୋଟିଏ ଜାତି (ବ୍ରାହ୍ମଣ)ର ଲୋକେ ଲଗାଲଗି ହୋଇଥିବା ଘରେ ବାସ କରୁଥିବାରୁ ସଂପର୍କ ନିବିଡ଼ତର ହେବା ସ୍ୱାଭାବିକ। ନିବିଡ଼ ସଂପର୍କରୁ ଜାତ ହୁଏ ପ୍ରେମ। ପ୍ରେମିକମାନଙ୍କ ଜାତିନୀତି, ନିକଟସଂପର୍କୀୟ ଭିତରେ ଗୋପନ ପ୍ରେମର କେତେ କାହାଣୀ ଏ ଗାଁ'ର କେତେ ଲୋକଙ୍କୁ କେନ୍ଦ୍ର କରି ଶୁଣାଯାଏ। ଏଲ୍ ଆଇ.ସି.ରେ କାମ କରୁଥିବା ଜନୈକ ବନ୍ଧୁଙ୍କ ଠାରୁ ପ୍ରାକ୍ ବୈବାହିକ ଜୀବନର ପ୍ରେମ କଥା କେତେ ଶୁଣିଛି। ତରୁଣ-ତରୁଣୀ ବା କିଶୋର-କିଶୋରୀ,ନିର୍ଜନ ସ୍ଥାନରେ କିମ୍ବା ଲୋକଚକ୍ଷୁର ଅନ୍ତରାଳରେ ବାରମ୍ବାର ଦେଖାହେଲେ, ପରସ୍ପର ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ। ସ୍ୱପ୍ନିଳ ମନର ଆକର୍ଷଣ ଓ ଦୈହିକ ମିଳନ ମଧ୍ୟରେ କେତେ ବା ପାର୍ଥକ୍ୟ? ଠାକୁର ରାମକୃଷ୍ଣ ପରମହଂସଙ୍କ ଭାଷାରେ - ନାରୀ ତ ତେନ୍ତୁଳି ଆଚାର। ଦେଖିଲେ ପୁରୁଷର ଜିଭରୁ ଲାଳ ବହେ। କେତେଜଣ ସଂଯତ କରିପାରିବେ ନିଜକୁ? ବର୍ଷା କରଢ଼ି ପଡ଼େ ଘର ଉପରେ, ବଗିଚା ଛିନ୍‌ଛତ୍ର ହୋଇଯାଏ, ନିଦ ଭାଙ୍ଗିଯାଏ। ଘରେ ରହୁଥିବା ଏକାକୀ ତରୁଣୀଟିର ବାପା ମାଆ ଦିନେ ଦୁଇଦିନ ପାଇଁ ଯାଇଛନ୍ତି କେଉଁ ବଂଧୁ ଘରକୁ। ସଂପର୍କୀୟ ଭାଇ ହେପାଜାତରେ ଛାଡ଼ି ଦେଇଛନ୍ତି ନବଯୌବନୀ ଝିଅକୁ। କୌଣସି ମତଲବରେ ଝିଅଟି ସଙ୍ଗରେ ଯାଇନାହିଁକି? ପାଖ ଘର ଦାଦା ପୁଅ ଭାଇ ବି ତରୁଣ, ଶିକ୍ଷିତ, ରସିକ। ଆସି ପହଞ୍ଚେ ବର୍ଷାମୁଖର ଅଧାରାତିରେ। ନିଦଭଂଗା ତରୁଣୀଟିର ବର୍ଷା ପ୍ରତି ରାଗ ଉଭେଇ ଯାଏ ପ୍ରୀତିର ସ୍ପର୍ଶରେ। ଚୀନା କବି ତରୁଣୀର ମନକଥା କହନ୍ତି

"ମୁଁ ଧନ୍ୟବାଦ ଦେଲି ବର୍ଷାକୁ
କାରଣ ତୁମେ ନିଶ୍ଚୟ ଖୋଲି ଦେବ
ତୁମର ଭିଜାଲୁଗା
ମୁଁ ଧନ୍ୟବାଦ ଦେଲି ପବନକୁ
କାରଣ ସେ ଲିଭାଇ ଦେଲା ବତି।" (ଟ୍ୟାଙ୍ଗ୍ ୟୁ ଟଏନ)

ସବୁ ଦେଶରେ ତରୁଣ-ତରୁଣୀଙ୍କ ମନ ଏକା, ସାମାଜିକ ସଂପର୍କ, ମାମୁଁ, ମଉସା, ଭାଇ, ପୁତୁରା, ଝିଆରୀର ସଂପର୍କ କେତେ ଦୁର୍ବଳ ପ୍ରେମର ଉଦ୍‌ବେଳ ପବନ ପାଖରେ। ଏହି ଦୁର୍ଦ୍ଦର୍ଷ ଆକର୍ଷଣ ରୂପ ନିଏ ମାନସିଂହଙ୍କ କବିତାରେ-

"ଧାଉଁଥିଲି ସ୍ତବ୍ଧ ରାତ୍ରେ ପ୍ରଥମା ପ୍ରିୟାର
ନିବିଡ଼ ଆଶ୍ଳେଷ ବନ୍ଧେ ଦୁର୍ଦ୍ଦାନ୍ତ ହିୟାର
ଦୁର୍ଦ୍ଦର୍ଷ ବାସନା ରାଶି ଶମିବାର ଲାଗି"

ମନ୍ଦାକାନ୍ତା ସେନଙ୍କ ହୃଦୟ ଅବାଧ 'ମେୟେ' ଭଳି ଗାଁ'ର ସମାଜିକତା ନିବିଡ଼ ଭିତରେ ବଂଦିନୀ ଖୋଜେ ଅଂଧାର ଖୋଜେ ନିଛାଟିଆ ଜାଗା ନିରୋଳା ସମୟ। ସୁବିଧା ପାଇଲେ ମିଶିଯାଏ ମନର ପୁରୁଷ ସଂଗେ। ଏହି ସରଳା ପଲ୍ଲୀବାଳା ଆବଶ୍ୟକ ହେଲେ ଦୁଃସାହସୀ ହୋଇଯାଏ ଏବଂ

"ସହିଦ ମିନାରେ ଭଠେଗିଏ
ବଲେ ଦେବ ଆକାଶ ଫାଟିଏ
ଇନ୍ଦୁକାକୁ ଆମାର ପ୍ରେମିକ"

କିନ୍ତୁ ଏପରି ଘଟଣା ବିରଳ ଥାଏ ଗାଁ'ରେ। ଅଧିକାଂଶ ସମସ୍ୟାର ପ୍ରେମ ଜନିତ ସମସ୍ୟା ମଧ ସମାଧାନ ହୋଇ ଯାଉଥିଲା ଗାଁ ନିଶାପରେ (ବିଭର ପରେ)

ବମ୍ଭୁକୁରା ଗାଁ' ଅତିକ୍ରମ କରି ଗଲେପଦ୍ବେ କାଶାମପୁର। ଏଠାରେ ଓଡ଼ିଶାର ଜଣେ ଖାତନାମା ହେଡ୍‌ମାଷ୍ଟର ଏବଂ ଧାମନଗର ଅଞ୍ଚଳର ପ୍ରଥମ ଏମ.ଏ. ପାଶ୍ କରା ଆଦର୍ଶ ବ୍ୟକ୍ତିତ୍ୱ ମୋର ପୂଜ୍ୟ ଗୁରୁଦେବ ଶ୍ରୀଯୁକ୍ତ ଗୋକୁଳାନନ୍ଦ ନାୟକଙ୍କ ଘର। ଏହି ବଂଶର ଅନ୍ୟ ଜଣେ କୃତବିଦ୍ୟା ଜନପ୍ରିୟ ଶିକ୍ଷକ ଥିଲେ ଶ୍ରୀଯୁକ୍ତ ରାଜବଲ୍ଲଭ ନାୟକ। ମୋର ମଧ ଇଂରାଜୀ ପଢ଼ା ବେଳର ଶିକ୍ଷକ। ଆମ ପଞ୍ଚାୟତରେ ପ୍ରଥମ ସରପଞ୍ଚ। ସଂଭ୍ରାନ୍ତ, ନୀତିବାନ ଏବଂ ଦକ୍ଷ ଶିକ୍ଷକ। ଶ୍ରୀଯୁକ୍ତ ଗୋକୁଳାନନ୍ଦ ନାୟକଙ୍କ ସୁପୁତ୍ର ଫଣୀଭୂଷଣ ନାୟକ ମୋର ମଧ ଅତି ଶ୍ରଦ୍ଧା ଓ ସମ୍ମାନ ଭାଜନ ଶିକ୍ଷକ। ଏମାନଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର କୁହୁକ ସ୍ପର୍ଶରେ ମୋ ଜୀବନ ଗଢ଼ି ଉଠିଛି। ଆମ ଗାଁରୁ ବମ୍ଭୁକୁରା ଦେଇ ଏ ଗାଁ'କୁ ରାସ୍ତା ସତୁରି ଦଶକ ପର୍ଯ୍ୟନ୍ତ ଥିଲା କାଦୁଅ ମାଟି, ଗୋଡ଼ି, କୋଇଲା କଣ୍ଟା ବେଣା ଚେର ପରିପୂର୍ଣ୍ଣ। ବର୍ଷେ ଦୁଇବର୍ଷରେ ଥରେ ଏ ବାଟଦେଇ କାଶାମପୁର ଗଲେ ମନେ ହୁଏ ଭକ୍ତ ଜଣେ ଆନନ୍ଦ ଚିତ୍ତରେ ପଥ କଷ୍ଟ ଭୁଲି ଆସିଛି ଏକ ପବିତ୍ର ପୀଠକୁ। ଏକ ସ୍ରୋତସ୍ୱିନୀ ନଦୀ କୂଳରେ ଛୋଟ ଗାଆଁଟି ଭଦ୍ରକ ଜିଲ୍ଲାରେ ବେଶ୍ ସୁପରିଚିତ, ଏହିମାନଙ୍କ ପାଣ୍ଡିତ୍ୟ ଓ ସ୍ୱାଧୀନତା ସଂଗ୍ରାମୀ ସମାଜବାଦୀ ନେତା, ମୋର ରାଜନୈତିକ ପ୍ରେରଣାଦାତା ଶ୍ରୀଯୁକ୍ତ ବୈଷ୍ଣବ ଚରଣ ନାୟକଙ୍କ ଖ୍ୟାତି ଯୋଗୁଁ। ମୁଁ ଜାଣେନା ଏହି ମାଟି ଆଉ କେବେ ଏପରି ସୁପୁତ୍ରଙ୍କୁ ଜନ୍ମ ଦେବ। ଜନ୍ମ ନେଇଥିଲେ ଅବଶ୍ୟ ବୃଷାସନ ନାୟକ, ସୀତାକାନ୍ତ ନାୟକ, ରାଧାବିନୋଦ ନାୟକ। ବୃଷାସନ ବାବୁ କୋଠାର ହାଇସ୍କୁଲର ହେଡ୍‌ମାଷ୍ଟର ହୋଇଥିଲେ। ସୀତାକାନ୍ତ ନାୟକ ଆରମ୍ଭରେ ଧୂଷୁରୀ ହାଇସ୍କୁଲର ହେଡ୍‌ମାଷ୍ଟର ହୋଇଥିଲେ। ରାଧାବିନୋଦ ନାୟକ,ଏକଦା ମୋର ଶ୍ରଦ୍ଧେୟ ଛାତ୍ର। ପରେ ହେଲେ ଗୋଟିଏ କଲେଜର ଅଧକ୍ଷ, ସୁଗାଳ୍ପିକ। ୧୯୫୯ମସିହାରେ ସେ ସ୍ୱପ୍ନ ଦେଖିଥିଲେ କିଶୋର ଅବସ୍ଥାରେ -"କୋଠାରରେ କଲେଜଟିଏ ହେଲେ ସୀତା ଭାଇ, ବାସୁ ସାର (ଏ ଅକିଞ୍ଚନ) ସେ କଲେଜର ଅଧାପକ ହୁଅନ୍ତେ; ଗାଁ ପରିବେଶରେ ଜ୍ଞାନଦୀପ୍ତ ତାରୁଣ୍ୟର ଲୀଳା ଖେଳା ଚାଲନ୍ତା।" କୋଠାରରେ କଲେଜଟିଏ ହୋଇଛି କିନ୍ତୁ ସେ ସ୍ୱପ୍ନିଳ ପରିବେଶ ଗଢ଼ି ଉଠିନି। ସୀତାକାନ୍ତ ବାବୁଙ୍କ ସହ ମୋର ବଂଧୁତା ଆରମ୍ଭ ହୁଏ କୋଲକାତାରେ। ସେ ପ୍ରାଚୀନ ଇତିହାସ ଓ ପ୍ରତ୍ନତତ୍ତ୍ୱରେ ଏମ.ଏ. ପଢୁଥାନ୍ତି। ମୁଁ ପ୍ରେଜିଡ଼େନସି କଲେଜରେ ବି.ଏ. ପଢୁଥାଏ। ଇଡ଼େନ୍ ହିନ୍ଦୁ ହଷ୍ଟେଲରେ ରହୁଥାଏ। ଏହି ହଷ୍ଟେଲ୍‌ରେ ଅନ୍ତେବାସୀ ଏକଦା ଥିଲେ ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ। ବିବାହ ଜୀବନରେ ଉପଯୋଗୀ କାମବନ୍ଧ ସଂବନ୍ଧରେ ପରାମର୍ଶ ଦେଉଥିଲେ ରସିକ

ବଂଧୁ ସୀତାକାନ୍ତ। ବଂଗାଳି ତରୁଣୀଙ୍କ ସହ ପ୍ରୀତିର ସରଳ ବୃତ୍ତାନ୍ତ ଉପସ୍ଥପନା କରୁଥିଲେ। ତାଙ୍କର ଓ ତାଙ୍କୁ କେନ୍ଦ୍ର କରି ରାଧା ବିନୋଦର ଉଚ୍ଚ ଆଶା ଫଳବତୀ ହୋଇ ନଥିଲା। ସ୍କୁଲ ବିଭାଗରେ ତାଙ୍କ କର୍ମଜୀବନର ପରିସମାପ୍ତି ଘଟିଥିଲା। ସୁନାମ ନ ଥିଲା ତାଙ୍କ ଭାଗ୍ୟରେ। ଏସବୁ ଗାଆଁରେ ଏବେ ମଧ ମାଧମିକ, ଉଚ୍ଚ ମାଧମିକ ବିଦ୍ୟାଳୟ ସ୍ଥାପିତ ହୋଇଛି। ବହୁ ଶିକ୍ଷିତ ଲୋକ, ଗାଁ'ରେ ରାସ୍ତାଘାଟ, ପୋଷ୍ଟଅଫିସ୍, ଡ଼ାକ୍ତରଖାନା ମଧ ସ୍ଥାପିତ। ଅର୍ଥନୀତି ସମ୍ଭବତଃ ସମୃଦ୍ଧ, ମାତ୍ର ଶାନ୍ତି ପ୍ରୀତି ସୁଖ୍ୟାତି ଅନୁଚ୍ଚାରିତ।

## (୨୦)

ଧୁଷୁରୀଠାରୁ ଆଖଣ୍ଡଳମଣି ପର୍ଯ୍ୟନ୍ତ ପୂର୍ବାଞ୍ଚଳକୁ ତଳମାଳ ଅଞ୍ଚଳ କୁହାଯାଏ। ବର୍ଷାଋତୁରେ ବିଲବାଡ଼ି ଜଳପୂର୍ଣ୍ଣ, ଆମ ଗାଁର ଉତ୍ତର-ପୂର୍ବ-କୋଣକୁ ଅଳ୍ପ ଅଳ୍ପ ଦୂର ଛଡ଼ାରେ ରହିଛି କେତୋଟି ଛୋଟ ଛୋଟ ଗାଁ।' ଋଷୀମୂଲିଆର ଗାଁ' ବେଶ୍ କିଛି ଘର ହରିଜନ ପରିବାର, ପର ଘରେ ମୂଲ ଲାଗି ବଞ୍ଚନ୍ତି। ବନ୍ଧସାହି, ଦେଉଳଡ଼ି, ପଛାଲ, ଖଡ଼ିମାହାର। ଯେତେ ତଳକୁ ତଳକୁ ପୂର୍ବ ଦିଗକୁ ଯିବ, ସେତେ ଅପନ୍ତରା ଅଗମ୍ୟ ଅଞ୍ଚଳ ଦେଖିବ। ନଇନାଳ, ଖାଲ କୋଇଲିକଣ୍ଟା ଭରା। ଖଡ଼ିମାହାରାଠାରୁ କିଛି ଦୂରରେ ପ୍ରସିଦ୍ଧ ନାହାକାଣୀ ଠାକୁରାଣୀ। ଦେଉଳଡ଼ି, ପଛାଲ, ଖଡ଼ିମାହାରା ଗାଁ'ର ଲୋକେ ନଈକୂଳିଆ ଜମିରେ ଭଲ ଫସଲ କରନ୍ତି। ବିଶେଷତଃ ପଛାଲରେ ବିରି, ମୁଗ ଋଷ ଏ ଅଞ୍ଚଳରେ ସୁପରିଚିତ। ପ୍ରତ୍ୟେକ ଗାଁ'ରେ ଅଳ୍ପ କେତେ ଜଣ ଧନୀ ପରିବାର। ସେମାନେ ଅଧିକାଂଶ ଜମିର ମାଲିକ। ନିଜେ କିଛି ଜମି ଋଷ କରନ୍ତି, ବାକିତକ ବଖରାରେ ଦିଅନ୍ତି। ପଚାଶ ଦଶକରେ ଭାଗଋଷୀ ଆନ୍ଦୋଳନ ତେଜି ଉଠିଥିଲା ଏହି ସବୁ ଗ୍ରାମମାନଙ୍କରେ। ନେତୃତ୍ୱ ନେଇଥିଲେ ସମାଜବାଦୀ ନେତା ସ୍ୱାଧୀନତା ସଂଗ୍ରାମୀ ବୈଷ୍ଣବ ନାୟକ। ନିର୍ବାଚନ ରାଜନୀତିରେ ସଫଳତା ହାସଲ କରି ନ ପାରି ଷାଠିଏ ଦଶକରେ ପଛାଲ ଗାଁ'ରେ ମାଧମିକ ସ୍କୁଲଟିଏ କରି ତା'ର ହେଡ୍‌ମାଷ୍ଟର ହୋଇଥିଲେ କିଛି ଦିନ ପାଇଁ।

ଆମ ଗାଁ'ର କିଛି ଅଂଶ, ମୋ ସାହିଟି ଦେଉଳଡ଼ି ମୌଜାରେ। ଏହି ମୌଜାରେ ଥିବା ଜମିର ଖଜଣା ଦିଆଯାଏ ଦେଉଳଡ଼ିରେ ଥିବା ଜମିଦାରୀ ସିରସ୍ତାରେ। ଏହି ଗାଁ'ର ନିକଟସ୍ଥ ପଡ଼ିଆରେ ଥିବା ପ୍ରଥମିକ ବିଦ୍ୟାଳୟରେ ନିର୍ବାଚନ ବେଳେ ଭୋଟ କେନ୍ଦ୍ର ହୁଏ। ଆମ ସାହି ଲୋକ ଯାଆନ୍ତି ଏହି ଭୋଟ କେନ୍ଦ୍ରକୁ ଭୋଟ୍ ଦେବାକୁ। ଦେଉଳଡ଼ି ଗାଁ' ସହିତ ଆମର ସମ୍ପର୍କ ତେଣୁ ନିବିଡ଼। ଏହି ଗାଁ'ରେ ଅଛି ଏକ ମହାଜନ ଘର। ତେଲି ବ୍ୟବସାୟୀ। ଆମ ଜ୍ଞାତି କୁଟୁମ୍ବ। ଖଡ଼ିମାହାରାରେ ଅଛି କେତୋଟି ଆରଣ ପରିବାର। ଶତ୍ରୁଘ୍ନ ଆରଣ ନାମକ ଜଣେ ଭଦ୍ରବ୍ୟକ୍ତି ଥିଲେ ଏହି ଗାଁ'ରେ। ଖଦଡ଼ ପିନ୍ଧନ୍ତି। କଂଗ୍ରେସ ପାର୍ଟି ପ୍ରତି ଅତୀବ ଅନୁରକ୍ତ। ସ୍ୱାଧୀନତା ସଂଗ୍ରାମୀ ମୁରଲୀଧର ଜେନାଙ୍କର ପରମ ବନ୍ଧୁ ଅନୁରାଗୀ ଥିଲେ।

ମୋ ଭଳି ଶିକ୍ଷିତ ଯୁବକମାନଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ। ତାଙ୍କର ବୋଧହୁଏ ଧାରଣା ଥିଲା ସୁଶିକ୍ଷିତ ଯୁବକମାନେ ଦେଶକୁ ସମୃଦ୍ଧ କରିବେ। ମୋ ଗାଁ'ଠାରୁ କିଛି ଦୂରରେ ଦେଉଳଡ଼ି ଗାଁ ପଡ଼ିଆ ଆରମ୍ଭରେ ଜଣେ ବଡ଼ ଋଷୀଙ୍କ ଘର। ସେ ଆମ ଗାଁ'ରୁ ଉଠିଯାଇ ପ୍ରଶସ୍ତ ଜମିରେ ବାଡ଼ିବଗିଚା ପୋଖରୀ ଘେର ଭିତରେ ଘରଟିଏ କରିଥିଲେ। ଏହି ଘର ମାଲିକଙ୍କର ପୁଅ ପୁତୁରା ଆମ ଗାଁ' ସ୍କୁଲରେ ପଢୁଥିଲେ। ମୋଠାରୁ ବଡ଼ ଏବଂ ମୋ ସହପାଠୀ ଦୁଇଜଣ ଉଚ୍ଚଶିକ୍ଷା ଲାଭ କରି ସ୍କୁଲ ଶିକ୍ଷକ ହୋଇଥିଲେ। ଗାଁ'ସ୍କୁଲର ପ୍ରାଥମିକ ଶ୍ରେଣୀର ଛାତ୍ର ଥିଲାବେଳେ ତାଙ୍କ ଘରକୁ ସରସ୍ୱତୀ ଠାକୁର ନେଇ ଗୁରୁଙ୍କ ସାଙ୍ଗରେ ଯାଉଁ। ଗୀତ ବୋଲୁ, ମୁଆଁ ଉଖୁଡ଼ା ଖାଇ ଆନନ୍ଦିତ ହେଉ। କିଶୋର ଅବସ୍ଥାରେ ସାଙ୍ଗ ଦଧିବାମନ ବିଶ୍ୱାଳକୁ ଦେଖା କରିବାକୁ ଯାଏ ଛୁଟିଦିନ ମାନଙ୍କରେ। ସୁନ୍ଦର ଘର, ଆମ୍ବ, ପଣସ, ବର, ଅଶ୍ୱତ୍ଥ, ନିମ୍ବ ଗଛ ଛାଇରେ ଆଚ୍ଛାଦିତ ଘରଟି ବେଶ୍ ଶାନ୍ତି ଦିଏ। ଏକୁଟିଆ ଘର, ଘରୁ ବାହାରକୁ ଆସିଲେ ବିସ୍ତୀର୍ଣ୍ଣ ଋଷ ଜମି। ଖରାବେଳେ ପ୍ରଚଣ୍ଡ ରୁଦ୍ରତାପର ଝଲକ ଝଂଜା ପବନ। ସନ୍ଧ୍ୟା, ସକାଳେ ଶୀତଳ ସୁଲୁସୁଲିଆ ପବନ, ରାତିରେ ଘନ ଅନ୍ଧାର ବା ମୁଲାଏମ ରୁପେଲି ଜହ୍ନ ଆଲୁଅ। ମନ୍ଦ ପବନ ଓ ରାକା ରଜନୀରେ ମନ ପ୍ରାଣ ତ ଫୁଲି ଉଠୁଥିବ। ପିଲାବେଳେ ଭାବୁଥିଲି ଏଠି ଅନ୍ଧାରରେ ଭୂତପ୍ରେତ ଚୋର ତସ୍କରର ଡ଼ର ଲାଗେ ନାହିଁ ନା ?

କିଶୋର ଓ ତରୁଣ ଅବସ୍ଥାରେ ଶାନ୍ତ ଛାୟାଛନ୍ନ ପରିବେଶକୁ ଦେଖି ମନେ ପଡ଼ିଯାଏ, ଡ଼ବ୍ଲ୍ୟୁ ବି ଇଏଟ୍ସ୍ କବିତା - 'ବଗିଚା କତିରେ' - ପ୍ରେମିକ-ପ୍ରେମିକାଙ୍କ ଭାବନା।

"ବଗିଚା କତିରେ
ମୁଁ ପ୍ରେମିକା ସହ ସାକ୍ଷାତ କଲି
ସେ ବଗିଚାରେ
ତା'ର ବରଫ ଶୁଭ୍ର ପାଦ ପକାଇ ଆସିଲା
କହିଲା - ପ୍ରେମକୁ ସହଜ ଭାବରେ ଗ୍ରହଣ କର।"

ଯେପରି ପତ୍ର କଅଁଳେ, ଗଛରେ, ମାତ୍ର ମୁଁ ଯୁବକ ଓ ବୋକା ଥିଲି ତେଣୁ ମୁଁ ଏକ ମତ ହେଲି ନାହିଁ ତା କଥାରେ।'

କିମ୍ବା ମନେ ପଡ଼େ ପ୍ରେମିକ କବି ମାନସିଂହଙ୍କ କବିତା -

'ଏହି ସହକାର ତଳେ,
ସେଦିନ ପ୍ରିୟାର
କରକଙ୍କଣ ଭିଡ଼ିଥିଲା ମୋର ଗଳେ।'

ସହପାଠୀ ଦଧିବାମନ ବିଶ୍ୱାଳ ଓ ତାଙ୍କର ବଡ଼ଭାଇ ମଧୁସୂଦନ ବିଶ୍ୱାଳ ଋକିରି ସହ ଋଷ ତଦାରଖ ମଧ କରନ୍ତି। ବାପ, ଘୋସାପଙ୍କ ଭଳି ଭଲ ଋଷୀ ରୂପେ ଜଣାଶୁଣା। ଦେଉଳଡ଼ି ଗାଁ'ର କମଳଲୋଚନ ନାୟକ ଷ୍ଟକ୍ଷକଦ୍ଧା କରନ୍ତି। ଗାଁ'ରେ ତାଙ୍କର ବେଶ୍ ପତିଆରା

ଅଛି। ଦେଉଳକ୍ଡ଼ି ପରବର୍ତ୍ତୀ ଗାଁ' ଖଡ଼ିମାହାରା ଗାଁ'ରେ ଗୋଟିଏ ହାଇସ୍କୁଲ ଏବେ ହୋଇଛି। ଧୁଷୁରୀରୁ ଏହି ଗାଁ' ପର୍ଯ୍ୟନ୍ତ ଭଲ ସଡ଼କ ଏବେ ହୋଇଗଲାଣି। ଯାତାୟତ ପୂର୍ବ ଭଳି କଷ୍ଟକର ନୁହେଁ। ଏହି ଗାଁ'ର ଗୋଟିଏ ପିଲା ମୋ ତଳ ଶ୍ରେଣୀରେ କୋଠାରରେ ମାଇନର ପଢୁଥିଲା। ପରେ ଶିକ୍ଷକ ହେଲା। କିଶୋର ବୟସରେ ଭଲ ନାୟିକା ଅଭିନୟ କରୁଥିଲା। ସୁନ୍ଦର ଚେହେରା, ଗୌରବର୍ଣ୍ଣ, ଲଳିତ ନାରୀସୁଲଭ କଣ୍ଠ। ଆମ ଗାଁ'ରେ ଅଭିନୀତ ହେଉଥିବା କାଳି ପଟ୍ଟନାୟକଙ୍କ ଜୟଦେବ ନାଟକରେ ସେ ପଦ୍ମା ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା। ଆମ ଗାଁ'ର ଯୁବକଟିଏ ଜୟଦେବ ହୋଇଥିଲେ। ସଚ୍ଚିଦାନନ୍ଦ ମହାନ୍ତି, ମେଧାବୀ ଛାତ୍ର। ସାମରିକ ବିଭାଗରୁ ଅବସର ନେଇ ଏବେ ଗାଁ'ରେ ରହୁଛନ୍ତି। ମୁଁ ଏହି ନାଟକରେ 'କୃଷ୍ଣ' ଅଭିନୟ କରୁଥିଲି। ଗୀତ ବୋଲୁଥିଲି। ପିଲାଟି ବେଳୁ କୃଷ୍ଣ ଅଭିନୟ କରି ଚରିତ୍ର ମୋର 'କୃଷ୍ଣ' ପାଇଟି ଗଲା କି ? ରାଧା ରୂପୀ ନାରୀମାନେ ମୋତେ ସହଜରେ ଆକର୍ଷି ନେଉଛନ୍ତି। ଏହି ଭାବ ଫୁଟି ଉଠିଛି କବିତାରେ। ତେଣୁ ଲେଖି ପକାଉଛି।

'କାହିଁ ସେ ବୁଝିବେ<br>
ତୁମେ ରାଧା ଅଂଜନାକ୍ଷୀ<br>
ମୁଁ ଚିର ତରୁଣ କୃଷ୍ଣ<br>
ପ୍ରଣୟ ବୈଶାଖୀ।'

ପ୍ରଣୟର ଅନ୍ତଃସଲିଳ ସ୍ରୋତ ମୋ ଭିତରେ ଚିର ପ୍ରବାହିତ। ଏହି ସ୍ରୋତର ଉତ୍ସ ବୋଧହୁଏ ସୌନ୍ଦର୍ଯ୍ୟ ପ୍ରତି ଆକର୍ଷଣ। ଏ ସୌନ୍ଦର୍ଯ୍ୟ ଦିଶିଯାଏ ମଣିଷ-ନାରୀଦେହରେ, ପ୍ରକୃତିର ବିଚିତ୍ର ଦୃଶ୍ୟରେ । ନଈର କୁଳୁକୁଳୁ ସ୍ୱନ ବିମୋହିତ କରେ। ଗାଁ' ଘରିପାଖେ ନଈନାଳ, ସବୁଜ ଗଛଲତା, ନାନା ଫୁଲଫଳ ପକ୍ଷୀର କାକଳି, ଶୀତଳ ଜଳର ଦରଦହରା ସ୍ପର୍ଶ ଶିହରଣ। ସେଇଥିପାଇଁ ରାଧାକୃଷ୍ଣଙ୍କଠାରୁ ଆରମ୍ଭ କରି ସବୁ ପ୍ରେମିକ ପ୍ରେମିକା ମିଳନ୍ତି ନଦୀ ତୀରରେ ବା ଘାଟରେ। ଇୟେଟସ୍‌ଙ୍କ ପ୍ରେମିକା ପ୍ରେମିକ କାନ୍ଧରେ ଶୁଭ୍ର ହାତ ରଖି ଆଉଜି ପଡ଼େ। କହେ- ଜୀବନକୁ ସହଜ ଭାବରେ ଗ୍ରହଣ କର, ଯେପରି ଘାସ କଅଁଳେ ନଦୀବନ୍ଧରେ। ଦେବଦେବୀମାନେ ବୋଧହୁଏ ସେଇଥିପାଇଁ ବାଛି ନିଅନ୍ତି ନଦୀକୂଳ। ରେବ ନଦୀ କୂଳର ନିର୍ଜନ ସ୍ଥାନରେ ଆବିର୍ଭୂତ ଦୁର୍ଗା, ନାହାକାଣୀ ରୂପରେ ଦୂରଦୂରାନ୍ତର ଲୋକ ପୂଜା କରନ୍ତି। ପ୍ରତିବର୍ଷ ମାଘ ସଂକ୍ରାନ୍ତିରେ ହୁଏ ବଡ଼ ଧରଣର ମେଳା। ମାଟିଗୁଡ଼ି କଣ୍ଟା କାଦୁଅ ନ ମାନି ଧାଇଁ ଯାଉଥିଲି ଯାତ୍ରା ଦେଖି ଏଠାକୁ।

(୨୧)

'Kind nature both require it so<br>
Friends should associate friends in grief and woe.'

— Shakespeare

ମଣିଷ ଏକ ସାମାଜିକ ପ୍ରାଣୀ, ତାର ଅଛି ହୃଦୟ, ଅଛି ମନ, ଆତ୍ମା ଏବଂ ସେ ପରମାତ୍ମାଙ୍କ ଅଂଶବିଶେଷ। ପ୍ରକୃତି ତାକୁ ଏପରି ଉପାଦାନରେ ଗଢ଼ିଛି ଯେ ସେ ଜନ୍ମ ହେବା ଠାରୁ ଋହେଁ ସ୍ନେହ ଆଦର ସଖ୍ୟ। ମାଟିରେ ପାଦ ଦେଇ ଚଲାବୁଲା ଖେଳାଖେଳି କଲାଠାରୁ ସେ ଲୋଡ଼େ ସାଥୀ, ଖେଳରେ ସାଙ୍ଗ, ପଢ଼ାରେ ସାଂଗ। ନିରୀକ୍ଷଣ କଲେ ଜଣାଯାଏ ପିଲାଟି ତାଠାରୁ ସାମାନ୍ୟ ବଡ଼ ବା ଏକା ବୟସର ପିଲାଙ୍କ ସଙ୍ଗରେ ଯେତେ ଅନ୍ତରଙ୍ଗତାର ସହ ମିଶିପାରେ ଏବଂ ମନ ଖୋଲି କଥାବାର୍ତ୍ତା କରିପାରେ ଏବଂ ଦୁନିଆଁ ବିଷୟରେ ସହଜରେ ଜ୍ଞାନ ଅର୍ଜନ କରିପାରେ ତା ବଡ଼ ମଣିଷଙ୍କ ସଂଗେ କରିପାରେ ନା କି ସେମାନଙ୍କ ଠାରୁ ଏତେ ଆଗ୍ରହରେ କିଛି ଶିଖେନା। ଲକ୍ଷ୍ୟ କରାଯାଏ ଯେ ସ୍କୁଲ କଲେଜରେ ସାଙ୍ଗମାନଙ୍କ ସଙ୍ଗେ ଆଲୋଚନା କରି ପ୍ରତ୍ୟେକ ଛାତ୍ରଛାତ୍ରୀ ବହୁତ ଉପକୃତ ହୁଅନ୍ତି। ଛାତ୍ରାବାସରେ ଏକତ୍ରବାସ କରି ଅନ୍ତେବାସୀ ମାନେ ସମାଜରେ ଅନ୍ୟ ସହ କିପରି ମିଳିମିଶି ଚଳିବାକୁ ହୁଏ ଶିଖନ୍ତି। ମିଳିମିଶି ଚଳିବାର ଜୀବନ, ବଂଧୁତାପୂର୍ଣ୍ଣ ଜୀବନ ମନକୁ ପ୍ରସାରିତ କରେ ହୃଦୟକୁ ଦରଦୀ କରେ ଏବଂ ପ୍ରାଣରେ ଆନନ୍ଦ ଉଲ୍ଲାସ ଭରିଦିଏ। ପିଲାମନରେ ଛଳନା ନ ଥାଏ, ସଂଦେହ ଅବିଶ୍ଵାସ ନ ଥାଏ। ତେଣୁ ପିଲାବେଳର ସାଥୀମାନେ ସ୍ଵତଃସ୍ଫୂର୍ତ୍ତ ଭାବେ ଖୋଲାହୃଦୟରେ ମିଶନ୍ତି ଏବଂ ସେ ସମୟର ସାଂଗ ସୁଖଜୀବନ ହୃଦୟରେ ରେଖାଙ୍କିତ ହୋଇ ରହିଯାଏ। ପରିଣତ ବୟସରେ ଅପ୍ରତ୍ୟାଶିତ ଭାବେ ଦୂରଜାଗାରେ ପିଲାବେଳର ସାଥୀମାନଙ୍କର ଭେଟ ହୋଇଗଲେ କିମ୍ବା କର୍ମଜୀବନରେ ଦୂରସ୍ଥାନରୁ ଗାଁ ବା ସହର ଜନ୍ମସ୍ଥାନକୁ ଆସି ସେମାନଙ୍କ ସହ ଦେଖା ସାକ୍ଷାତ ହେଲେ ଅତୀତର ମଧୁର ସ୍ମୃତି ଉଜ୍ଜୀବିତ ହୋଇଯାଏ। କେଡ଼େ ସୁନ୍ଦର ଲାଗେ ସେ ମୁହୂର୍ତ୍ତ। ପିଲାଦିନର ସାଥୀମାନଙ୍କ ମଧରେ ବଂଧୁତା ଶିକ୍ଷା ସାମାଜିକ ସ୍ଥିତିର ପ୍ରଭେଦ ଅତିକ୍ରମ କରି ଚିର ସବୁଜ ରହିଥାଏ।

ଏହି ମଧୁମୟ ବଂଧୁତାର ମଦିର ସ୍ମୃତି ଆଜି ଆସିଯାଉଛି ମନକୁ। କି ଭାଷାରେ ଅତୀତର ସେ ସାଙ୍ଗସାଥୀ, ଖେଳଓ୍ଵାଡ଼ କୌତୁକପୂର୍ଣ୍ଣ ଜୀବନ ବର୍ଣ୍ଣନା କରିବି।

ଆମ ଘରଟି ମାଝୀ ସାହିରେ । ଘରର ଋରିପଟେ ମାଝୀ ବା କେଉଟମାନଙ୍କ ଘର। ଘରଠାରୁ କିଛି ଦୂରରେ ସାହିମୁଣ୍ଡରୁ ଖଣ୍ଡାୟତ ଘରଟିଏ। ଘର ସାମ୍ନାରେ ଦୁଇଟି ଖଣ୍ଡାୟତ ପରିବାର। ଗୋଟିଏ ପରିବାରରେ ପିଲା କେତେଗୁଡ଼ିଏ ଝିଅ ପୁଅ, ଅନ୍ୟ ପରିବାରରେ ଗୋଟିଏ ମାତ୍ର ଝିଅ ଥାଏ ମୋଠାରୁ ୫/୬ ବର୍ଷ ସାନ। ସାହି ମୁଣ୍ଡରେ ଯେଉଁ ଖଣ୍ଡାୟତ ଘରଟି, ସେ ଘରର ମାଆ ବିଧବା, ତାଙ୍କର ଦୁଇଟି ପୁଅ। ଗୋଟିଏ ମୋ ଠାରୁ ଯଥେଷ୍ଟ ବଡ଼, ତରୁଣ, ଅନ୍ୟଟି ମୋଠାରୁ ୩/୪ବର୍ଷ ବଡ଼। ସେ ଗାଁ ସ୍କୁଲରେ ପାଠ ପଢୁଥାଏ। ଏବେ ସେ ବଂଚିଛନ୍ତି, ନାମ ତାଙ୍କର ଉଦୟ ନାୟକ। ମୁଁ ଓ ମୋର ବଡ଼ ଭଉଣୀ ତା ସଂଗରେ ସ୍କୁଲକୁ ଯାଉଁ। ସେ ତ ମୋଠାରୁ ବଡ଼। ତା ସଂଗରେ ମୋର ଖେଳା ଧୂଳା ହୁଏନି। ନିମ୍ନ ପ୍ରାଥମିକ ସ୍କୁଲ ପଢ଼ା ସାରି ସେ ମୋ ବାପାଙ୍କ ସଂଗରେ କଲିକତା ଯାଇ ଆମ ଦୋକାନରେ କାମ କଲେ। କିଛି ବର୍ଷ ପରେ କଲିକତାରେ ଗୋଟିଏ ପାନ ଦୋକାନ କରି ବେଶ୍ ଅର୍ଥ

ଉପାର୍ଜନ କରି ସୁଖରେ ରହିଛନ୍ତି ପୁଅବୋହୂଙ୍କୁ ନେଇ। ତାଙ୍କର କଲିକତା ଦୋକାନଟି ଚଳାଉଛି ପୁଅ। ସେ ମୋଠାରୁ ବଡ଼। ମାତ୍ର ମୋତେ ଖୁବ୍ ସ୍ନେହ ଶ୍ରଦ୍ଧା କରନ୍ତି। ଆମ ଗାଁର ଜଣେ ଉଚ୍ଚଶିକ୍ଷିତ ଲୋକ ଭାବେ ଏବଂ ସାହିର ମେଳାପୀ ଏବଂ ଶାନ୍ତଶିଷ୍ଟ ଲୋକ ରୂପେ ମୋର ସ୍ଥାନ ସେମାନଙ୍କ ନିକଟରେ ସବୁ କାଳେ ସ୍ୱତନ୍ତ୍ର। ତେଣୁ ଏବେ ଗାଁକୁ ଗଲେ ଉଦୟ ଭାଇ ଖବର ପାଇ ଆମ ଘରକୁ ଆସି ଘଣ୍ଟା ଘଣ୍ଟା ଆଳାପ ଆଲୋଚନା କରନ୍ତି।

ଆମ ଘରର ଠିକ୍ ସାମନାକୁ ଦୁଇଟି ବଡ଼ ମାଝୀ ପରିବାର। ସେ ଦୁଇ ପରିବାରର ଦୁଇଟି ପିଲା ସ୍କୁଲରେ ପଢୁଥିଲେ। ମୋ ଠାରୁ ବର୍ଷେ ଦୁଇବର୍ଷ ବଡ଼ ହେବେ। ଜଣଙ୍କର ନାମ ପାଗଳ ମାଝୀ ଓ ଅନ୍ୟଟିର ନାମ ଦୟାନିଧି ମାଝୀ। ସେମାନଙ୍କ ସହିତ ମୁଁ ଖେଳାଖେଳି କରେ। ମାତ୍ର ସେପରି ଘନିଷ୍ଠ ବନ୍ଧୁତା ନ ଥିଲା ପିଲାବେଳେ। ନିମ୍ନ ପ୍ରାଥମିକ ପାଠ ଶେଷ କରି ବା ତାପୂର୍ବରୁ ସେ ଦୁହେଁ ଚାଲିଗଲେ କଲିକତା ମାଛଚାଷ ଓ ମାଛ ବ୍ୟବସାୟରେ ଅଂଶ ଗ୍ରହଣ କରିବାକୁ। ପାଗଳାର ଜନ୍ମ ଅନ୍ୟ ଗାଁରେ। ମାଆ ମଲା ପରେ ଅଜା ନିଧିମାଝୀ, ଆମ ପଡ଼ୋଶୀ, ତାକୁ ପୁଅ କରି ଆଣିଥିଲେ। କିଛି ଜମି ଦେଇ ତାକୁ ଥଇଥାନ କରିଥିଲେ। ଆମ ଘରକୁ ଲାଗି ଗୋଟିଏ ଢ଼ିଅରେ ସେ ଘର କରି ବୈବାହିକ ଜୀବନ ବିତାଇ ଥିଲା। ପାଗଳାର ଚେହେରା ବେଶ୍ ସୁନ୍ଦର, ତରୁଣ ଜୀବନଟି ବେଶ୍ ସୁରୁଖୁରୁରେ ପ୍ରବାସୀ କଲିକତିଆର ସ୍ୱାଭାବିକ ବିଳାସବ୍ୟସନରେ କଟିଯାଇଥିଲା। ମାତ୍ର ୧୯୭୦ଠାରୁ କଲିକତାରେ ବାମପନ୍ଥୀମାନଙ୍କ ପ୍ରଭାବ ବଢ଼ିବା ଦିନରୁ ମାଛଚାଷ ଓ ବ୍ୟବସାୟ ଓଡ଼ିଆଙ୍କ ଠାରୁ ହସ୍ତାନ୍ତରିତ ହେଲା ପୂର୍ବ ପାକିସ୍ତାନୀ ରିଫ୍ୟୁଜି ବଂଗାଳିଙ୍କ ହାତକୁ। ଫଳରେ ଆମ ସାହିର ମାଝୀମାନଙ୍କର ଦୁର୍ଗତି ଆରମ୍ଭ ହେଲା। ଦୈହିକ ପରିଶ୍ରମ କରି ପିଲା ଚାରିଟିକୁ ନେଇ ଦୁଃଖେ ସୁଖେ ଚଳି ଯାଉଥିଲା ପାଗଳା। ଝିଅ ପୁଅମାନେ ବାହା ହୋଇ ଦୂରେଇ ଗଲେ। ପାଗଳାର ବଳ ଛଟିଲା, ପାଗଳାର ସ୍ତ୍ରୀଟି ମୋ ନୂଆ ବୋଉ ଠାରୁ ସାମୟିକ ସାହାଯ୍ୟ ନିଏ, କିଛି କାମ କରିଦିଏ ଆମ ଘରର। ପାଗଳା ମୋତେ ଦାଦା ଡ଼ାକେ। ବାର୍ଦ୍ଧକ୍ୟଭତ୍ତା କରି ଦେବାକୁ କହେ। ମୁଁ ଏ ଦିଗରେ ବିଶେଷ ସାହାଯ୍ୟ କରି ପାରି ନଥିଲି। ମୋର ଶ୍ରଦ୍ଧେୟ ସମର୍ଥିତ ଲୋକ ପ୍ରତିନିଧି ତା ପାଇଁ କିଛି କରି ନଥିଲେ। ମାତ୍ର ମଝିରେ ମଝିରେ ମୁଁ ପାଗଳାକୁ ସାହାଯ୍ୟ ପଠାଏ। ସେଥିରେ ସେ କେତେ ଯେ ଖୁସି। ବର୍ଷେ ହେଲା ସେ ଇହଧାମ ଛାଡ଼ି ଚାଲିଗଲାଣି। ମୋ ଘର କାନ୍ଥକୁ ଲାଗି ରହିଥିବା ମୋର ବାଲ୍ୟସାଥୀର ଦୁରବସ୍ଥା ମୋ ପାରିବାପଣ ତଥା ଆମ ଅର୍ଥନୈତିକ ବିକାଶକୁ ଉପହାସ କରିଚାଲୁଥିଲା, କରୁଛି ତାର ସ୍ମୃତି। ପାଗଳ ମାଝୀର ସମବୟସ୍କ ଅନ୍ୟ ସାଥୀ ଦୟାନିଧି ମାଝି ଏବେ ବି ଜୀବିତ। ତାର ୩ଟି ବଡ଼ ଭାଇ ଥିଲେ, ହରି ମାଝୀ ଭିକାରୀ ମାଝୀ, ଗଙ୍ଗା ମାଝୀ, ଭିକାରୀ ମାଝୀଙ୍କ ସ୍ତ୍ରୀ ମୋ ବୋଉର ଧରମ ଝିଅ ଥିଲା। ଦ୍ୱିତୀୟା ନାନୀ, ନିଜ ଭଉଣୀ ଭଳି ମୋତେ ଖୁବ୍ ସ୍ନେହ କରେ, ମୋ ନୂଆବୋଉଙ୍କ ସହ ତାର ଘନିଷ୍ଠ ସଂପର୍କ। ତାର ବଡ଼ପୁଅ ହୃଷି ମୋଠାରୁ ୪/୫ ବର୍ଷ ସାନ, ମୋ ସାଂଗ ଛାଡ଼େନା, କୋଠାର ମାଇନର ସ୍କୁଲ କିମ୍ବା ଭଦ୍ରକ ହାଇସ୍କୁଲରେ ମୁଁ ପଢୁଥିଲାବେଳେ

ଛୁଟିଦିନମାନଙ୍କରେ ମୁଁ ହଷ୍ଟେଲ୍‌ରୁ ଗାଁକୁ ଆସିଲେ ସେ ଅତ୍ୟନ୍ତ ଖୁସି ହୁଏ। ଅନବରତ ସେ ସଂଗରେ ବୁଲାଚଲା ଖେଳା ଖେଳି କରେ। ନଈ ପହଁରାରେ ସେ ଥିଲା ଧୂରନ୍ଧର। ଦଶବାରବର୍ଷ ବୟସରେ ବନ୍ୟାବେଳେ ନଈର ପ୍ରଖର ସୁଅରେ ସେ ଅବଲୀଳା କ୍ରମେ ନଈପାର ହୁଏ ଏବଂ ବେଶ୍ କିଛି ଦୂର ପହଁରି ପହଁରିଯାଏ। କିଶୋର ବୟସରେ ତାର ଅଭନକ ମୃତ୍ୟୁ ହୁଏ। ତାର ବିୟୋଗ ମୋତେ ଦାରୁଣ ଦୁଃଖ ଦେଇଥିଲା। ତାର ଦାଦା ମୋର ସାଙ୍ଗ ଦୟାନିଧି, ହତଭାଗା, ବିବାହ କଲା, ମାତ୍ର ସଂତାନର ବାପା ହେବାର ସୌଭାଗ୍ୟ କି ସାମର୍ଥ୍ୟ ତାର ନ ଥିଲା। ଭାଇର ପୁଅକୁ ପୋଷ୍ୟପୁତ୍ର କରି ସେ ସୁଖରେ ଅଛି। ପୋଷ୍ୟ ପୁଅଟି ପାଠ ପଢ଼ି ସୈନ୍ୟ ବିଭାଗରେ କାମ କରୁଛି। ସ୍ତ୍ରୀର ଦେହାନ୍ତ ହୋଇଯାଇଛି। ବୟସ ବେଳେ ମନଦୁଃଖରେ ସେ ତାର ଯାଆଙ୍କ ନିକଟରେ କହିବାର ଶୁଣାଯାଏ। "ନାନୀ ମୋ ଜୀବନରେ ଆଉ କି ସୁଖ ଅଛି, ତୁମ୍ଭମାନଙ୍କ ମୁହଁକୁ ଚାହିଁ ବଂଚିଛି"। ମୋର ପିଲାବେଳେ ଦୟାନିଧି ଓ ତାର ଭରିଭାଇଙ୍କୁ ନେଇ ବହୁ କଷ୍ଟରେ ତାଙ୍କର ମାଆ ପରିବାରକୁ ଚଳାଉଥିଲା। ମାତ୍ର ବୟସ ବୃଦ୍ଧି ସଂଗେ ସଂଗେ ଭରିଭାଇ କଲିକତାରେ ମାଛ ଭଷରେ ଖଟି ଏବଂ ନିଜେ ମାଛ ବ୍ୟବସାୟ କରି ସ୍ୱଚ୍ଛଳ ହୋଇ ଯାଇଥିଲେ। ଏକ ବଡ଼ ଏକାନ୍ନବର୍ତ୍ତୀ ପରିବାର ଭରିଭାଇ ଭରିବୋହୂଙ୍କୁ ନେଇ ବହୁ ବର୍ଷ ପର୍ଯ୍ୟନ୍ତ ସୁରୁଖୁରୁରେ ଚଳି ଯାଉଥିଲା। ଏବେ ସେ ଏକାନ୍ନବର୍ତ୍ତୀ ପରିବାର ନାହିଁ। ଭାଇମାନେ ଭିନ୍ନ ହୋଇ ନିଜ ନିଜ ବାଟରେ ସଂସାର ଚଳାଇ ବିଦାୟ ନେଇ ଯାଇଛନ୍ତି ଇହଧାମରୁ ଦୟାନିଧିଙ୍କୁ ଛାଡ଼ିଦେଇ। ଦୟାନିଧିର ଠିକ୍ ଉପର ବଡ଼ଭାଇର ସ୍ତ୍ରୀ ରୋଗ ଯନ୍ତ୍ରଣାରେ ବଂଚିରହିଛି ତାର ସୁନ୍ଦର ଗୌରବର୍ଣ୍ଣ ଦେହ ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲାଣି। ତାର ସବାବଡ଼ ଯାଆ, ଗେହ୍ଲା ନାନୀ କେତେ ବର୍ଷ ହେଲା ଚାଲିଗଲାଣି। ସେ ବି ଥିଲା ଗୌରବର୍ଣ୍ଣା, ସ୍ୱାସ୍ଥ୍ୟବତୀ ସୁନ୍ଦରୀ। ତାରୁଣ୍ୟାବସ୍ଥାରେ ପାଖ ଖଣ୍ଡାୟତ ଘରର ଯୁବକ ଦିଅର ତା ସଂଗେ ଥଟ୍ଟା ତାମସା କରିବାର ଝାପ୍‌ସା ଚିତ୍ର ଏବେ ବି ମୋର ସ୍ମୃତିପଟରେ ଭାସିଯାଉଛି। ମାଝୀ ଘର ବୋହୂ, ମାତ୍ର ପୁରାଣର ମତ୍ସ୍ୟକନ୍ୟା ଭଳି ସୁନ୍ଦରୀ, ସ୍ନେହୀ, ସୁରସିକା। ମୁଁ ସମ୍ବଲପୁରରେ ଚାକିରି କରୁଥିଲାବେଳେ ଦୀର୍ଘ ଛୁଟିରେ ଘରକୁ ଆସି ଫେରିଲା ବେଳେ ପାଖରେ ଟଙ୍କା ନଥିଲେ ଦୟାର ଏହି ଦୁଇ ନୂଆବୋହୂଙ୍କ ଠାରୁ ଧାର ନିଏ। କିଛି ସୁଧ ସହ କଲେଜରୁ ଟଙ୍କା ପଠାଇଦିଏ। ମୋର ପାଠୋଇ ସ୍ତ୍ରୀକୁ ସେମାନେ କେତେ ଯେ ସ୍ନେହ, ଶ୍ରଦ୍ଧା କରନ୍ତି ବର୍ଣ୍ଣନା କରି ହେବନି। ତାଙ୍କ ଦୃଷ୍ଟିରେ ମୋର ସ୍ତ୍ରୀ ଏକ ଆଦର୍ଶ ଶିକ୍ଷିତା ନାରୀ। ଗେହ୍ଲା ନାନୀର ଗୋଟିଏ ପୁଅ, କାଳିଆ। ମୋର ବଡ଼ପୁଅ, ବାବୁଲା ଶୈଶବାବସ୍ଥାରେ ଗାଆଁକୁ ଗଲେ ତାକୁ ସେ ଆଦରରେ ଧରିବୁଲେ। ମୋର ସୁଶ୍ରୀ ଗୋରା ପୁଅ ତା ସାଂଗ ଛାଡ଼େନା। ସ୍ନେହ ପାଖରେ ନଥାଏ କଳା ଗୋରାର ବିଚାର। ଏମାନଙ୍କ ସହ ମୁଁ ମିଶୁଥିଲେ ହେଁ ଅତି ଅନ୍ତରଂଗ ଖେଳ ସାଥୀ ଥିଲେ, ଆମ ସାହିର ନନ୍ଦକିଶୋର ମାଝୀ, ପାଗଳ କୁଅଁର, ଅନ୍ୟ ସାହିର ଭଗବାନ ନାୟକ ଓ ଗୋପାଳ ପ୍ରସାଦ ମହାନ୍ତି। ଭଗବାନ ଗୋପଳ ଓ ମୁଁ ଏକା ଶ୍ରେଣୀରେ ପଢୁଥିଲୁଁ। ନନ୍ଦ,ପାଗଳ ତଳ ଶ୍ରେଣୀରେ। ବାଗୁଡ଼ି ବୋହୂବାଗୁଡ଼ି, ତାଆସ ଖେଳରେ

ମୁଁ ବହୁ ସମୟ କଟାଇ ଦେଉଥିଲି ଏମାନଙ୍କ ସଂଗରେ। ଯାନିଯାତରା ଦେଖି ଯାଉଥିଲି ଧୁଷୁରୀହାଟକୁ ବୁଲିଯାଇ ମଉଜ ମଜଲିସ୍ କରୁଥିଲି ଏମାନଙ୍କ ସଂଗରେ। ଊନବିଂଶ ଦଶକର ମଧ୍ୟ ଭାଗରୁ ପଞ୍ଚଶ ଦଶକର ଶେଷ ଭାଗ ପର୍ଯ୍ୟନ୍ତ। ନନ୍ଦର ପରିବାର ଆମ ଗାଁରେ ସମ୍ଭବତଃ ସବୁଠୁ ଧନୀ ଥିଲା। ତାର ବାପା, ବଡ଼ ବାପା ଓ ସାନବାପା, ଅନାମମାଝୀ, ପତି ମାଝୀ, ବିଷ୍ଣୁ ମାଝୀ କଲିକତାରେ ପୋଖରୀ ଓ ଆଡ଼ି ଲିଜ୍ ନେଇ ମାଛ ଚାଷ କରି ପ୍ରଚୁର ଧନ ଉପାର୍ଜନ କରୁଥିଲେ। ତାଙ୍କର ଧନ ସଂପଦ ବାରି ହୋଇଯାଉଥିଲା ପ୍ରକାଣ୍ଡ ଟିଣ ଛାତ ଘର ଓ ପକ୍କାପିଣ୍ଡାରୁ। ପ୍ରତ୍ୟେକ ବର୍ଷ ସରସ୍ୱତୀପୂଜାରେ ତିନିରାତି ଯାତ୍ରା କରନ୍ତି ବିଷ୍ଣୁ ମାଝୀ ପରିବାର। ଅଇଁଠୁ ମାଝୀ ରୂପାନ୍ତରିତ ହୋଇ ବିଷ୍ଣୁ ମାଝୀ ରୂପେ ଗାଁରେ ସମ୍ମାନ ପାଉଥିଲେ ଧନବଳରେ। ଏହି ପରିବାରର ସାନ ଭାଇ ବିଷ୍ଣୁ ମାଝୀର ବୁଦ୍ଧି, ବ୍ୟବହାର ଓ ଭାଗ୍ୟ ବଳରେ ଅନ୍ୟଭାଇମାନେ ମଧ୍ୟ ସମୃଦ୍ଧ ହୋଇଥିଲେ। ଏକଦା ବିଷ୍ଣୁ ମାଝୀର ବଡ଼ ପୁଅ ଧନେଶ୍ୱର ହାଇସ୍କୁଲ ପଢୁଥିଲାବେଳେ ଅର୍ଥବଳରେ ଲଣ୍ଡନ ଯିବାର ସ୍ୱପ୍ନ ସେ ଦେଖୁଥିଲା ବା ତା ବାପା ଦେଖୁଥିଲେ ତା ପାଇଁ। ଧନେଶ୍ୱରକୁ ଦେବୀ ସରସ୍ୱତୀ ସହାୟ ହୋଇ ନ ଥିଲେ। ମେଟ୍ରିକ୍ ପାଶ୍ କରି ନ ପାରି ଗାଁରେ ରହି ଯାତ୍ରା ଦଳ କରି ଓ ବିଭିନ୍ନ ପ୍ରକାର ଅଯସରେ ଧନସଂପତ୍ତି ବିନିର୍ବ୍ୟୟ କଲା। "ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକିର" ନ୍ୟାୟରେ ଏହି ଧନୀ ପରିବାରଟି ଛିନ୍ନଛତ୍ର ହୋଇଗଲା। ଧନେଶ୍ୱର ବେଶ ଭଦ୍ର ମେଳାପୀ। ଏହି ଗୁଣରେ ସେ ଆମ ପଞ୍ଚାୟତର ସରପଞ୍ଚ ହୋଇଥିଲା। ଗାଁର ଉନ୍ନୟନ କାର୍ଯ୍ୟରେ ସେ ଆନ୍ତରିକତାର ସହ ଲାଗିପଡ଼େ। ଅତୀତର ଧନାଢ଼୍ୟ ଅବସ୍ଥାର ମୂକ ସାକ୍ଷୀ ରୂପେ ଦଣ୍ଡାୟମାନ ତାଙ୍କ ଅବକ୍ଷୟମାନ ପ୍ରକାଣ୍ଡ ଘରଟି। ଧନେଶ୍ୱରର ମଝିଆଁ ବାପାଙ୍କ ପୁଅ, ନନ୍ଦିକିଶୋର ଥିଲା ମୋର ଅନ୍ତରଂଗ। ଆମ ଘରର ବାଡ଼ିପଛ ପାଖ ଗାଡ଼ିଆକୁ ଲାଗି ତାଙ୍କର ପୁରୁଣାଘର ପୁର୍ନନିର୍ମିତ ଓ ଦୀର୍ଘାୟିତ। ବହୁ ସମୟରେ ମୁଁ ସେ ଘରେ ନନ୍ଦ ସଂଗରେ ଖେଳେ। ତାଙ୍କ ବାଡ଼ି ଜାମ୍ବଗଛ ଓ ପିଜୁଳି ଗଛର ଫଳ ମିଶି ଖାଉଁ। ନନ୍ଦ ମୋତେ ଦାଦା ଡ଼ାକେ। ନନ୍ଦର ବାପା ପଣା ସଂକ୍ରାନ୍ତି - ବୈଶାଖ ମାସରେ କାଳିସୀ ଲାଗେ। ସେ କେତୋଟି ଦିନରେ ତାଙ୍କର ସମ୍ମାନ ବଢ଼ିଯାଏ। ଧନେଶ୍ୱରର ବୋଉ ସୁନ୍ଦରୀ ଏବଂ ରସିକାଣୀ। ମାତ୍ର ମାନସିକ ଚିନ୍ତାରେ ବ୍ୟଥିତ ଥାଏ। କାରଣ ସ୍ୱାମୀ ବିଷ୍ଣୁ ମାଝୀ ଗାଁରେ ଧନସଂପତ୍ତି ବଢ଼ାଇ ଏମାନଙ୍କର ମର୍ଯ୍ୟାଦା ବୃଦ୍ଧି କରି ଦେଇଥିଲେ ହେଁ, ସେକାଳର ସଂଭ୍ରାନ୍ତ ବଂଶର ଧନୀ ଜମିଦାର ପରି କଲିକତାରେ ଜଣେ ଦୁଇଜଣ ରକ୍ଷିତା ରଖିଥାଏ। ପରିଣାମରେ ଧନେଶ୍ୱର ବୋଉ ସ୍ୱାମୀ ସୁଖରୁ ବର୍ଷସାରା କେବଳ ସରସ୍ୱତୀ ପୂଜା ଛଡ଼ା, ବଂଚିତ ରହେ ଏବଂ ଗାଁ ସ୍ତ୍ରୀ ଲୋକଙ୍କର ଥଟ୍ଟା ପରିହାସର ଶିକାର ହୁଏ। କେତେ ବ୍ୟଥିତ ଚିତ୍ତରେ ମୋ ହାତରେ ସେ ଚିଠି ଲେଖି ପଠାଏ କାକୁତିମିନତି କରି ସ୍ୱାମୀକୁ ଆସିବାକୁ, ରକ୍ଷିତାକୁ ଛାଡ଼ିଦେବାକୁ। ନିମ୍ନ ପ୍ରାଥମିକ ଛାତ୍ର ଲେଖକ ମନରେ ସେତେବେଳେ କି ଭାବ ଜାତ ହେଉଥିଲା ମୋର ମନେ ନାହିଁ, ମାତ୍ର କିଶୋର ଓ ତରୁଣ ଅବସ୍ଥାରେ ଏ କଥା ମନେ ପକାଇ ମୁଁ ସଂବେଦନଶୀଳ ହେବା ସଂଗେ ସଂଗେ ନାରୀ ପ୍ରେମର

ଆଭାସରେ ରୋମାଞ୍ଚିତ ହେଉଥିଲି। ନନ୍ଦର ଜୀବନ ବାର୍ଦ୍ଧକ୍ୟ ଅବସ୍ଥାରେ ବିଶେଷ ସୁଖମୟ ନଥିଲା। ଅଭାବର ତାଡ଼ନାରେ ବ୍ୟତିବ୍ୟସ୍ତ ହେଉଥିଲା ତାର ଜୀବନ। ସହାନୁଭୂତି ଦେଖାଇବା ବ୍ୟତୀତ ଅନ୍ୟ କିଛି କରିବାର ମୋର ଉପାୟ ନଥିଲା। ନନ୍ଦ ଆଉ ଇହଧାମରେ ନାହିଁ । ଛାଡ଼ି ଯାଇଛି ମୋ ନିକଟରେ ଅଭୁଲା ସ୍ମୃତି।

ହଁ ଅନ୍ୟ ଜଣେ ଅନ୍ତରଂଗ ବାଲ୍ୟବଂଧୁ ହେଉଛି ଗୋପାଳ ପ୍ରସାଦ ମହାନ୍ତି। ଏକ କ୍ଷୟିଷ୍ଣୁ କରଣ ଜମିଦାର ପରିବାରର ସନ୍ତାନ। ତିନିଭାଇ ସେମାନେ। ବଡ଼ ଭାଇ କଲିକତାରେ କେଉଁ ବଂଗାଳି ବାବୁଙ୍କ ଘରେ ପ୍ରଥମେ କାମ କରି ନିଜ ବ୍ୟବହାରରେ ତାଙ୍କୁ ପ୍ରଭାବିତ କରି ଜେମ୍‌ସ ଫିନ୍‌ଲେ କଂପାନୀରେ ନିଯୁକ୍ତି ପାଇଥିଲେ। ବଡ଼ ଭାଇ ବାଳକୃଷ୍ଣ ମହାନ୍ତି ବେଶ୍ ଭଦ୍ର ଉଚ୍ଚମନା ଓ ଶ୍ରଦ୍ଧାଶୀଳ। ଗାଁର ସ୍କୁଲ ଓ ପାଠାଗାର ସ୍ଥାପନ ପାଇଁ ପ୍ରତ୍ୟେକ କାର୍ଯ୍ୟରେ ସେ ମୋତେ ଅକୁଣ୍ଠିତ ମନରେ ସାହାଯ୍ୟ କରିଛନ୍ତି। କଲିକତାରେ ଘରଟିଏ କରି ବର୍ଷର କିଛି ଦିନ ସେଠାରେ ରହନ୍ତି। ମୁଁ ପିଲା ଥିଲାବେଳେ ତାଙ୍କର ଅବସ୍ଥା ଭଲ ନ ଥିଲା। ସହପାଠୀ ଗୋପାଳକୁ ମୁଁ ବହିଖାତା କଲମ ଆଦି ସାହାଯ୍ୟ କରେ। ସେ ମେଟ୍ରିକ ପାଶ୍ କରି ପ୍ରଥମେ ସ୍କୁଲ ଶିକ୍ଷକ ଓ ପରେ ଜିଲ୍ଲା ଅଫିସ୍ କିରାଣୀ ହେଲା। ପୁଅଟି କୃଷିବିଜ୍ଞାନରେ ପାଶ୍ କରି ଜଣେ ଅଫିସର। ଗୋପାଳର ତିନିଭାଇଙ୍କ ପରିବାର ବେଶ୍ ସୁଖରେ ଅଛନ୍ତି ପୃଥକ ହୋଇ।

ଅନ୍ୟ ଏକ ପ୍ରିୟ ସାଥୀ ଥିଲା ଭଗବାନ ନାୟକ। ତାକୁ ମୁଁ ଭଗିଆମୁ ବୋଲି ଡାକୁଥିଲି। ତାର ବାପା ଦାଶରଥି ନାୟକ ଆମ ଗାଁର ଜ୍ୟୋତିଷ, ମୋ ବୋଉର ଧରମ ବାପା, ତାଙ୍କର ବଡ଼ପୁଅ ପୁରୀ ସଦାଶିବ ସଂସ୍କୃତ ମହାବିଦ୍ୟାଳୟରୁ ଜ୍ୟୋତିଷ ଶାସ୍ତ୍ରରେ ଶାସ୍ତ୍ରୀ ପାଶ୍ କରି ଧୁଷୁରୀ ହାଇସ୍କୁଲରେ ସଂସ୍କୃତ ଶିକ୍ଷକ ଥିଲେ। ସେ ମୋଠାରୁ ଛଅ ପାଞ୍ଚବର୍ଷ ବଡ଼। ତେବେ ମୁଁ କଲେଜରେ ପଢ଼ିଲାଠାରୁ ମୋ ସଂଗରେ ମିଶୁଥିଲେ। ସ୍କୁଲ ପାଠାଗାର ସ୍ଥାପନ କରିବା କାର୍ଯ୍ୟରେ ମୋତେ ଅକୁଣ୍ଠିତ ସାହାଯ୍ୟ କରୁଥିଲେ। କିଛି ବର୍ଷ ପାଇଁ ଆମ ଗାଁ ମାଇନର ସ୍କୁଲର ସେକ୍ରେଟାରୀ ଥିଲେ। ରାଜନୈତିକ ମତଭେଦ ଯୋଗୁଁ ପରବର୍ତ୍ତୀକାଳରେ ମୋ ଠାରୁ ଦୂରେଇ ଗଲେ। ପୂର୍ବର ଘନିଷ୍ଠ ବଂଧୁତା ରହିଲାନି ମାତ୍ର ବୈରତା ନ ଥିଲା। ତାଙ୍କୁ ମୁଁ ଭଜମାମୁ ବୋଲି ଡ଼ାକୁଥିଲି ଏବଂ ଶ୍ରଦ୍ଧା ସମ୍ମାନ କରୁଥିଲି। ତାଙ୍କ ସହିତ ଓ ତାଙ୍କର ସାନଭାଇ ସହିତ ମୁଁ ଗ୍ରୀଷ୍ମାବକାଶ ଓ ପୂଜାବକାଶରେ ତାଆସ ଖେଳରେ ମାତିଯାଏ। ତାଙ୍କ ବାପା ଦାଶିଆ ଅଜା ମୋତେ ଅତି ସ୍ନେହ କରୁଥିଲେ। ରଜ ସମୟରେ କେତେ ଆଦରରେ ଡାକି ମୋତେ ପୋଡ଼ପିଠା ଖୁଆଇ ଥିଲେ। ପିଠିରେ ତାଙ୍କର ଗୋଟିଏ ଆବୁଥାଏ। କାନ୍ଧରେ ଗଣ୍ଠିଲିଟିଏ ପକାଇ ଆମ ଗାଁ ଓ ପାଖ ଗାଁ ବମ୍ଭୁକୁରା ଯଜମାନ ଘରମାନଙ୍କୁ ଯାଇ ନାନାଦି ପୂଜାର୍ଚ୍ଚନା କାର୍ଯ୍ୟରେ ପୁରୋହିତଙ୍କ ସହ କାର୍ଯ୍ୟ କରି ଏବଂ ଜାତକ ଦେଖି, ଯାହା କିଛି ରୋଜଗାର କରୁଥିଲେ ସେଥିରେ ନିଜ ପରିବାର ଚଳାଇ ବଡ଼ପୁଅକୁ ପୁରୀରେ ପାଠ ପଢ଼ାଇ ପାରିଥିଲେ। ତାଙ୍କ ପରି ଜଣେ ନିର୍ବିବାଦୀ ପରହିତୈଷୀ ଲୋକ ମୋ ଜାଣିବାରେ ବିରଳ ଥିଲେ। ପ୍ରାଇମେରୀ ସ୍କୁଲଠାରୁ ହାଇସ୍କୁଲ ଛାତ୍ର ଥିବା ପର୍ଯ୍ୟନ୍ତ ଭଗିଆମୁ ସଂଗେ ମିଶି ଭୋଜି କରି

ଗାଁ ସ୍କୁଲ ଘରେ ଲଣ୍ଠନ ଆଲୁଅରେ ଖାଇବା ଏବଂ ମଜା ଗପସପ ହେବାର ଆନନ୍ଦ ଆଜି ମାନସପଟରେ ଭାସି ଯାଇ ଏକ ଅଭୂତ ଶିହରଣ ତୋଳୁଛି । ତରୁଣାବସ୍ଥାରୁ ଅନେକବର୍ଷ ପର୍ଯ୍ୟନ୍ତ ଗ୍ରୀଷ୍ମଛୁଟିରେ, ଭଜମାମୁଁ ଏବଂ ଧୁସୁରା ହାଇସ୍କୁଲର ଓ ଆମ ଗାଁ ସ୍କୁଲର ଶିକ୍ଷକ ସୀତାକାନ୍ତ ନାୟକ, ବିମଳାନନ୍ଦ ସାହୁ, ଭକ୍ତହରି ନାୟକ, ଆନନ୍ଦ ଜେନା -ହେରିକାଙ୍କ ସହ ମିଶି ଭୋଜି କରି ମଧୁମୟ ରାତି ବିତାଇବାର ସ୍ମୃତି ଏବେ ବିଭୋର କରୁଛି ।

ବୟସ ବୃଦ୍ଧି ସଂଗେ ସଂଗେ ଜୀବନଜଞ୍ଜାଳ ବଢ଼ିଚାଲିଲା । ଗାଁଠାରୁ ଦୂରରେ ରହି ଚାକିରି ଜୀବନରେ ଗାଁ ସାଥୀଙ୍କ ସଂଗେ ନିବିଡ଼ ସଂପର୍କ ରଖିବାକୁ ଦୁରୁହ ହେଲା । ଗାଁ ଗଣ୍ଡାରେ ପରିବେଶ ମଧ ବଦଳି ଯିବାକୁ ଲାଗିଲା । ରାଜନୀତିର ବାତାବରଣ ଗ୍ରାମମାନଙ୍କରେ ଗୋଷ୍ଠୀ ସୃଷ୍ଟି କରି ପାରସ୍ପରିକ ଅନାବିଳ ସ୍ନେହ-ସଂପର୍କକୁ ବିପର୍ଯ୍ୟସ୍ତ କରିଦେଲା ।

ଜୀବନର ଚତୁର୍ଥାବସ୍ଥାରେ ନିଜ ନିଜ କର୍ମମୟ ଜୀବନରେ କ୍ଳାନ୍ତ ହୋଇ ଅବସର ନେବାବେଳେ ଅତୀତର ମଧୁର ସଂପର୍କ ମନେ ପକାଇ ପୁନର୍ମିଳନର ଆନନ୍ଦ ଉପଭୋଗ କରିବାକୁ ରହିଲେ ନି ଭଜମାମୁ, ଭଗିଆମୁ, ନନ୍ଦ ଭଳି ଅନ୍ତରଂଗ ସାଙ୍ଗ । ସ୍କୁଲ ଦୁଇଟିର ପୁରାତନ ଶିକ୍ଷକମାନେ ଅବସର ନେଇ ଅନ୍ୟ ଗାଁରେ । ଧୁସୁରାହାଟ କି ଭଦ୍ରକରେ କେବେ କିମିତି ଦେଖା ହେଲେ ଅଳ୍ପ ସମୟ ପାଇଁ ହେଲେ ହେଁ ପ୍ରାଣ ଉଚ୍ଛୁଳି ଉଠେ ଅବର୍ଣ୍ଣନୀୟ ଆନନ୍ଦରେ ।

ଗାଁରେ ଆଉ ଯେଉଁମାନେ ମୋତେ ପିଲାଟି ବେଳୁ ବଡ଼ ହେଲା ପର୍ଯ୍ୟନ୍ତ ଭଲ ପାଉଥିଲେ ସେମାନଙ୍କ ପାଇଁ ସ୍ମୃତି ତର୍ପଣ କରି ମୁଁ ଆନନ୍ଦିତ ହେଉଛି । ଆମ ବଂଶର ଦୀକ୍ଷାଗୁରୁ ପରିବାରରେ ମୁରଲୀ ଦାଶ ପୋକାଦାଶ, ଦୁର୍ଗାଚରଣ ଦାଶ (ଧୋୟାନା) ମୋର ଭିଣେଇ କହ୍ନେଇ ସାହୁ, ଶ୍ରୀଧର ମିଶ୍ର ମୋ ବଡ଼ ଭାଇଙ୍କ ସାଙ୍ଗ ମାଗୁଣି ସାହୁ, ବୈଷ୍ଣବ ସୂତାର, ଆମ ଗାଁ ଜମିଦାର ପରିବାରର ଚକ୍ରଧର ପଟ୍ଟନାୟକ, ଶ୍ରୀଧର ମହାନ୍ତି, ଶଶଧର ମହାନ୍ତି ତାଙ୍କର କୁଟୁମ୍ବ ଓ କୃଷ୍ଣଚରଣ ଦାସ ମଧୁସୂଦନ ଦାସ ମୋର ପୂଜ୍ୟଶିକ୍ଷକ ଯାଦବ ମହାନ୍ତି, ଆମ ଘର ନିକଟବର୍ତ୍ତୀ ପଡ଼ୋଶୀ ହରି ମାଝୀ, ଶିବ ମାଝୀ, ବିଷ୍ଣୁମାଝୀ, ଫକିର କୁଅଁର, ରାମଚନ୍ଦ୍ର କୁଅଁର ଶ୍ରୀଧର ଦାସ ଏବଂ ଗୋବିନ୍ଦ ମହାଲିକ କାହିଁକି କେଜାଣି ଏମାନେ ମୋତେ ଅନାବିଳ ସ୍ନେହ ଦେଉଥିଲେ, ମୋର ପ୍ରଶଂସା କରୁଥିଲେ ଏବଂ ମୋ ମାଧମରେ ଗ୍ରାମର ଉନ୍ନତି କାମନା କରୁଥିଲେ । ଚକ୍ରଧର ପଟ୍ଟନାୟକ ମେଟ୍ରିକ୍‌ଲେସନ୍‌ର କିଛି ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ବ୍ରିଟିଶ ଅମଳରେ ଆମ ଅଞ୍ଚଳକୁ ନେଇ ଗଢ଼ାଯାଇଥିବା ୟୁନିୟନର ପ୍ରେସିଡ଼େଣ୍ଟ ଥିଲେ । ଆମ ଗାଁର ପ୍ରାଥମିକ ବିଦ୍ୟାଳୟର ପ୍ରତିଷ୍ଠାତା ସେ । ତାଙ୍କ ପୁଅ ଶଶଧରବାବୁ ଆମ ଧାମନଗର ଥାନାର ଗୋକୁଳାନନ୍ଦ ନାୟକଙ୍କ ପରପିଢ଼ିର ସମ୍ଭବତଃ ପ୍ରଥମ କେତେ ଜଣ ଏମ୍‌ଏଙ୍କ ମଧରୁ ଜଣେ । ତାଙ୍କର ଉଚ୍ଚଶିକ୍ଷା ମୋତେ ପ୍ରେରଣା ଦେଉଥିଲା । ଉଚ୍ଚ ଶିକ୍ଷା ଲାଭ ପାଇଁ କଲେଜ ଛୁଟିରେ ଗାଁକୁ ଆସିଲେ ସେ ଆମ୍ଭମାନଙ୍କୁ ନେଇ ବୋହୂବାଗୁଡ଼ି

ଖେଳନ୍ତି। ଥିଏଟର କରନ୍ତି। ଶ୍ରୀଧର ମହାନ୍ତି ଜଣେ ତେଜସ୍ୱୀ ପୁରୁଷ, ଉଚ୍ଚ ସ୍ୱରରେ କଥା କହି ଜମିଦାରୀ ପଣିଆ ଜାହିରି କରି ଗାଁ ନିଶାପରେ କଳିତକରାଳ ମେଣ୍ଟାଇ ଦିଅନ୍ତି। ପଚାଶ ଦଶକର ଶେଷଭାଗରେ ଜମିଦାର ବଂଶର ପ୍ରଭାବ କ୍ଷୁଣ୍ଣ କରି ମୋ ଭାଇଙ୍କ ସାଙ୍ଗ ମାଗୁଣି ସାହୁ, ଚିନ୍ତାମଣି ପୋଥାଳ, ବୈଷ୍ଣବ ସୂତାର, ସ୍କୁଲ ଶିକ୍ଷକ ଆନନ୍ଦ ଜେନାଙ୍କ ପରାମର୍ଶରେ ଗାଁର ଉନ୍ନୟନମୂଳକ କାର୍ଯ୍ୟ ହାତକୁ ନେଲେ। ମୋର ବାପାଙ୍କ ପିଢ଼ିର ବୟସ୍କ ଓ ବଡ଼ ଭାଇ ପିଢ଼ିର ତରୁଣମାନେ ମୋତେ ସ୍ନେହ କରୁଥିଲେ ସମ୍ଭବତଃ ମୁଁ ଶାନ୍ତଶିଷ୍ଟ ମେଳାପୀ ଓ ମେଧାବୀ କିଶୋର ଥିବାରୁ। ସେମାନେ ଇହଲୀଳା ସାଙ୍ଗ କରି ଚାଲିଗଲେଣି। ମୋ ବୟସର କେତେକଙ୍କର ମଧ୍ୟ ଅକାଳବିୟୋଗ ହେଲାଣି। ମୋର ସମବୟସ୍କ ଓ ମୋଠାରୁ ସାମାନ୍ୟ ବଡ଼ ଯେଉଁମାନଙ୍କ ସହ ସାମୟିକ ଦେଖା ସାକ୍ଷାତ ହେଉଛି ସେମାନେ ଅବଲୀଳା କ୍ରମେ ସମୟ ଅତିବାହିତ କରୁଛନ୍ତି। ବିଭିନ୍ନ କାର୍ଯ୍ୟକ୍ରମରେ ଗାଁକୁ ଗଲେ ଆଳାପ ଆଲୋଚନାରେ କେତେ ଯେ ଆମେ ଖୁସି ହେଉ କହି ହେବ ନାହିଁ। ସେମାନେ ବି କିଛି ବର୍ଷ ପରେ ହଜିଯିବେ ସମୟର ସ୍ରୁଅରେ। ମୁଁ ବି ନ ଥିବି ସେମାନଙ୍କ କଥା ଭାବିବାକୁ, ଲେଖିବାକୁ।

ସମୟ ବଦଳି ଚାଲିଛି। ଗାଁର ପରିବେଶ ବଦଳୁଛି। ତେବେ ଗାଉଁଲି ମଣିଷ ଭିତରେ ଆବହମାନ କାଳରୁ ଯେଉଁ ପାରସ୍ପରିକ ସ୍ନେହର ମନ୍ଦବାତ୍ୟା ବହି ଚାଲିଛି ତା କେବେ ଶୁଖି ହେବନି। ଏବେ ମଧ୍ୟ ମୋ ବୟସର ଲୋକେ ଯିଏ ଯେଉଁଠି ଥାନ୍ତୁ ନା କହିଁକି, ଜନ୍ମମାଟିର ତାଙ୍କ ପରିଚିତ ସାଙ୍ଗସାଥୀଙ୍କ ସନ୍ତାନମାନଙ୍କୁ ସ୍ନେହ ଆଶିଷ ଅକୁଣ୍ଠିତ ଚିତ୍ତରେ ଦେଇ ଚାଲିଛନ୍ତି। ଚାଲିଥିବ ଏହି ଧାରା। ସ୍ନେହ ସଂପର୍କ ଛିନ୍ନ ହେଲେ ମଣିଷ ଜୀବନ ହୋଇଯିବ ବ୍ୟର୍ଥ। "କେହି ରହିନାହିଁ ରହିବେ ନାହିଁ ଏ ଭବରଂଗ ମହୀସ୍ଥଳେ, ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳ ବଳେ।" ରହିଥିବ ମଣିଷପଣିଆ, ହୃଦୟ,ମନ, ସ୍ନେହ, ପ୍ରେମ, କ୍ଷମା, ଶାଶ୍ୱତ ଭାବପ୍ରବଣତା।

(୨୨)

"ରଜନୀ ଗଭୀର ହଲ
    ଦୀପନିବେ ଆସେ
ପଦ୍ମାର ସୁଦୂର ପାରେ
    ପଶ୍ଚିମ ଆକାଶେ
କଖନ ଯେ ସାୟାହ୍ନେର
    ଶେଷ ସ୍ୱର୍ଣରେଖା
ମିଲାଇୟା ଗେଛେ,
    ସପ୍ତର୍ଷି ଦିୟେଛେ ଦେଖା

ତିମିର ଗଗନେ;
ଶେଷ ଘଟ ପୂର୍ଣ୍ଣ କରେ
କଖନ ବାଳିକାବଧୂ
ଚଲେ ଗେଛେ ଘରେ
ହେରି କୃଷ୍ଣପକ୍ଷ ରାତ୍ରି,
ଏକାଦଶୀ ତିଥି
ଦୀର୍ଘ ପଥ, ଶୂନ୍ୟ କ୍ଷେତ୍ର
ହୟେଛେ ଅତିଥି
ଗ୍ରାମେ ଗୃହସ୍ଥେର ଘରେ
ପାନ୍ଥ ପରବାସୀ ।" *(ରବୀନ୍ଦ୍ରନାଥ)*

ସେଦିନ ସନ୍ଧ୍ୟାରେ ଗାଁ' ମୁଣ୍ଡ ପଡ଼ିଆରେ ଛୋଟ ନଈକୂଳରେ ବସି ପଶ୍ଚିମ ଆକାଶକୁ ଚାହୁଁଥିଲି । ଅନ୍ଧାର ରାତି ଧୀରେ ଧୀରେ ନଇଁ ଆସୁଥାଏ ନୀରବିତ ଗାଁ'ର ଘର ଅଗଣାକୁ । ପୂର୍ବ ପଶ୍ଚିମରେ ବିସ୍ତୀର୍ଣ୍ଣ ଶୂନ୍ୟକ୍ଷେତ, ଧାନକଟା ସରିଛି, ଶାରଦ ପରେ ଖରିଫ ଚାଷ ଆରମ୍ଭ ହେବାକୁ ଡେରି ଅଛି ।' ମାଟି ପବନରେ ଗଢ଼ା ଏ ଦେହ ମନ ଆଜି ନଗରବାସୀ ପାଲଟି ଯାଇଛି । କେତୋଟି ଦିନର ଅତିଥି ପରି ଆସିଛି ପୁତୁରା ପୁତୁରା ବୋହୂ ନାତିମାନଙ୍କର ସ୍ନେହ ଶ୍ରଦ୍ଧାର ଆଞ୍ଜୁଳେ ନେଇ ଯିବାକୁ ଜୀବନର ବାକିତକ ପଥରେ ପାଥେୟ କରି । ଗାଁ'ଭରି ନିବିଡ଼ ଅନ୍ଧାର ନାହିଁ । ଝାଁ ଝାଁ ବିଜୁଳିବତି ଜଳୁଛି ଗାଁ' ଭିତରେ । ଆଧୁନିକତାର ଆଭାସ । ଅମାବାସ୍ୟାର ଘନ ତିମିର । ପୂର୍ଣ୍ଣିମାର ତୋଫା ଜହ୍ନାଲୋକ ସମସ୍ତେ, ଗାଁ'ଲୋକେ ଆଉ କ'ଣ ଆଗ ଭଳି ଉପଭୋଗ କରି ପାରୁଛନ୍ତି ? ଗାଁ' ଭିତରେ ପାଠୁଆ ପାଠୋଇ ପୁଅ ଝିଅ ଯୁବକ-ଯୁବତୀ ବୟସ୍କ ଲୋକଙ୍କ ସଂଖ୍ୟା ତ ପୂର୍ବାପେକ୍ଷା, ମୋ ପିଲାଦିନଠାରୁ ଯଥେଷ୍ଟ ବେଶି । ତେବେ କେତେ ଜଣଙ୍କର ଅଛି ସେପରି ମାନସିକତା ଯାହା ମୋତେ ଆଜି ଉଦ୍‌ବୁଦ୍ଧ କଲା ଗୁଣୁଗୁଣୁ ଗାଇବାକୁ ରବୀନ୍ଦ୍ରନାଥଙ୍କ ଅନ୍ତରର ଗାନ । ମନେ ପକାଇବାକୁ ସଚି ରାଉତରାଙ୍କ ମନଛୁଆଁ ପଦ –'ଆଲୁଅ ତା'ର କି ମନୋହର, ଅନ୍ଧକାର ତା'ଠାରୁ ଭଲ ।' ଛୋଟଗାଁ'ର କବି ମନରେ ଗଭୀର ଚିନ୍ତା, ଅଶେଷ ଆନନ୍ଦ ।

ଯୁଗ ପରିବର୍ତ୍ତନ ଘଟୁଛି, ପ୍ରକୃତିର ଅନ୍ଧାର କାଟି ଚାଲିଛି କୃତ୍ରିମ ଆଲୋକ । ବାହାରଟା ଝକ୍‌ମକ୍, ମଣିଷର ହୃଦୟ ଭିତରକୁ ମାଡ଼ି ଆସୁଛି ତିମିର ଛାୟା, ପାର୍ଥିବ ସୁଖସଂପଦ ଅପାର୍ଥିବ ଅମୂଲ୍ୟ ମନର ଭିତରକୁ କ୍ଷୟ କରି ଚାଲିଛି । ତେବେ ପାର୍ଥିବ ସୁଖସ୍ୱାଚ୍ଛନ୍ଦ୍ୟ ମୋ ଗାଁ'ର, ମୋ ରାଜ୍ୟର ମୋ ଦେଶର, ସବୁଗାଁ'ର ସମସ୍ତଙ୍କ ଠାରେ କ'ଣ ପହଞ୍ଚି ପାରିଛି ? ସେହି ଅପହଞ୍ଚ କ୍ଷମତା ଅସମାନତା ସୃଷ୍ଟି କରିଛି ଈର୍ଷା, ମତଭେଦ, ଦ୍ୱନ୍ଦ୍ୱ କଳହ ଗାଁ' ଭିତରେ, ଗାଁ ଗାଁ ଜାତି ଜାତି, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ।

ଶିକ୍ଷିତ ଲୋକର, ଚତୁର ଲୋକର ବିଶ୍ଳେଷଣୀ ମନ ପରିସଂଖ୍ୟାନର କୁହେଳିକା ଭିତରେ ବୁଡ଼ି ରହି ସତ୍ୟାନୁସନ୍ଧାନ କରୁଛି କି ? ମୁଁ ସଂଖ୍ୟା ଗଣି ଚାଲିଛି, ତାକୁ ଲିପିବଦ୍ଧ କରି, ଅସୀମର ସୀମାନୁଭବ କରି କି ? ମୋ ରାଜ୍ୟର ଏଯାବତ୍ ପ୍ରାୟ ୭୩ ପ୍ରତିଶତ ଗାଁ'କୁ ବିଜୁଳିବତି ଗଲାଣି। ତେବେ ପ୍ରତ୍ୟେକ ଘରକୁ ଯାଇ ନାହିଁ। ଗାଁରେ ଥିବା ଗରିବ ଲୋକେ ବିଜୁଳି ଆଲୁଅ ଉପଭୋଗ କରିବା ସାମର୍ଥ୍ୟ ହାସଲ କରି ନାହାନ୍ତି। ସମଗ୍ର ଦେଶରେ ଶତକଡ଼ା ୮୬ ଭାଗ ଗାଁ'କୁ ବିଜୁଳି ଆଲୁଅ ଗଲାଣି। ଓଡ଼ିଶା ତ ସବୁଥିରେ ପଛରେ। ଦାରିଦ୍ର୍ୟର ସୀମାରେଖା ତଳେ ଥିବା ୪୭ ପ୍ରତିଶତ ଲୋକ କିପରି ବା ବିଜୁଳି ଆଲୁଅର ଖର୍ଚ୍ଚ ତୁଲାଇ ପାରିବେ ? ଆମ ରାଜ୍ୟର ମୁଣ୍ଡପିଛା ବିଜୁଳି ଶକ୍ତି ଉପଯୋଗ ହେଉଛି ୩୧୩ କିଲୋୱାଟ୍। ଭାରତରେ ଏହା ୩୬୦ କିଲୋୱାଟ। ଗୁଜରାଟ, ହରିଆନାରେ ୭୦୦ କିଲୋୱାଟ୍ରୁ ଅଧିକ। ମହାରାଷ୍ଟ୍ରରେ ୫୯୪ କିଲୋୱାଟ, ଆନ୍ଧ୍ରପ୍ରଦେଶରେ ୪୦୪ କିଲୋୱାଟ। କୃଷି ଓ ଶିଳ୍ପରେ ଏସବୁ ରାଜ୍ୟରେ ବିଦ୍ୟୁତଶକ୍ତି ବ୍ୟବହାର ଅଧିକ ହାରରେ ହେଉଛି। ଗାଁ'ରେ ସିନା ପ୍ରତ୍ୟେକ ଘରେ ବିଜୁଳି ଆଲୁଅ ନାହିଁ। ମାତ୍ର ପ୍ରତ୍ୟେକ ସାହି ରାସ୍ତାରେ ବିଜୁଳି ଆଲୁଅ ରହିଛି। ଏହି ବିଜୁଳି ଆଲୁଅ ଜହ୍ନ ଆଲୁଅ ସହ ପ୍ରତିଦ୍ୱନ୍ଦ୍ୱିତା କରୁଛି। ଗାଁ ଭିତରେ ଥାଇ, ଘର ପିଣ୍ଡାରେ ବସି, ମୁକ୍ତ ଆକାଶର ଶୀତଳ ଚନ୍ଦ୍ରାଲୋକର ଆମୋଦ ମିଳିପାରିବ ନାହିଁ। ରହସ୍ୟଭରା ଘନ ତିମିରର ବିସ୍ମୟ କୌତୂହଳ ଅନୁଭବ କରିହେବନି। ବୁଢ଼ୀମା' ପେଟକୁ ଜାକିଜୁକି ହୋଇ ଶୋଇ ରହି ନିକଟ ବାଡ଼ିଗଛରେ ଥିବା ଭୂତ, ପ୍ରେତ କଥା ପିଲାଏ ଶୁଣି ଆଉ ଡରରେ ଥରି ଯିବେନି। ବୁଢ଼ୀମା'କୁ ଜାବୋଡି ଧରି ଅତୀତର ହୃତ ମାତୃତ୍ୱର ଉଷ୍ମ ଆନନ୍ଦ ପାଇବେନି। ହରେଇ ଦେଉଥିବା ଏହି ଉଲ୍ଲାସର ମୂଲ୍ୟ କଳନା କରି ହେବ କି ? ପ୍ରଗତିର ଡିଣ୍ଡିମ ବଜାଇ ଚାଲିଥିବା ମଣିଷ ପାଖରେ ଏସବୁ ଚିନ୍ତା ଅବର୍ତ୍ତମାନ, ତାକୁ ଏକଥା ସୂଚେଇ ଦେବା ନିରର୍ଥକ। ଦୁଇ ଜଗତକୁ ଦେଖିଥିବା ମୋ ଭଳି ମଣିଷ, ଅନ୍ଧାର, ଆଲୁଅର ଲୁଚକାଳି ଖେଳ ଉପଭୋଗ କରିଥାଏ। ଏ ଆଲୋକ ଏବଂ ବର୍ତ୍ତମାନର ଆଖି ଝଲସା ଶୁଭ୍ର ରଂଗୀନ ଆଲୁଅରେ ଚହଲି ଯାଉଥିବା ମଣିଷ ଅତୀତର ସ୍ମୃତି ମନ୍ଥନ କରି ମାନସ ପଟରେ ହଜି ଯାଉଥିବା ଚିତ୍ରଆଙ୍କି କିଛିଟା ଆନନ୍ଦ ପାଇବ। ଗାଁ' ଦାଣ୍ଡ ବା ଘର ବାରଣ୍ଡାରୁ ଦୂରେଇ ଯାଇ ଗାଁ' ମୁଣ୍ଡ ଶ୍ମଶାନ ପଡ଼ିଆ କିମ୍ବା ନଈ ତଟରେ ବସି ଜହ୍ନ ହାଲୁଅର ରୋମାଞ୍ଚ ଓ ଅନ୍ଧାରର ରହସ୍ୟାବୃତ ଆତ୍ମଚିନ୍ତନର କଂପନ ଅନୁଭବ କରିହେବ ସିନା ! ଭଙ୍ଗା ଘରର ଉଚ ଢ଼ିଅରେ ବା ପକ୍କା ଚର୍ତ୍ତରାର ବିସ୍ତୀର୍ଣ୍ଣ ଚାନ୍ଦିନୀର ବୈଶାଖ ମାସ ଜହ୍ନରାତିର ଶୀତଳ ପବନରେ କି ବସନ୍ତର ମନ୍ଦ ହିଲ୍ଲୋଳରେ ଶୋଇ ରହି ମେଘଶୂନ୍ୟ ଆକାଶକୁ ଚାହିଁ ଭାସମାନ ବାଦଲର ଦୃଶ୍ୟ, ଆକାଶରେ ନାନାମୂର୍ତ୍ତି ଗଢ଼ି ହୋଇ ମିଳାଇ ଯିବାର ଛବି, ଜହ୍ନର ଚହଟା ହସ ଦେଖିବାର ଆନନ୍ଦ ଏବେ ମିଳେ କି ? ପଡ଼ିଶା ଘରର ଗୁଲୁଗୁଲିଆ ଛୁଆଟିକୁ କାଖେଇ କିମ୍ବା ଅଝଟ ଟିକି ପୁତୁରାଟିକୁ ପାଖରେ ଶୁଆଇ - 'ଆ ଜହ୍ନମାମୁଁ ସରଗ ଶଶି, ମୋ କାହ୍ନୁ ହାତରେ ପଡ଼ରେ ଖସି' ଗାଇବାର ଆନନ୍ଦ ସହଜେ ମିଳେନା। ସହରରେ ଥିବା ପକ୍କା ଘର ଛାତ

ଉପରେ ନାଡି ଟୋକାକୁ ଧରି ମୁଁ ଆକାଶକୁ ଉହେଁ। 'ଏଟା କ'ଣ, ସେ ପଉରେ ? ମୁଁ କହେ ଜହ୍ନମାମୁଁ। ବଲ ବଲ ହୋଇ ସେ ଆକାଶକୁ ଉହେଁ, ମୁଗ୍ଧ ହୁଏକି ବିସ୍ମିତ ହୁଏ ସେ ଜାଣେ। କିଛି କହିପାରେନା। ମୁକ୍ତ ପ୍ରକୃତିର ଅବାରିତ ବର୍ଣ୍ଣିତ ଚିତ୍ର ଯାହା ଦିଶୁଥିଲା ନିଶୂନ ଗାଁ' ରାତିରେ ଆଜିର ମଣିଷ କ'ଣ ତାକୁ ପୂର୍ଣ୍ଣ ପ୍ରାଣରେ ଉପଭୋଗ କରୁଛି ? ସେ ସୌନ୍ଦର୍ଯ୍ୟର ମଧୁରସ୍ପର୍ଶ, ଶୁଭ୍ରାଲୋକରେ କେତେ ଯେ ସ୍ୱପ୍ନ ଆଙ୍କି। ଖୋଜି ବୁଲୁଛି ସେହି ସୌନ୍ଦର୍ଯ୍ୟକୁ ସହରରେ, ଗାଁ'ରେ ଯାହା ସତୁ କବି ଜଲ୍ଲାଲ୍‌ଙ୍କ ଭାଷାରେ -

'ସୁନ୍ଦର ଯିଏ ଜାଳି ଦେଇପାରେ
ଅନ୍ତର ତଳ ଜ୍ୟୋତି
ଆତ୍ମାରେ ପାରେ ବିମୋହିତ କରି
ଗାଇ ମୁକ୍ତିର ଗୀତି।'

ବିଜୁଳି ଆଲୁଅରେ ଜଳୁଥିବା ସହର ଓ ଝାପ୍‌ସା ଦିଶୁଥିବା ଗାଁ'ରେ ଭୌତିକ ସଂପଦ ପଛରେ ଧଇଁସଇଁ ହୋଇ ଧାଉଁଥିବା ଲୋକ କେରିଅର୍ ଗଢ଼ିବା ପାଇଁ ପାଗଳ କିଶୋର ଏ ନୈସର୍ଗିକ ସୁଖର ସ୍ୱାଦ ଏବେ ପାଉଛି କି ? ଏହି ପ୍ରଶ୍ନ ମୋତେ ବିଚଳିତ କରିଦିଏ ଗାଁ'କୁ ଗଲେ। ଉତ୍ତର ମିଳେନା, ଛାତିରେ ଅନୁଭବ କରେ -

'ଏ ମୋ ଯନ୍ତ୍ରଣା
ଦୀର୍ଘଶ୍ୱାସର କବିତା
ଲମ୍ୱା ରାସ୍ତାର
କ୍ଷୟ ପାଉଥିବା ଜହ୍ନ ରାତିର
ସବୁ ଭିତରେ
ଏକାକୀତ୍ୱରେ ହଜିଯିବାର କବିତା।' (ଜ୍ୟୋତ୍ସ୍ନା ଦାସଙ୍କ 'ଜହ୍ନପରି ନାଇ)

(୨୩)

ଆଧୁନିକତା ଦୃଷ୍ଟିରୁ ଗାଁ'ଗୁଡ଼ିକ ଯେତେବେଳେ ଥିଲା ଅନୁନ୍ନତ ଲୋକମାନେ ଥିଲେ ସରଳ ପ୍ରକୃତିର। ଆର୍ଥିକ ସ୍ୱଚ୍ଛଳତା ନ ଥିଲା। ମାତ୍ର ଥିଲା ମାନସିକ ସ୍ୱଚ୍ଛତା, ହାର୍ଦ୍ଦିକତା, ସ୍ୱାଭାବିକ ରସିକତା, ଜୀବନକୁ ଏକ ପ୍ରାକୃତିକ ସ୍ୱତଃପ୍ରବାହ ରୂପେ ଗ୍ରହଣ କରି ନେଉଥିଲେ। ଅଭାବ ଅସୁବିଧା ଘଟଣ-ଅଘଟଣ ଭିତରେ ବଂଚି ରହିବାର ସ୍ୱାଦ ଉପଭୋଗ କରୁଥିଲେ। ଗରିବ, ଧନୀ, ମଧ୍ୟବିତ୍ତ, ନିମ୍ନ ମଧ୍ୟବିତ୍ତ ସମସ୍ତେ। ଜ୍ଞାନ ନ ଥିଲା ପ୍ରଚୁର, ମାତ୍ର ଅବବୋଧ ଥିଲା ଗଭୀର ଅମଳିନ। ପ୍ରକୃତିର ଭୀମକାନ୍ତ ରୂପରେ ମୁଗ୍ଧ ହେଉଥିଲେ, ବଦାନ୍ୟତା ଓ କାର୍ପଣ୍ୟ ହସି ହସି ତୋଳି ନେଉଥିଲେ କୃତଜ୍ଞତାର ହାତପାତି। ଫୁଲ ଫୁଟୁଥିଲା, ସକାଳର ସୂର୍ଯ୍ୟ କିରଣରେ, ଘରବାଡ଼ି ନଈନାଳ ଧାନ କିଆରୀ ଉଲ୍ଲସିତ ହେଉଥିଲେ। ବର୍ଷା, ପବନ

ଝଙ୍କାରରେ ଶିହରିତ ପ୍ରକମ୍ପିତ ହେଉଥିଲେ, ମଣିଷ ପଶୁପକ୍ଷୀ। ନଈର କୁଳୁକୁଳୁ ଗାନ, କାଉର କା' କା' ରାବ କୋଇଲିର କୁହୁକୁହୁ ତାନ, କାଠୁରିଆର କଟ୍ କଟ୍ ଶବ୍ଦ ଘରଚଟିଆର ଚେଁ ଚଁ ଶବ୍ଦରେ ଜୀବନ ଜଞ୍ଜାଳର ତାପ ଦୂରେଇ ଯାଉଥିଲା। ଅହେତୁକ ଚିନ୍ତା, ବିଷାଦ ଭାବ ସବୁ ସମୟରେ କାହାରିକୁ ଆଚ୍ଛନ୍ନ କରି ରଖୁନ ଥିଲା, ଜନ୍ମ ମରଣ, ରମଣ ଭିତରେ ଜୀବନ ତା'ର ସ୍ୱାଭାବିକ କ୍ରିୟା କରି ଚାଲିଥିଲା। ନିଜ ନିଜର କର୍ମ କରି ଯାଉଥିଲେ, ନିଜର ଦକ୍ଷତା ଓ ସାମାଜିକ ସ୍ଥିତି ଅନୁସାରେ। ଈର୍ଷା, ଅସୂୟା, ରାଗ, କ୍ରୋଧ ଥିଲା ସାମୟିକ, ପବନ ପରି ଆସୁଥିଲା, ଦେହ ମନ ବିଚଳିତ କରି ଚାଲି ଯାଉଥିଲା। ଗାଁ'ର ଲୋକ ଆଜିର ଶିକ୍ଷିତ ବା ସହରୀ ସଭ୍ୟତାରେ ପ୍ରଭାବିତ ଲୋକ ଭଳି ପ୍ରତିଶୋଧପରାୟଣ ହୋଇ ମନର ବିକୃତିଭାବକୁ ବହୁଦିନିଆ ସାଥୀ କରୁ ନଥିଲା। ଜୀବନରେ ଥିଲା ପ୍ରେମ କାରୁଣ୍ୟ, ଦୟା, ବାତ୍ସଲ୍ୟ। ପାରସ୍ପରିକ ସଂପର୍କ ମାଧ୍ୟମରେ ଏହି ସବୁ ସ୍ୱର୍ଗୀୟ ଭାବକୁ ନେଇ ମଣିଷ ଜୀବନ ଥିଲା ଶାନ୍ତ ସୁନ୍ଦର ଉଜ୍ଜ୍ୱଳ। ଜୀବନର ସାଂଗୀତିକତା ଫୁଟି ଉଠୁଥିଲା ଗାଁ'ର ଆଖଡ଼ା ଘରେ, ଛାନ୍ଦ ଚମ୍ପୂ ଭଜନ ଜଣାଣ କୀର୍ତ୍ତନ ଗାଇବାରେ ଶୁଣିବାରେ; ହାରମୋନିଅମ୍ ତବଲା, ଖଞ୍ଜଣି, ମୃଦଙ୍ଗ, ଢୋଲ, ମହୁରି ବଜାଇବାରେ। ସେଗୁଡ଼ିକ ଦେଖିବା, ଶୁଣିବା ନାଚଗୀତ ବାଜା ସହ ଏକାକାର ହୋଇ ଆନନ୍ଦରେ ବିମୋହିତ ହେବା ସେମାନଙ୍କ ପକ୍ଷେ ଥିଲା ଅତି ସ୍ୱାଭାବିକ। ଗାଁ'ର ମଣିଷ, ମାଟିର ମଣିଷ ଅବଲୀଳା କ୍ରମେ ସହି ଯାଉଥିଲେ ଗ୍ରୀଷ୍ମ, ବର୍ଷା, ଶୀତ, ବସନ୍ତର ସମସ୍ତ ଚାପ, ତାପ ବ୍ୟଥା ଉନ୍ମାଦନା। ବୈଚିତ୍ର୍ୟମୟ ପୃଥିବୀର ଛଅ ଋତୁ ମଣିଷର ଥିଲା ଛଅ ସାଥୀ ଯେପରି ତା' ମନର ଷଡ଼ଐଶ୍ୱର୍ଯ୍ୟ। ପ୍ରକୃତିର ଛାପ, ଦରଦୀ ସ୍ପର୍ଶ ତା'ର ପଞ୍ଚ ଇନ୍ଦ୍ରିୟକୁ ଉଭାଳ କରୁଥିଲା। ମୋର ପିଲାଦିନର କୈଶୋର ଓ ଯୌବନର ଏହି ଅବଧାରଣା ଆଜି ସାମାଜିକ ଦୃଶ୍ୟ ପରିବର୍ତ୍ତନ ପରିପ୍ରେକ୍ଷୀରେ ବିଚଳିତ କରୁଛି। ସ୍ମୃତିଚାରଣ କରୁଛି ଅତୀତକୁ। ଆଖି ଆଗରେ ଭାସିଯାଉଛି ମୋ ଗାଁ'ର ମଙ୍ଗଳା ସାହିର ମଙ୍ଗଳାଗଛ ନିକଟରେ ଗୋଟିଏ ମାଟି କୁଡ଼ିଆ, ଆଖଡ଼ାଘର। ଘରଟିର ତତ୍ତ୍ୱାବଧାରକ ଥିଲେ, ନାରଣ ମହାନ୍ତି, ନାରଣ ଦାଦା। ସେ କାଳେ ଗାଁ' ଜମିଦାରଙ୍କ ରକ୍ଷିତା ବା ପୋଇଲିର ପୁଅ। ପୂର୍ବେ ଧନୀ ଜମିଦାର ଓ ସଂଭ୍ରାନ୍ତ ବଂଶର ପୁରୁଷ ବିବାହ ସିନା କରୁଥିଲେ ଜଣକୁ,ମାତ୍ର ଉପଭୋଗ କରୁଥିଲେ ଏକାଧିକକୁ। ରକ୍ଷିତା ମାଧ୍ୟମରେ ସଂଭୋଗ ଲାଳସା ପରିତୃପ୍ତ ହେଉଥିଲା। ସେମାନଙ୍କ ସଂତାନ ସନ୍ତତିଙ୍କ ରକ୍ଷଣାବେକ୍ଷଣର ବ୍ୟବସ୍ଥା କରି ଦେଉଥିଲେ ସ୍ୱତନ୍ତ୍ର ଘର ଓ ଜମିଜମା ଦେଇ। ଏମାନେ ଜମିଦାରଙ୍କ ଜାତିରେ ଗଣା ଯାଉ ନଥିଲେ ଏମାନଙ୍କ ଜାତି ହେଉଥିଲା ଭିନ୍ନ। ସେହି ନାରଣ ମହାନ୍ତିଙ୍କ ତତ୍ତ୍ୱାବଧାନରେ ଏହି ଘରେ ହେଉଥିଲା ଆଖଡ଼ା। ହାରମୋନିଅମ୍, ତବଲା ବଜେଇବା ଏବଂ ଗୀତ ବୋଲିବା ଶିଖାଉଥିଲେ ଜନୈକ ଅନ୍ଧ ଓସ୍ତାତ, ରଘୁ ଅନ୍ଧ। ସେ କେଉଁଠୁ ଆସିଥିଲେ, ତାଙ୍କର ପରିବାର କେଉଁଠି,ମୋତେ ଜଣା ନାହିଁ। ସେ ସମ୍ଭବତଃ ଥିଲେ ଅବିବାହିତ। ମଧୁର ଉଚାଙ୍ଗ ସ୍ୱର ଶ୍ରୋତାଙ୍କୁ ମୁଗ୍ଧ କରୁଥିଲା। ବାପା ଭାଇ ମୋତେ ଆଖଡ଼ାରେ ଭର୍ତ୍ତି କରି ଦେଇଥିଲେ। ମୁଁ ହାରମୋନିଅମ୍ ବଜେଇ

ଗୀତ ବୋଲୁଥିଲି। ମୋ ସ୍ୱର ଥିଲା ସୁନ୍ଦର, ଲଳିତ। ତାଳ ଜ୍ଞାନ ବେଶ୍ ଭଲ। ଗୀତ ବୋଲିବା ସହ ନାଚୁଥିଲି ମଧ୍ୟ ଯୌଥ ନୃତ୍ୟରେ। ମୋ ଭାଇ ଥିଲେ, ତରୁଣ। ତାଙ୍କର ସାଙ୍ଗମାନେ ମଧ୍ୟ ତରୁଣ। ସେମାନେ ମିଶିକରି ଚଳାଉଥିଲେ ଆଖଡ଼ାଟିକୁ। କିଏ ସୁନାରୀ ତ କିଏ ବଢ଼େଇ, କିଏ ଚଷୀ ତ କିଏ ବେପାରୀ। ସଂଧ୍ୟାର ଆସରରେ ସମସ୍ତେ ସମବେତ ହେଉଥିଲେ। ଗୀତ ବାଦ୍ୟ ଶିଖୁଥିଲେ କିମ୍ବା ସଂଗୀତ ଉପଭୋଗ କରୁଥିଲେ। ଆଜି ସେପରି ଆଖଡ଼ା ଗାଁ'ମାନଙ୍କରେ ନାହିଁ। ତରୁଣ ସଂଘ ଅଛି। କିଶୋର ତରୁଣମାନେ ଖେଳରେ ମାତିଛନ୍ତି। କ୍ରିକେଟ୍ ସେମାନଙ୍କୁ ମାତାଇ କରି ଦେଇଛି। କେତେବେଳେ କେମିତି ଜାକଜମକରେ ନାଟକ ଅଭିନୟ କରୁଛନ୍ତି,ପେଶାଦାର ସଂଗୀତଜ୍ଞ ବାଦ୍ୟକାରଙ୍କ ସାହାଯ୍ୟ ନେଇ। ନିଜେ ଗୀତ ନାଚ ଶିଖିବାକୁ ବିଶେଷ ଆଗ୍ରହ ଦେଖାଉ ନାହାନ୍ତି। ଇଲେକ୍ଟ୍ରୋନିକ୍ ଯୁଗ, ଟିଭିରେ ଛବି ନାଚ ଦେଖି କ୍ୟାସେଟ୍‌ରୁ ଚିରହରା ଗୀତ ଶୁଣି ମଜଲିସ୍ କରୁଛନ୍ତି।

ଧୂଷୁରୀ ହାଟ ପାଖରେ ଗୋଟିଏ ଛୋଟ ଗାଁ। ଚଷୀ କେତେ ଘର ରହନ୍ତି। ପନିପରିବା, ବିରି ମୁଗଚଷ କରନ୍ତି। ସେହି ଗାଁ'ର ଯୁବକଟିଏ ଥାଏ, ଭଲ ଗୀତ ଗାଏ। ହାରମୋନିଅମ୍ ତବଲା ବଜେଇବାରେ ପାରଙ୍ଗମ। ମୁଁ ପଚାଶ ଷାଠିଏଦଶକରେ ଗାଁ'ରେ ଖରାଛୁଟିରେ ନାଟକ ଅଭିନୟ କରିବାକୁ ଗଲାବେଳେ, ଏହି ଯୁବକଟି ଆସେ। ପିଲାମାନଙ୍କୁ ଗୀତ ନାଚ ଶିଖାଏ। ଏହି ଯୁବକଟି ସମୟକ୍ରମେ କୋଠାର ମାଧ୍ୟମିକବିଦ୍ୟାଳୟରେ ସଂଗୀତ ଶିକ୍ଷକ ହୋଇଥିଲେ। ସେ ବର୍ତ୍ତମାନ କ'ଣ କରୁଛନ୍ତି ଜାଣିନି। ଯେତେବେଳେ ସରକାର ପିଲାଙ୍କୁ ପଢ଼େଇବା ପାଇଁ ମାଷ୍ଟରମାନଙ୍କୁ ଦରମା ଦେଇ ପାରୁନାହାନ୍ତି, ସେତେବେଳେ ସ୍କୁଲରେ ସଂଗୀତ ଶିକ୍ଷକ ରଖିବା ସ୍ୱପ୍ନ।

ବ୍ରାହ୍ମଣପାଢ଼ ଗାଁ'ର ଥିଲେ ଜଣେ ପାଲା ଗାୟକ। ସଂସ୍କୃତ ପଢ଼ିଛନ୍ତି। ଋଷବାସ ସହ ପାଲାଦଳ ଗଢ଼ି ବିଭିନ୍ନ ସ୍ଥାନରେ ପାଲା ଗାଆନ୍ତି। ଆମ ଧୂଷୁରୀ ସାଂସ୍କୃତିକ ସଂସଦର ବାର୍ଷିକୋତ୍ସବରେ, ଆଖଣ୍ଡଳମଣି, କଲେଜର ପିଲାଙ୍କ ଉତ୍ସବରେ ପାଲା କରି ଶ୍ରୋତା ଓ ଦର୍ଶକମାନଙ୍କୁ ବିମୋହିତ କରିଦିଅନ୍ତି। ତାଙ୍କର ପୁଅଟିଏ ଆଖଣ୍ଡଳମଣି କଲେଜର ଅଧ୍ୟାପକ। ଏବେ ବି ପାଲା ଗାୟକ ଅଛନ୍ତି। ପାଲା ମାଧ୍ୟମରେ ସଂଗୀତ ଓ ପୁରାଣ ଚର୍ଚ୍ଚା ହେଉଛି। ଲୋକଙ୍କ ମନୋରଞ୍ଜନର ଏକ ଉନ୍ନତ ସାଂସ୍କୃତିକ କଳା। ଆଜିର ଶିକ୍ଷିତ, ବିଜ୍ଞାନାମୁଖୀ ଯୁବକମାନେ ଏଥିପ୍ରତି ବିଶେଷ ଆକୃଷ୍ଟ ନୁହଁନ୍ତି। ତେବେ ବୟସ୍କ ଲୋକେ ଜୀବନ ଯାତ୍ରାରେ କ୍ଲାନ୍ତ ହେଲା ପରେ, ଇହକାଳ ପରକାଳର ଚିନ୍ତା ମନକୁ ଛୁଇଁ ଆସିଲା ବେଳେ ଧର୍ମଚର୍ଚ୍ଚାଓ ପୁରାଣ ଆଡ଼କୁ ଟାଣି ହୋଇ ଯାଉଛନ୍ତି। କିନ୍ତୁ ଦୁଃଖର କଥା ସହରରେ କ୍ରମଶଃ ଅଣଓଡ଼ିଆ ରାମଚରିତ ପାରାୟଣ ଆକର୍ଷଣ ବିନ୍ଦୁ ହୋଇ ଆସୁଛି। ଓଡ଼ିଆସଂସ୍କୃତିର ସ୍ୱାତନ୍ତ୍ର୍ୟ ପାଲା, ଯାତ୍ରା, ଭାଗବତ ପାରାୟଣ ଲୋପ ପାଇଗଲେ ଯେ ଆମର ଐତିହ୍ୟକୁ ଆମେ ଭୁଲିଯିବା ଏକଥା ମନେ ରଖିବାକୁ ହେବ। ଗାଁ'ର ଓ ସ୍କୁଲର ବିଭିନ୍ନ ଉତ୍ସବରେ ମୋତେ ଯେଉଁମାନେ ସାହାଯ୍ୟ କରୁଥିଲେ ସେମାନଙ୍କ ଭିତରେ କେତେ ଜଣ ଶିକ୍ଷକଙ୍କ ନାମ ଉଲ୍ଲେଖ କରିବି।

ମୁଁ କଲେଜ ପଢୁଥିବା ବେଳେ ଆନନ୍ଦ ଜେନା ନାମକ ଜଣେ ହେଡ୍‌ପଣ୍ଡିତ ଥିଲେ ଆମ ନିମ୍ନ ପ୍ରାଥମିକ ବିଦ୍ୟାଳୟର। ସେ ମୋ ଭାଇ ଓ ତାଙ୍କର ସାଥୀମାନଙ୍କୁ ପରାମର୍ଶ ଦେଇ ଗାଁ'ର ସ୍କୁଲ ଗୃହ ନିର୍ମାଣ ଓ ଅନ୍ୟାନ୍ୟ କାର୍ଯ୍ୟ ଉପରେ ପୂର୍ବେ ଥିବା ଜମିଦାରଙ୍କ ପ୍ରଭାବକୁ କ୍ଷୁଣ୍ଣ କରି ଦେଇଥିଲେ ଏବଂ ଗାଁ' ଲୋକେ ସ୍ୱାଧୀନ ଭାବେ ପରସ୍ପର ସହ ମିଳି ଗାଁ'ର ଉନ୍ନୟନ କାମ କରିବାକୁ ଶିକ୍ଷା ଦେଇଥିଲେ। ଦ୍ୱିତୀୟ ବ୍ୟକ୍ତି ହେଉଛନ୍ତି ମୁଁ ପ୍ରଥମ ଚାକିରି କରିବା ସମୟରେ ପ୍ରାଥମିକ ସ୍କୁଲ ହେଡ୍‌ମାଷ୍ଟର ଶ୍ରୀଯୁକ୍ତ କହ୍ନେଇ ମିଶ୍ର। ତାଙ୍କର ସାହାଯ୍ୟରେ ପ୍ରାଥମିକ ବିଦ୍ୟାଳୟକୁ ମାଧମିକ ବିଦ୍ୟାଳୟରେ ପରିଣତ କରାଯାଇଥିଲା। ଆମ ଗାଁ'ର ଜଣେ ହିତୈଷୀ ବଂଧୁ ଓ ବୁଦ୍ଧିଦାତା ରୂପେ ଏହି ଦୁଇ ଶିକ୍ଷକଙ୍କ କାର୍ଯ୍ୟକଳାପ ଅବିସ୍ମରଣୀୟ। ମାଧମିକ ବିଦ୍ୟାଳୟକୁ ଅଶୀ ଦଶକରେ ଉଚ୍ଚ ମାଧମିକ ବିଦ୍ୟାଳୟକୁ ଉରାର୍ଣ୍ଣ କଲାବେଳେ ଯଥେଷ୍ଟ ସହାୟତା କରିଛନ୍ତି। ବର୍ତ୍ତମାନର ହେଡ୍‌ମାଷ୍ଟର ପ୍ରଣବ ସାହୁ। ସେ ଆମ ପରିବାରର ଜଣେ ସଭ୍ୟ ହୋଇ ଯାଇଥିଲେ। ମୋର ନାତିନାତୁଣୀ ଓ ଗାଁ'ର ଅନ୍ୟାନ୍ୟ ପିଲାମାନଙ୍କୁ ମଣିଷ କରିବାର ଦାୟିତ୍ୱ ଅତୀବ ସନ୍ତୋଷର ସହ ସଂପାଦନ କରିଛନ୍ତି। ଏ ତିନି ଶିକ୍ଷକ ଅନ୍ୟ ଗାଁ'ର ଲୋକ, ମାତ୍ର ନିଜର କର୍ମସ୍ଥଳୀକୁ ଜନ୍ମଭୂମି ପରି ଗଭୀର ଭାବେ ଭଲ ପାଉଥିଲେ। ସାଧାରଣ ଲୋକଙ୍କ ସହ ଏହି ଶିକ୍ଷକମାନଙ୍କର ଅନ୍ତରଂଗ ସଂବେଦନଶୀଳ ବ୍ୟବହାର ମୋ ଭିତରେ ଭବିଷ୍ୟତ ସମାଜ ସମ୍ପର୍କରେ ଆଶା ଓ ବିଶ୍ୱାସ ସୃଷ୍ଟି କରିଛି। ଜୀବନରେ ଅନେକ ଶିଖିଛି,ବିଭିନ୍ନ ସ୍ତରର ଲୋକଙ୍କ ସଂଗରେ ମିଶି। ସାଧାରଣ ଲୋକଙ୍କ ଶ୍ରଦ୍ଧା ଓ ଆସ୍ଥାର ଭାଜନ ହୋଇଛି। ଯିଏ ଯେଉଁଠି ଅଛି ସେ ଜାଗାକୁ ଭଲ ପାଇ,ତା'ର ବିକାଶରେ ନିଜ ଜୀବନର ବିକାଶ ପରିପାର୍ଶ୍ୱରେ ରହୁଥିବା ସବୁ ଲୋକଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଆନନ୍ଦରେ ନିଜର ଆନନ୍ଦ ଓ ବିକାଶ ଯେ ନିହିତ ଏହି ସାରକଥା ମନରେ ଛପା ହୋଇଯାଇଛି। ମାକ୍ସିମ୍ ଗର୍କିଙ୍କ ମନ୍ତବ୍ୟରେ ମୁଁ ଏକମତ ହେଉଛି - 'He (man) taught me much which is not to be found in thick folios. Written bythe wise- for the wisdom of life is always more profound and all-embracing than the wisdom of men' ଜୀବନରେ ଅଭିଜ୍ଞତାରୁ ଜାତ ଜ୍ଞାନ ଅନ୍ୟଲୋକ ପ୍ରଦତ୍ତ ଜ୍ଞାନଠାରୁ ଅଧିକ ଗଭୀର ଓ ବ୍ୟାପ୍ତିମୟ।

(୨୪)

"ହେ ଆନନ୍ଦମୟ କୋଟି ଭୁବନ ପାଳକ / ଅଧମ ଅକ୍ଷମ ମୁହିଁ ଅବୋଧ ବାଳକ'- ପ୍ରାର୍ଥନା ଗାଉ ଗାଉ ସ୍ମୃତିପଟରେ ଭାସି ଉଠିଲା ଭଦ୍ରକ ହାଇସ୍କୁଲର ଛାତ୍ରାବାସ ଜୀବନ। ୧୫ ବର୍ଷ ବୟସର କିଶୋର ମୁଁ। ବାସୁରାଇ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀ ପାଠ ପଢ଼ି ନବମ ବେଳକୁ ଚାଲି ଆସିଲି ସେ ସମୟର ସୁବିଖ୍ୟାତ ଭଦ୍ରକ ହାଇସ୍କୁଲକୁ। ଚତୁର୍ଥ ଶ୍ରେଣୀର ପଦାର୍ପଣ କଲା ଦିନଠାରୁ ଗାଁରେ ବାପା-ବୋଉ ଭାଇ-ଭଉଣୀଙ୍କୁ ଛାଡ଼ି ଛାତ୍ରାବାସରେ ରହି

ଶିକ୍ଷାର୍ଜନକରି ଆସିଛି। ଭଦ୍ରକ ହାଇସ୍କୁଲ ଛାତ୍ରାବାସ ଥିଲା ତିନି ଦିଗକୁ ଲମ୍ବିଥିବା ପକ୍କାଘର, ତିନିଟି ଡ଼ର୍ମିଟରୀ। ତିନିଟି ଡ଼ର୍ମିଟରୀରେ ପଛକୁ କେତୋଟି ଚାଳଛପରକୋଠରି ଥିଲା। ସେଥିରେ ମଧ କେତେଜଣ ଅନ୍ତେବାସୀ ରହୁଥିଲେ। ସେ ଘରଗୁଡ଼ିକୁ ଆମେ 'ପାକିସ୍ତାନ' କହୁଥିଲୁ। ଦେଶ ବିଭାଜନ ପରେ ନିଜ ଲୋକ ପୃଥକ୍ ହୋଇ ରହିବାର ଏ ଥିଲା ଶ୍ଳେଷାତ୍ମକ ଶବ୍ଦ। ଉତ୍ତର ଦକ୍ଷିଣ ଡ଼ର୍ମିଟରର ଦକ୍ଷିଣ ଭାଗକୁ ଲାଗି ଗୋଟିଏ କୋଠରି ଥାଏ। ସେଥିରେ ରହୁଥାନ୍ତି ଛାତ୍ରାବାସର ତତ୍ତ୍ୱାବଧାରକ ବିଜ୍ଞାନ ଓ ଗଣିତ ଶିକ୍ଷକ ସ୍ୱନାମଧନ୍ୟ ପ୍ରାଣବନ୍ଧୁ ଜେନା। ତାଙ୍କ ପାଖରେ ସେହି କୋଠରିରେ ରହୁଥାନ୍ତି ତାଙ୍କର ଛୋଟ ଭାଇ ଅଖୁଜା ଓ ବେଳେବେଳେ ଛୋଟ ଭଉଣୀ ମୃଷା। ସେ ଦୁହିଁଙ୍କର ଭଲ ନାମ ମୋର ମନେ ନାହିଁ। ପ୍ରାଣବନ୍ଧୁ ସାର୍ ବେହେଲାଟିଏ ରଖିଥାନ୍ତି, ବେଳେ ବେଳେ ସେ ବେହେଲାର ମଧୁର ରାଗିଣୀ ଭାସି ଆସେ। ସେହି କୋଠରିରେ ବସି ସେ କେତେଜଣ ପିଲାଙ୍କୁ ପାଠ ମଧ ପଢ଼ାନ୍ତି। ଧନୀ ମାତ୍ର ପାଠରେ ପଛୁଆ ପିଲାମାନେ ଟିଉସନ ଫି ଦିଅନ୍ତି। ମାତ୍ର ମୋ ଭଳି ମେଧାବୀ ଏବଂ ଶ୍ରେଣୀରେ ପ୍ରଥମ, ଦ୍ୱିତୀୟ ସ୍ଥାନରେ ରହୁଥିବା ପିଲା ଓ ଗରିବ ପିଲା ବିନା ଫି'ରେ ଗଣିତ ବୁଝି ଆସନ୍ତି।

ଭଦ୍ରକ ସ୍କୁଲର ଦକ୍ଷିଣ ପଟକୁ ଲାଗି କଚେରି, ଏସ.ଡ଼ି.ଓଙ୍କ ଅଫିସ୍ ଟ୍ରେଜେରୀ ଏବଂ ସବ୍‌ଡ଼ିଭିଜ୍‌ନାଲ ବିଦ୍ୟାଳୟ। କଚେରିକୁ ଘେରି ଦୋକାନ ବଜାର। ସଂଜ- ସକାଳେ ଦିନେ ଦିନେ ଜଳଖିଆ ଖାଇବାକୁ ଯାଉଁ କଚେରି ପାଖ ଗୋଟିଏ ମିଠାଇ ଦୋକାନକୁ। ସୁସ୍ୱାଦ ପାଳୁଅ ଲଡୁ ମାଲପୁଆ, ପୁରି ତରକାରୀ ଦିଅଣା, ତିନିଅଣା ଅର୍ଥାତ୍ ଗୋଟିଏ ଟଙ୍କାର ଏକ ଅଷ୍ଟାଂଶ କି ଏକ ଷଷ୍ଠାଂଶରେ ପେଟ ଭର୍ତ୍ତି। ପ୍ରଧାନ ବଜାରକୁ ଲାଗି ଗୋଟିଏ ଗଳି ଭିତରେ ଥାଏ- ଚୂଡ଼ା, ମୁଢ଼ି, ଛେନା, ଦହି ଦୋକାନ। ଅପରାହ୍ନ ପାଞ୍ଚଟା ଛଅଟା ବେଳେ ମୁଢ଼ିଚୂଡ଼ା ଛେନାଚିନି ଟକଟା ଖାଏ ଦିନେ ଦିନେ। ଏଠାରେ ଦୁଧଛେନା ମିଳୁଥିଲା, ମୁଁ ଗାଁରେ ଦହିଛେନା ଖାଇଛି। ଏ ଦୁଧ ଛେନା ତା' ଠାରୁ ବହୁତ ଅଧିକ ସ୍ୱାଦୁକର। ଦୋକାନ ଘରଗୁଡ଼ିକ ପକ୍କା କାନ୍ଥ, ଟିଣ ଛାତ ବା ଚାଳ ଛପର। ସାଜସଜା ସେମିତି କିଛି ନଥାଏ। ଆଜିକାଲିକା ପରି ଦୋକାନର ଚାକଚକ୍ୟ ନ ଥାଏ। ମଫସଲ ଗାଁରୁକୋର୍ଟ କଚେରି କାମରେ ଆସୁଥିବା ଲୋକେ ସବୁ ଦୋକାନର ପ୍ରାଧାନ ଗ୍ରାହକ। ଜିନିଷଟି ଭଲ ସୁନ୍ଦର ମଜବୁତ୍ ହେଲେ ହେଲା। କିଏ ବା ଦୋକାନ ବଜାରର ସୌନ୍ଦର୍ଯ୍ୟ ଖୋଜୁଛି ? ବଜାରରୁ ସନ୍ଧ୍ୟାରେ କଚେରି ବାଟଦେଇ ଫେରିଲା ବେଳେ 'ହଲ୍‌ଟ ହୁକୁମଦାର' ଶବ୍ଦରେ ପିଲାଙ୍କ ଛାତି ଥରି ଉଠେ, ଟ୍ରେଜେରୀ ଜଗୁଆଳର କୁହାଟ, ବନ୍ଧୁକର ଝନ୍ ଝନ୍ ଶବ୍ଦ ଭୟ ସଂଚାର କରେ। ଆମେ ସାବଧାନ ହୋଇଯାଉଁ।

ଆମ ଛାତ୍ରାବାସର ପୂର୍ବପଟେ ସାଳନ୍ଦୀ ନଈ। ଛାତ୍ରାବାସ ଭିତରେ ବଡ଼ ବାମ୍ଫାଟିଏ ଥାଏ। ସେଥିରୁ ପାଣି ବାଲ୍‌ଟିରେ ବାହାର କରି ଗାଧଉଁ। କେବେ କିମିତି ମନ ହେଲେ ସାଳନ୍ଦୀ ନଈକୁ ଗାଧୋଇବାକୁ ଯାଉଁ। ବର୍ଷା ଋତୁରେ ସାଳନ୍ଦୀରେ ଉଚ୍ଛୁଳା ଜଳ। ଡର ଲାଗେ ଗାଧୋଇ ଯିବାକୁ। ଅନ୍ୟ ଋତୁରେ ସାଳନ୍ଦୀର ସ୍ୱଚ୍ଛ ଜଳରେ ସ୍ନାନ କରି ସାଳନ୍ଦୀ ବାଲିରେ ବିଚରଣ କରି କେତେ ଯେଆନନ୍ଦ ପାଉଁ ତାହା ଅବର୍ଣ୍ଣନୀୟ।

ସାଳନ୍ଦୀ କୂଳକୁ ଲାଗି ବହୁ ଶିକ୍ଷିତ ପଦସ୍ଥ ଲୋକଙ୍କ ଘରଥାଏ। କୋଠାଘର। ସେସବୁ ଘରର ମାଲିକ ବା ଭଡ଼ାରେ ଥିବା ଲୋକେ ଭଦ୍ରକ ସହରର ଖ୍ୟାତନାମା ବ୍ୟକ୍ତି। ସଂସ୍କୃତ ପଣ୍ଡିତ କୃଷ୍ଣଚନ୍ଦ୍ର କର, ବାଲେଶ୍ୱର ସରକାରୀ ଜିଲ୍ଲା ସ୍କୁଲରୁ ଆସି ଭଦ୍ରକ ସ୍କୁଲରେ ଯୋଗ ଦେଇଥା'ନ୍ତି। ଅତ୍ୟନ୍ତ ଜାତିପ୍ରାଣ ସଚ୍ଚା ହିନ୍ଦୁ। ସେ ରହୁଥିବେଲେ ଏହି ସାଳନ୍ଦୀ କୂଳରେ। ସେ ମୋତେ ଖୁବ୍ ସ୍ନେହ କରୁଥିଲେ। ଆମର ଭୂଗୋଳ ଶିକ୍ଷକ ସୁବାସ ବାନାର୍ଜୀ ସାର୍‌ଙ୍କ ଘର ସାଳନ୍ଦୀ କୂଳରେ। ତାଙ୍କ ପରିବାରର ଆଭିଜାତ୍ୟ, ତାଙ୍କ ଘରର ପରିବେଶରୁ ସ୍ପଷ୍ଟ ଜଣା ପଡୁଥିଲା। ତାଙ୍କର ସାନଭାଇଟିଏ ସନ୍ତୋଷ ବାନାର୍ଜୀ ମିଦିନାପୁର କଲେଜରେ ରାଜନୀତି ବିଜ୍ଞାନର ଅଧ୍ୟାପକ ହୋଇଥିଲେ। କମ୍ୟୁନିଷ୍ଟ ପାର୍ଟିର ଜଣେ ସଭ୍ୟ।

ଭଦ୍ରକ ସହର ପାର୍ଶ୍ୱ ଦେଇ ବଙ୍କେଇ ବଙ୍କେଇ ବହିଯାଉଥିବା ସାଳନ୍ଦୀ ନଈ ପଚାଶ ଦଶକରେ ଥିଲା ଅଧିକ ଗଭୀର, ବିଶେଷ ଓସାର ନ ଥିଲା। ଭଦ୍ରକ ସହରର ଉତ୍ତର ଦିଗରେ ସାଳନ୍ଦୀ ନଦୀଉପରେ ପକ୍କା ପୋଲଟେ। ତା'ର ନାମ ରାଜଘାଟ ପୋଲ। ପୋଲଟି କେବେଠୁଁ ହୋଇଥିଲା, କାହିଁକି ଏହାର ନାମ ରାଜଘାଟ ହୋଇଥିଲା - ମୁଁ ଜାଣେନା। ଏହି ପୋଲ ଦେଇ ଭଦ୍ରକ ଷ୍ଟେସନ୍ ବା ଚରମ୍ପାକୁ, ଚାନ୍ଦବାଲି, ବାଲେଶ୍ୱର,ବାସୁଦେବପୁରକୁ ଗାଡ଼ି ମଟର ଯାଏ। ଏବେ ପୁରୁଣା ପୋଲଟି ଭାଙ୍ଗି ନୂଆ ପୋଲ କରାଯାଇଛି। ମାତ୍ର ବିଶେଷ ଓସାର ହୋଇନି। ଜାତୀୟ ରାଜପଥ ପଶ୍ଚିମକୁ କିଛି ଦୂରରେ ବେଶ୍ ପ୍ରଶସ୍ତ ହୋଇ ଚେନ୍ନାଇ - କୋଲକାତାକୁ ସ୍ପର୍ଶ କରୁଛି। ନୂଆ ଚଉଡ଼ା ପୋଲଟେ ଗଢ଼ାଯାଇଛି ସାଳନ୍ଦୀ ଉପରେ। ସାଳନ୍ଦୀ କିନ୍ତୁ ଦିନକୁ ଦିନ କ୍ଷୀଣ ହୋଇଯାଉଛି, ଜନବସତି ବୃଦ୍ଧିଜନିତ ଘରବାଡ଼ି ତିଆରି ଉପରେ। ନଦୀର ଗର୍ଭ ପୋତି ହୋଇପଡ଼ିଲାଣି। ରେଙ୍ଗାଲି ଯୋଜନାରେ ବନ୍ୟାଜଳ ନିୟନ୍ତ୍ରଣ ଓ ଜଳସେଚନ ବ୍ୟବସ୍ଥା ହୋଇଛି। ଭଦ୍ରକରୁ ଚାନ୍ଦବାଲିକୁ ଓ ବାଲେଶ୍ୱରକୁ ଯାଉଥିବା ରାସ୍ତାକଡ଼ରେ ପ୍ରକାଣ୍ଡ ଘର ଓ ଦୋକାନ ବଜାର ହୋଇଗଲାଣି। ବର୍ଷାଦିନେ ଆରମ୍ଭ ହେଲେ, ବନ୍ୟା ଆସିଲେ ସାଳନ୍ଦୀର ଉଚ୍ଛୁଳା ପାଣି କୂଳ ଲଙ୍ଘି ଯେମିତି ପାର୍ଶ୍ୱସ୍ଥ ଚାଷଜମି- ଘରବାଡ଼ି ଜଳମଗ୍ନ କରି ଦେଉଥିଲା ଆଜିକାଲି ସେପରି ଦୃଶ୍ୟ ଦେଖିବାକୁ ମିଳେନି। ମୋର ମନେ ପଡୁଛି ବର୍ଷା ଋତୁରେ ବନ୍ୟା ଆସିଲେ ରାଜଘାଟ ପୋଲର ଅପରପାର୍ଶ୍ୱରେ ଚାଷଜମି ସବୁ ଜଳମଗ୍ନ ହୋଇଗଲେ ଆମେ ଛାତ୍ରାବାସର କେତେକ ପିଲା ଚାଷ ଜମିରେ ଥିବା ପାଣିରେ ମନ ଇଚ୍ଛା ଗାଧୋଉ ଏବଂ ପହଁରୁ। ନଈର ପ୍ରଖର ସ୍ରୋତ ନ ଥାଏ ସେଠାରେ, ତେଣୁ ଭୟର କାରଣ ନ ଥାଏ। ପ୍ରକୃତି ସହିତ ମିଶିଯାଇ ପ୍ରାଣଭରି ଆନନ୍ଦ ଉପଭୋଗ କରିବାର ସୁଯୋଗ କି ମନୋବୃତ୍ତି ଆଜି କାହିଁ? ସାଳନ୍ଦୀର ସେ ବର୍ଣ୍ଣାଢ଼୍ୟ ରୂପ ଅଛି କି ନାହିଁ ସନ୍ଦେହ। କିଏ ବା ଲେଖିବ ତା'ର ଗୁଣ କୀର୍ତ୍ତନ କରି।

"କାହିଁ ବକ୍ରଗତି ଭୁଜଙ୍ଗିନୀ ପରି, କାହିଁ ବା ସଳଖେ ଯାଉଖଣ୍ଡେ ଚାଲି"
... "ବର୍ଷା କଲୁଷିତ ଭାବ ପରିହରି, ସତ୍ତ୍ୱ ଗୁଣ ଧରି ଭ୍ରମୁ ପୂର୍ବପରି
... ସଲୀଳ ତୋହାର ଯଥା କାଚ ଧାର
ସାଧୁମନ ପ୍ରାୟେ ନିର୍ମଳ ଉଦାର" *(ଚିନ୍ତାମଣି ମହାନ୍ତି)*

ଭଦ୍ରକ କଚେରି ବଜାରର ପଶ୍ଚିମ ପଟେ ଜଗନ୍ନାଥ ସଡ଼କର ଅପରପାର୍ଶ୍ୱରେ ଗୋଟିଏ ରାସ୍ତା ଯାଇଛି ବନ୍ତ ଅଗରପଡ଼ାକୁ। ଅଗରପଡ଼ାରେ ଆଧୁନିକ ଓଡ଼ିଶାର ନିର୍ମାତା ଉତ୍କଳ କେଶରୀଙ୍କ ଘର। ସେ ଭଦ୍ରକ ହାଇସ୍କୁଲର ଛାତ୍ର ଥିଲେ ଏକଦା,ମୋର ପୂଜ୍ୟ ହେଡ଼ମାଷ୍ଟର ଓଡ଼ିଶା ବିଖ୍ୟାତ ଗୋକୁଳାନନ୍ଦ ନାୟକଙ୍କ ଛାତ୍ର। ଏହି ରାସ୍ତାଟି ଚାନୁଗଞ୍ଜ ଓ ବାଗୁରାଇ ରାହାନ୍ଦିଆ ଦେଇଯାଇଛି। ଚାନୁଗଞ୍ଜ ଗାଁଟିରେ କରଣ ସଂପ୍ରଦାୟର ବହୁ ଲୋକ ବାସ କରନ୍ତି। ଗହ୍ମା ପୁନେଇ ଓ ରାହାସ ପୂର୍ଣ୍ଣମୀରେ ରାଧାକୃଷ୍ଣଙ୍କୁ କେନ୍ଦ୍ର କରି ଆକର୍ଷଣୀୟ ଯାତ୍ରା ହୁଏ।

ଏଠାକାର ଝୁଲଣ ଯାତ୍ରା ବେଳେ ସୁପରିଚିତ ଯାତ୍ରା ଦଳ ନାଟକ ଅଭିନୟ କରନ୍ତି। ଏହି ନାଟକ ଦେଖିବାକୁ ବହୁ ଲୋକ ଯାଆନ୍ତି। ମୁଁ ମୋର ଅନ୍ତରଙ୍ଗ ବନ୍ଧୁ ଦଶ ଶ୍ରେଣୀର ମେଧାବୀ ଛାତ୍ର ବଂକିମ ଚନ୍ଦ୍ର ମହାନ୍ତି ସଙ୍ଗରେ ଯାତ୍ରା ଦେଖି ଗୋଟିଏ ଦୁଇଟି ରାତ୍ରି କଟାଇଛି। ଭାବପ୍ରବଣ କିଶୋର ବୟସରେ ଅନ୍ତରଙ୍ଗ ବନ୍ଧୁ ସହ ସମୟ ଯାପନ ଏପରି ଆନନ୍ଦ ଶିହରଣ ଦେଉଥିଲା, ତାହା ପରବର୍ତ୍ତୀ କାଳରେ ପ୍ରେମିକା ସହ ନିଭୃତ ସମୟ ଯାପନର ଉଲ୍ଲାସ ସହ ସମାନ। ଏହି ଚାନୁଗଞ୍ଜ ଗାଁରେ ଥାଏ ଏକ ବଡ଼ ବଗିଚା, ଆମ୍ବଗଛରେ ଭରପୂର। ଜମିଦାର ଛକଡ଼ିବାକୁ ଏହି ବଗିଚାଟିକୁ ଦାନ କରି ଦେଇଥିଲେ ଭଦ୍ରକ କଲେଜ ପ୍ରତିଷ୍ଠା ପାଇଁ ସ୍ୱର୍ଗତ ନର ପ୍ରସାଦ ଦାସ (ନରବାବୁ) ଗୋକୁଳାନନ୍ଦ ନାୟକ ମୂରଲୀଧର ଚେନାଙ୍କ ଉଦ୍ୟମରେ ଗଢ଼ିଉଠିଲା ଓଡ଼ିଶାର ବିଖ୍ୟାତ ଘରୋଇ କଲେଜ। ସାଳନ୍ଦୀ ନଦୀର ସୁଶୀତଳ ଜଳକଣା ମିଶା ମନ୍ଦପବନ ଓ ଆମ୍ରବୃକ୍ଷ ରାଜିର ଶୀତଳ ଛାୟା ବେଷ୍ଟିତ ଏକ ମନୋରମସ୍ଥଳୀରେ ଏହି ମହାବିଦ୍ୟାଳୟଟି ଶାନ୍ତି ନିକେତନର ଭାବ ବହନ କରି ଗଢ଼ି ଉଠିଥିଲା। ପ୍ରଥମ ଅବସ୍ଥାରେ ଅଧିକାଂଶ ଅଧ୍ୟାପକ ଥିଲେ ଢାକା, କଲିକତା ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀର। ଭଦ୍ରକ ସ୍କୁଲରେ ମୁଁ ଦଶମ ଶ୍ରେଣୀରେ ଅଧ୍ୟୟନ କରୁଥିଲା ବେଳେ, ଭଦ୍ରକ ସ୍କୁଲ ପ୍ରାଙ୍ଗଣରେ ଏକ ଅସ୍ଥାୟୀ ଗୃହରେ ଆଇ.ଏ. ଶ୍ରେଣୀର ପାଠ ପଢ଼ାଯାଉଥିଲା, ଫିନ୍‌ଫିନ୍ ଧଳା ଧୋତି ଓ ପଞ୍ଜାବୀ ପିନ୍ଧା ବଙ୍ଗାଳୀ ଅଧ୍ୟାପକଙ୍କ ଅନର୍ଗଳ ବକ୍ତୃତା ମୋ ପ୍ରାଣରେ ଅଧ୍ୟାପକ ହେବା ଅଭିଳାଷ ସୃଷ୍ଟି କରିଥିଲା। ଅବସ୍ଥା ଚକ୍ରରେ ହେଉ ବା ମୋ ଅନ୍ତରର ଅଭିଳାଷ ପୂର୍ଣ୍ଣ କରିବରେ ଈଶ୍ୱରଙ୍କ ଅନୁଗ୍ରହ ଯୋଗୁଁ ହେଉ ମୁଁ ହେଲି ଜଣେ ଅଧ୍ୟାପକ। ମୁଁ ଜାଣେନା ସେମାନଙ୍କ ଭଳି ମୁଁ କିଶୋର ତରୁଣମାନଙ୍କ ହୃଦୟ ସ୍ପର୍ଶ କରିପାରୁଥିଲି କି ନାହିଁ, ମୋର ଅଧ୍ୟାପନା ଭାଷଣରେ। ମୁଁ କିନ୍ତୁ ଏହି ବୃତ୍ତିରୁ ଯେ ଅପାର ଆନନ୍ଦ ଓ ଛାତ୍ରଛାତ୍ରୀମାନଙ୍କ ଠାରୁ ଅଯାଚିତ ଶ୍ରଦ୍ଧା ସମ୍ମାନ ପାଇଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଏହି କଲେଜର ବାର୍ଷିକୋତ୍ସବ ଯେପରି ଉତ୍ସାହ ଓ ଆଡ଼ମ୍ବର ସହ ହୁଏ ତାହା ଅବର୍ଣ୍ଣନୀୟ। ସମଗ୍ର ଭଦ୍ରକବାସୀ ସପ୍ତାହବ୍ୟାପୀ ଏହି ଉତ୍ସବରେ ଜ୍ଞାନଦୀପ୍ତ ଭାଷଣ, ସଂଗୀତ ନୃତ୍ୟ ନାଟକ ପରିବେଷଣ ହୃଦୟ ଭରି ଉପଭୋଗ କରନ୍ତି। ପ୍ରକୃତରେ ଭଦ୍ରକ ସ୍ୱାଧୀନତା ପର ନିର୍ମାଣ ଯୁଗର ଜନମାନସର ବ୍ୟାପ୍ତି ଓ ଦୀପ୍ତି ବିକାଶର ପ୍ରାଣବନ୍ତ ପ୍ରତୀକ ହୋଇ ଉଠିଥିଲା।

ଭଦ୍ରକ ଷ୍ଟେସନ୍ ନିକଟସ୍ଥ ଗ୍ରାମ ଚରମ୍ପାର କାଳିପୂଜା ସମଗ୍ର ଓଡ଼ିଶାରେ ବିଖ୍ୟାତ। ଷ୍ଟେସନ୍ ପାଖ ବ୍ୟବସାୟୀ ଓ ଅନ୍ୟମାନଙ୍କ ସାହାଯ୍ୟ ସହଯୋଗରେ ପ୍ରାୟଏକ ସପ୍ତାହ କାଳ

କାର୍ତ୍ତିକ ମାସର ଅମାବାସ୍ୟା ପରଠାରୁ ଏହି ଉତ୍ସବ ବହୁ ଆଡ଼ମ୍ବରରେ ପାଳିତ ହୁଏ। କାଳିପୂଜା ଓ ଅନ୍ୟ ଦେବଦେବୀ ଓ ଉପାଖ୍ୟାନମାନଙ୍କ ମୃଣ୍ମୟମୂର୍ତ୍ତି ପ୍ରଦର୍ଶନ, ସୁନ୍ଦର ସାଜସଜା, ଚକ୍ଷୁ, ଝଲସକାରୀ ବିଦ୍ୟୁତ୍ ଖଞ୍ଜା ଏବଂ ମେଳାରେ ବହୁ ପ୍ରକାର ରମଣୀୟ ଦୃଶ୍ୟ ଓ ଖେଳ, ଖେଳନା, ଅନ୍ୟାନ୍ୟ ଘରକରଣା ଦ୍ରବ୍ୟ ଭଦ୍ରକ-ବାଲେଶ୍ୱର-କେନ୍ଦୁଝର-ଯାଜପୁର ଲୋକମାନଙ୍କୁ ଆକର୍ଷି ଆଣୁଥିଲା। ଆମ ଛାତ୍ରବାସ ସବୁ ପ୍ରାୟ ୩ ମାଇଲ ଦୂର ହେଲେ ହେଁ ଚାଲି ଚାଲି ଏହି ମେଳା ଦେଖିବାକୁ ମୁଁ ଯାଉଥିଲି ଅନ୍ତରଙ୍ଗ ବନ୍ଧୁମାନଙ୍କ ସହ। ଏକ ସଙ୍ଗେ ନାନା ସୁସ୍ୱାଦୁ ଦ୍ରବ୍ୟ ଉପଭୋଗ କରିବା, ଯାତ୍ରା ନାଟକ ଓ ନୃତ୍ୟ ଦର୍ଶନ କରିବାର ଆନନ୍ଦ ଥିଲା ଅତୁଳନୀୟ ଏବଂ ଉଦ୍ଦୀପନାମୟ।

ଆଦ୍ୟ କୈଶୋର ଓ ତାରୁଣ୍ୟ ମୋ ମନର ଫୁଲ ବିକଶିତ ହୋଇଆସିଥିଲା, ଭଦ୍ରକର ପାଣି ପବନ ମାଟିର ରସଗନ୍ଧରେ, କୈଶୋର-ତାରୁଣ୍ୟର ଭାବପ୍ରବଣତା ନେଇ ଭଦ୍ରକ ସହର ଓ ତା'ର ଆଖପାଖ ଅଞ୍ଚଳକୁ ଏତେ ଭଲ ପାଉଥିଲି ଯେ ତା'ର ସ୍ମୃତିରେ ଆଜି ବିଭୋର ହୋଇଯାଏ। ଭାବ-ବିହ୍ୱଳ ମୋର କବି ପ୍ରାଣରେ ଗୁଞ୍ଜରି ଉଠେ ପ୍ରଖ୍ୟାତ ଇଂରାଜୀ କବି ଜନ୍ କିଟ୍ସଙ୍କ ମନୁ୍ୟ କାବ୍ୟ ପଂକ୍ତି-

"I Love your meads and I love your flows
And I Love your junkets mainly
But hind the door, I love kissing more,
O look not disdainly."

କବି କିଟ୍ସଙ୍କ ଡ଼େଭନର ପ୍ରାକୃତିକ ସୌନ୍ଦର୍ଯ୍ୟ, ସୁସ୍ୱାଦ ପାନୀୟ ଏବଂ କମନୀୟ ବାଳା ପ୍ରତି ଥିଲା ଗଭୀର ପ୍ରୀତି। ମୋର ବୟସ ହୋଇ ନଥିଲା ବାଳା ପ୍ରେମରେ ଆସକ୍ତ ହେବାକୁ। ମାତ୍ର ଭଦ୍ରକର ସାଙ୍ଗସାଥୀ ଗୁରୁଜନମାନଙ୍କ ପ୍ରତି ଥିଲା ଅପ୍ରମିତ ସ୍ନେହ, ଶ୍ରଦ୍ଧା ଓ ସମ୍ମାନ। ମୋ କୈଶୋର ତାରୁଣ୍ୟର କଳ୍ପନା ସୁନ୍ଦରୀ ଭଦ୍ରକର ମୋହିନୀ ରୂପ ମୋ ମାନସ ପଟରେ ଉଦ୍‌ଭାସି ଉଠୁଛି। ସମୟର ପ୍ରବାହରେ କେଉଁ ଆଡ଼େ ସେ ଗତି କରୁଛି ମୋର ବିଜ୍ଞାନୀ ନେତ୍ର ଦୁଇଟି ଦେଖିବାକୁ ବିଶେଷ ଆଗ୍ରହୀ ନୁହେଁ। କିନ୍ତୁ ମୋର ଭାବପ୍ରବଣ ମନ ତା'ର ଅତୀତର ଲାବଣ୍ୟମୟୀ ରୂପର ପଛେ ପଛେ ଧାଇଁ ଯାଉଛି। ପଛେ ଧାଇଁ ଧାଇଁ ନିରୀକ୍ଷଣ କରିବା ଭିତରେ କେଉଁଠି ଦେଖେ, ତା' ଭାଗ୍ୟ ଚନ୍ଦ୍ରର ମଦିର ଆଲୋକ ତ କେଉଁଠି ଦେଖେ ଅବହେଳା ପୀଡ଼ିତ ତା' ମନର କ୍ଲେଶ ଓ କ୍ଷୋଭ। ଏହି କ୍ଲେଶ ଓ କ୍ଷୋଭ ଦୂର କରିବା ପାଇଁ ମୋର ଅର୍ଥନୀତି-ମନ ବ୍ୟସ୍ତ ବିବ୍ରତ ହେଉଥିଲେ ହେଁ କିଛି କରିପାରୁ ନାହିଁ। ମୋର ଅପରାଗତା ଏବଂ ଭଦ୍ରକ ନେତୃବୃନ୍ଦ ବୁଦ୍ଧିଜୀବୀ-ପ୍ରଶାସକଙ୍କ ଐକାନ୍ତିକ ଇଚ୍ଛା ଓ ସଂଘବଦ୍ଧ ଉଦ୍ୟମର ଅଭାବ ଏଥିପାଇଁ ଦାୟୀ। ଭଦ୍ରକରେ ଜନ୍ମ ନେଇ ପାଠ ପଢ଼ି ସଂଗ୍ରାମ କରି ଉତ୍କଳ କେଶରୀ ହୋଇଥିଲେ ଡ଼କ୍ଟର ହରେକୃଷ୍ଣ ମହତାବ। ସମଗ୍ର ଓଡ଼ିଶା ପାଇଁ ତାଙ୍କର ଅବଦାନ ଅତୁଳନୀୟ। ମାତ୍ର,ଭଦ୍ରକ ଯେଉଁ ସ୍ତରକୁ ଉତ୍ତୀର୍ଣ୍ଣ ହେବାର ସମ୍ଭାବନା ଥିଲା ତା ସେ ପରିପୂର୍ଣ୍ଣ କରି ନଥିଲେ। ନୀଳମଣି ରାଉତରାୟ, ମୁରଲୀଧର ଜେନା, ହୃଦାନନ୍ଦ ମଲ୍ଲିକ,

ଯୁଗଳ କିଶୋର ପଟ୍ଟନାୟକ, ଚିରସ୍ମରଣୀୟ ଜନ ପ୍ରତିନିଧି ନିଜ ନିଜ ନିର୍ବାଚନ କେନ୍ଦ୍ର ବାସୁଦେବପୁର ଧାମନଗର ଥାନା ପାଇଁ ଯଥେଷ୍ଟ କାମ କରିଛନ୍ତି। ମାତ୍ର ସାମଗ୍ରିକ ଭାବେ, ପୂର୍ବର ଅଖଣ୍ଡ ବାଲେଶ୍ୱର ଓ ବର୍ତ୍ତମାନର ଭଦ୍ରକ ଜିଲ୍ଲାର ଅର୍ଥନୈତିକ ବିକାଶ ପାଇଁ ଯୋଜନାବଦ୍ଧ ସୁବିସ୍ତୃତ କାର୍ଯ୍ୟକ୍ରମ ନେଇ ନ ଥିଲେ। ତେଣୁ ସାମାଜିକ ଓ ଶିକ୍ଷା କ୍ଷେତ୍ରରେ ଭଦ୍ରକର ଅଗ୍ରଗତି ପ୍ରଶଂସନୀୟ ହୋଇଥିଲେ ହେଁ, ଅର୍ଥନୀତି କ୍ଷେତ୍ରରେ ପଛୁଆ ହୋଇରହିଛି।

ମୋର ଅକ୍ଷମତା ପାଇଁ ମୁଁ ଅବଶୋଷ କରୁଛି, ମାତ୍ର ମୋ ନିଜର ବିକାଶ ଓ ସେ କ୍ଷେତ୍ରରେ ଭଦ୍ରକ ସହର, ତା'ର 'ବିହ୍ୱଳ ବାସ୍ନାର ସାଳନ୍ଦୀ'ର ଅବଦାନ ଭୁଲିପାରିବ ନାହିଁ, ତେଣୁ ସ୍ମୃତିଚାରଣ କଲାବେଳେ କବି ମନୋରମା ବିଶ୍ୱାଳଙ୍କ ସହ ସ୍ୱର ତୋଳି ଗାଉଉଠେ:-

"ତୁ ମୋର ପ୍ରଥମ ପ୍ରେମ
ସବୁ ଭଲ ପାଇବାର ଶ୍ଲୋକ ତା ଭିତରେ
ଅନୁକ୍ଷଣ ତୋତେ ଅନୁଭବେ
ମେଘମୟ ମୁହୂର୍ତ୍ତରେ ଦିଗ୍‌ବିଜୟ ତନ୍ତେ।"

## (୨୫)

'ଉରୁ ଚକ୍ରବାକୀ ମହମକରନ୍ଦୀ ମସ୍ୟମୟୀ ସ୍ୱଚ୍ଛ ସଲୀଳା ସାଳନ୍ଦୀ।'

(କବି ଶେଖର ଚିନ୍ତାମଣି ମହାନ୍ତି)

ମୋ ଗାଆଁଠାରୁ କୋଡ଼ିଏ ମାଇଲ୍ ଦୂରରେ ବାଉଦ୍‌ପୁର। ଭଦ୍ରକଠାରୁ ତିନି ମାଇଲ ଦୂର। ସାଳନ୍ଦୀ ନଦୀ କୂଳରେ। ବାଉଦପୁରର ଅପରପାର୍ଶ୍ୱରେ ବାଗୁରାଇ। ଉଣିଶ ଦଶକରୁ ସ୍ୱର୍ଗତଃ ନରହରି ଦାସ ଓ ଅନ୍ୟ କେତେଜଣ ସମାଜସେବୀଙ୍କ ପ୍ରଚେଷ୍ଟାରେ ପ୍ରତିଷ୍ଠିତ ହୋଇଥିଲା ବାଗୁରାଇ ହାଇସ୍କୁଲ। ସେ ସ୍କୁଲରେ ମୋର ଅଗ୍ରଜ ତୁଲ୍ୟ ପୟୋଧର ମହାନ୍ତି ଓ ସଚ୍ଚିଦାନନ୍ଦ ମହାନ୍ତି ଅଧ୍ୟୟନ କରୁଥିଲେ। ସହରଠାରୁଅଳ୍ପ ଦୂରରେ ଗ୍ରାମୀଣ ପରିବେଶ। ସମ୍ଭବତଃ ସେଇଥିପାଇଁ ଏବଂ ପୟୋଧର ମହାନ୍ତି ଆମ ଗ୍ରାମ୍ୟ ଜମିଦାର ପଟ୍ଟନାୟକଙ୍କ ପୁଅ ସେ ସ୍କୁଲରେ ପଢୁଥିବାରୁ ଭାଇ ମୋର ନାମ ଅଷ୍ଟମ ଶ୍ରେଣୀରେ ବାଗୁରାଇ ସ୍କୁଲରେ ଲେଖାଇ ଦେଇଥିଲେ। ବାଗୁରାଇ ହାଇସ୍କୁଲର ବିଶେଷ ଆକର୍ଷଣ ଥିଲା ତା'ର ଶୃଙ୍ଖଳା ଓ ହେଡ୍‌ମାଷ୍ଟର କିଶୋରୀ ଚରଣ ଦାସଙ୍କ ସୁଖ୍ୟାତି। କିଶୋରୀବାବୁ ଜଣେ ଜ୍ଞାନୀ ଅବିବାହିତ ଧାର୍ମିକ ମନୋଭାବର ବ୍ୟକ୍ତି ଥିଲେ। ରାମକୃଷ୍ଣ ପରମହଂସଙ୍କ ପରମଭକ୍ତ। ଛାତ୍ରଛାତ୍ରୀମାନଙ୍କୁ ଆନ୍ତରିକ ସ୍ନେହ କରିବା ସଙ୍ଗେ ସଙ୍ଗେ ଧର୍ମ ଉପଦେଶ ଦେଉଥିଲେ। ତାଙ୍କର ଅଧ୍ୟାପନା ଏବଂ ଗଳ୍ପ ଛଳରେ ହିତୋପଦେଶ କୋମଳମତି ଶିଶୁ ଓ କିଶୋର କିଶୋରୀଙ୍କ ମର୍ମସ୍ପର୍ଶ କରୁଥିଲା। ସ୍କୁଲରେ ଗୋଟିଏ ଛାତ୍ରାବାସ ଥାଏ। ସେଥିରେ ୩୦.୪୦ ଜଣ ଛାତ୍ର ରହୁଥାନ୍ତି। ମୁଁ ଥାଏ ଛାତ୍ରାବାସରେ। ଛାତ୍ରବାସର ଅତ୍ୟଧିକ ଶୃଙ୍ଖଳା ଏବଂ ଛାତ୍ରାବାସର ତତ୍ତ୍ୱାବଧାରକ ଆମର

ଶିକ୍ଷକ ବାସୁଦେବ କରଙ୍କ କଠୋର ଶାସନ ଏବଂ ସ୍ନେହଶୂନ୍ୟ ବ୍ୟବହାର ମୋତେ ଭଲ ଲାଗୁ ନଥିଲା। ପିଲାଟି ବେଳୁ ମୁଁ ସ୍ୱାଧୀନଚେତା, ଅତ୍ୟଧିକ ଶୃଙ୍ଖଳା ମୋତେ ନିଶ୍ୱାସରୁଦ୍ଧ କରି ଦେଉଥିଲା। ସ୍କୁଲଟି ପାଲନ୍ଦୀ ନଦୀ କୂଳରେ। ପ୍ରଧାନ ଶ୍ରେଣୀଗୃହଗୁଡ଼ିକ ପକ୍କା କାନ୍ଥ ଓ ଟିଣ ଛପର। ସ୍କୁଲ ପଛପାଖ ଋଷଜମି, ସ୍କୁଲକୁ ଲାଗି କେତେଗୁଡ଼ିଏ ଆମ୍ବ ଗଛ, ସାମନ୍‌ରେ ଘାସର ପଡ଼ିଆ। ସ୍ଥାନଟି ବେଶ୍ ନିର୍ଜନ ଓ ମନୋରମ । ଗୋଟିଏ ସ୍କୁଲରେ ପାଠ ପଢୁଥିଲେ ହେଁ ଶିକ୍ଷକ ବାସୁଦେବ କରଙ୍କ କଡ଼ା ଦୃଷ୍ଟି ହେତୁ ବାଳକ ବାଳିକାଙ୍କ ମଧ୍ୟରେ ମୁକ୍ତ ମିଳାମିଶା ହୁଏ ନାହିଁ। ମୋ ଶ୍ରେଣୀରେ ତିନି ଋରିଜଣ ବଂଗାଳି ଝିଅ ପଢୁ ଥିଲେ - ବିମଳା, ଚିନ୍ମୟୀ ... । ଶେଷ ଝିଅଟି ବେଶ୍ ସୁନ୍ଦରୀ ଥିଲା। ସେମାନେ ଋହିଁଲେ ପୁଅ ପିଲାଙ୍କ ସଙ୍ଗେ କଥା କହୁଥିଲେ। ମାତ୍ର ପୁଅ ପିଲା ଆଗଭର ହୋଇ କଥା କହିଲେ ଶ୍ରେଣୀ ଶିକ୍ଷକଙ୍କ ଦୃଷ୍ଟିରେ ଦୋଷାବହ ଥିଲା। ମୋର ସ୍ୱାଧୀନ ମନ ଏହାର ପ୍ରତିବାଦ କରୁଥିଲା। ଥରେ ଶ୍ରେଣୀରେ କେତୋଟି ବାଳକ ଓ ଏହି ତିନୋଟି ସୁଶ୍ରୀ ବାଳିକାଙ୍କ ମଧ୍ୟରେ କ'ଣ ଯୁକ୍ତିତର୍କ ହେଲା। ଅବଳା ନାରୀ ପଣିଆର ସୁଯୋଗ ନେଇ ସେମାନେ ଶ୍ରେଣୀ ଶିକ୍ଷକଙ୍କ ନିକଟରେ କେତୋଟି ପୁଅ ପିଲାଙ୍କ ବିରୋଧରେ ଅଭିଯୋଗ କଲେ। ସେ ଯୁକ୍ତିତର୍କ ମୁଁ ସାମାନ୍ୟ ହସ୍ତକ୍ଷେପ କରିଥିଲି। କିନ୍ତୁ କାହିଁକି କେଜାଣି ସେମାନେ ଶିକ୍ଷକ ମହାଶୟଙ୍କ ନିକଟରେ ମୋ ବିରୋଧରେ କିଛି ନକହି ବରଂ ପ୍ରଶଂସା କଲେ। ମୁଁ ସେଦିନ ଆଶ୍ଚର୍ଯ୍ୟ ହୋଇଥିଲି। ନାରୀ ସୌନ୍ଦର୍ଯ୍ୟର ଆକର୍ଷଣ ମୋତେ ଛୁଉଁଥିଲେ ହେଁ ତାହା ମୋର ଆଦ୍ୟ କିଶୋରକୁ ଶିହରିତ କରୁ ନଥିଲା। ତେଣୁ ସେମାନଙ୍କ ପ୍ରଶଂସା ମୂଳରେ କି ସ୍ପଷ୍ଟ / ଅସ୍ପଷ୍ଟ କାରଣ ଥିଲା, ମୁଁ ଜାଣି ନ ଥିଲି। ପରବର୍ତ୍ତୀ କାଳରେ ଏ ଘଟଣା ମନେ ପଡ଼ିଲେ ଭାବେ ଏହା କ'ଣ ମୋ ପୁରୁଷପଣିଆ, ମୋ ମେଧା, ମୋ ମମତାଭରା ଦୃଷ୍ଟି ପ୍ରତି ଥିଲା ନାରୀ- ସୁଲଭ ଦରଦ ? ଏହି ତିନୋଟି ସୁନ୍ଦରୀଙ୍କ ସହ ପରବର୍ତ୍ତୀକାଳରେ ଦେଖା ସାକ୍ଷାତ ହୋଇଛି। ରେଭେନ୍ସା କଲେଜର ସରକାରୀ ଘରେ ଥିଲା ବେଳେ ବିମଳା ମୋର ପ୍ରତିବେଶିନୀ ହୋଇ ମୋ ସ୍ତ୍ରୀଙ୍କର ଅତି ପ୍ରିୟ ହୋଇ ଯାଇଥିଲା। ତା'ର ସ୍ୱାମୀ ଡକ୍ଟର ଆଶାମୁକୁଳମିତ୍ର ଉଦ୍ଭିଦ ବିଜ୍ଞାନରେ ପ୍ରଫେସର ଏବଂ ମୋର ଅତି ପ୍ରିୟ। ହତଭାଗିନୀ ବିମଳା ସ୍ତନକର୍କଟ ରୋଗରେ ଅକାଳରେ ଦେହତ୍ୟାଗ କଲା। ବନ୍ଧୁ ଡକ୍ଟର ମିତ୍ର ଏବେ ଭୁବନେଶ୍ୱରରେ ପୁଅ, ଝିଅ ନାତିନାତୁଣୀଙ୍କ ଗହଣରେ ସୁଖରେ ଅଛନ୍ତି। ଆମର ପାରିବାରିକ ସମ୍ବନ୍ଧ ଜୀବନରେ ଆନନ୍ଦର ଉତ୍ସ ହୋଇଛି। ଚିନ୍ମୟୀ ସହ ବେଳେବେଳେ ଦେଖା ହେଉଥିଲା। ତା'ର ପୁଅ ପଦାର୍ଥ ବିଜ୍ଞାନରେ ଜଣେ ଛାତ୍ର ପ୍ରିୟ କୃତୀ ଶିକ୍ଷକ। ସେ ବିଋରି ମଧ୍ୟ ଇହଧାମ ଛାଡ଼ିଗଲାଣି। ପଋଶ ଦଶକରେ ଓଡ଼ିଶାରେ ଶିକ୍ଷା ପ୍ରସାର ଯେତେବେଳେ ସୀମିତ ଥିଲା, ନିରକ୍ଷରତା ବ୍ୟାପକ ଥିଲା, ସେତେବେଳେ ବାଉଦପୁରକୁ ବିଦ୍ୟାନଗରୀ ବୋଲି କହୁଥିଲେ। କାରଣ ଏଠାକାର ବଂଗାଳି ଅଧିବାସୀ ସଂଖ୍ୟାଗରିଷ୍ଠ ଓ ଉଚ୍ଚ ଶିକ୍ଷିତ ଥିଲେ।

ହେଡ୍‌ମାଷ୍ଟର କିଶୋର ବାବୁ ଅବିବାହିତ ଥିଲେ। ରାମକୃଷ୍ଣ ପରମହଂସଙ୍କ ଜଣେ ପରମ ଭକ୍ତ ରୂପେ ବିବେକାନନ୍ଦଙ୍କଜୀବନୀ ଓ ଦର୍ଶନ ସଂପର୍କରେ ସେ ସଂପୂର୍ଣ୍ଣ ଅବହିତ ଥିଲେ।

ହେଡ୍‌ମାଷ୍ଟର ମହାଶୟ ଆମ ଅଷ୍ଟମ ଶ୍ରେଣୀ ପିଲାଙ୍କୁ ପଢ଼ାଉ ନ ଥିଲେ। ତେବେ ଥରେ କେଉଁ ଶିକ୍ଷକଙ୍କ ଅନୁପସ୍ଥିତିରେ ସେ ଆମ ଶ୍ରେଣୀକୁ ଆସି ଗୋଟିଏ ପ୍ରଶ୍ନ ପଚାରି ଥିଲେ - 'କୁସୁମ ପରଶେ ପଟ ନିଷ୍ଠରେ'ର ତାତ୍ପର୍ଯ୍ୟ କ'ଣ? ଶ୍ରେଣୀରେ ଅନ୍ୟ କେହି ଏହାର ଅର୍ଥ କହି ପାରି ନ ଥିଲେ। ମୁଁ ଏକମାତ୍ର ଛାତ୍ର ଯେ ଉତ୍ତରରେ କହିଥିଲା : 'ମହତ୍ ଲୋକର ସଂସ୍ପର୍ଶରେ ଆସିଲେ ସାଧାରଣ ଲୋକଟିଏ ମଧ୍ୟ ମହତ ହୋଇଯାଏ। କଦଳୀ ପଟୁଆକୁ କେହି ଠାକୁରଙ୍କୁ ପିନ୍ଧାନ୍ତି ନାହିଁ। ମାତ୍ର କଦଳୀ ପଟୁଆରେ ଫୁଲଗୁନ୍ଥି ଠାକୁରଙ୍କ ଗଳାରେ ମାଳା ଦିଆଯାଏ। ଫୁଲ ସଂସ୍ପର୍ଶରେ ଆସି ପଟୁଆ ବି ଉଚ୍ଚ ସ୍ଥାନ ପାଏ। ସେହିଭଳି ପରମହଂସଙ୍କ ସଂସ୍ପର୍ଶରେ ଆସି ବିବେକାନନ୍ଦ ଧର୍ମ ସଂସ୍କୃତି ଜଗତରେ ମହାନ୍ ହୋଇ ଯାଇଥିଲେ।'

ଉତ୍ତରଟି ପ୍ରଧାନଶିକ୍ଷକଙ୍କ ମନକୁ ପାଇଥିଲା। ସେହି ଦିନଠାରୁ ବୋଧହୁଏ ମୋତେ ସେ ଅଧିକ ସ୍ନେହ କରି ଚାଲିଲେ।ତାଙ୍କର ନିର୍ଜନ ଗୃହକୁ ମୋତେ କେତେ ବାର ଡକାଇଥିଲେ। ମୁଁ ତ ବିଶେଷ ଧର୍ମପ୍ରାଣ ନ ଥିଲି। ତାଙ୍କର ଦୀକ୍ଷା ନେଇ ପାରି ନଥିଲି। ଯେପରି ଆମ ଗ୍ରାମର ସଚିଦାନନ୍ଦ ବାବୁ ନେଇଥିଲେ। କିଶୋରୀ ବାବୁ ଅତ୍ୟନ୍ତ ସ୍ପଷ୍ଟବାଦୀ ଥିଲେ। ମୁଁ ଦିନେ ଦଶଟା ବେଳେ ଛାତ୍ରାବାସରୁ ସ୍କୁଲକୁ ଯାଉଥାଏ। ଛାତ୍ରାବାସ କୋଣଦେଇ ରାସ୍ତାଟିଏ ସ୍କୁଲ ଗୃହକୁ। ସେହି ବାଟେ ଆମ ଶ୍ରେଣୀର ଓ ଅନ୍ୟ ଶ୍ରେଣୀର ବାହାର ପିଲାମାନେ ବି ଯାଉଥାନ୍ତି। ସେମାନଙ୍କ ମଧ୍ୟରେ କେତେଜଣ ବାଳିକା ଥା'ନ୍ତି। ମୁଁ ବୋଧହୁଏ କୌତୂହଳବଶତଃ ସେମାନଙ୍କୁ ଚାହିଁଦେଲି। ମୋ ପଛେ ପଛେ ହେଡ୍‌ମାଷ୍ଟର କିଶୋରୀ ବାବୁ ଆସୁଥାନ୍ତି। ସେ ପଛଆଡୁ ମୋର ପିଠିରେ ସରୁ ଚାପୋଡ଼ାଟେ ମାରି କହିଲେ - କାହିଁକି ସେ ଆଡ଼କୁ ଚାହୁଁଛୁ? ମୁଁ କାହିଁକି, କାହାର ବା ଆକର୍ଷଣରେ ବା ଖାଲି ଖାଲି ଚାହୁଁ ଥିଲି ଜାଣି ନଥିଲି।

ମୋ ଗାଁ'ଠାରୁ ବାଗୁରାଇ ହାଇସ୍କୁଲ ୨୦ମାଇଲ୍ ଦୂର। କେଉଁ ଏକ ଛୁଟିରେ ଗାଁ'କୁ ଆସିଥାଏ। ଗାଁ'ରୁ ଭାଇଙ୍କଠାରୁ କିଛି ଟଙ୍କା ନେଇ ପୁରୀ ଯିବାକୁ ମନ ବଳିଥାଏ। ସେତେବେଳେ ଭାଇ ନୋହିଲେ ବାପା କଲିକତାରୁ ପୟୋଧର ମହାନ୍ତିଙ୍କ ନାମରେ ମୋ ପାଇଁ ବାଗୁରାଇକୁ ଟଙ୍କା ପଠାଉଥାନ୍ତି। ଘରୁ ଟଙ୍କା ମିଳିଲାନାହିଁ। ସକାଳୁ ଚାଲି ଚାଲି ବାଗୁରାଇ ଗଲି। ସେଠାକୁ ମଧ୍ୟ ଟଙ୍କା ଆସି ନ ଥିବା ବୁଝିଲି। ଛାତ୍ରାବାସ ବନ୍ଦ। ସେହିଦିନ ପ୍ରାୟ ଅପରାହ୍ନ ୫ଟା ବେଳୁ ବାଗୁରାଇରୁ ଫେରି ଆସିଲି। ପ୍ରାୟ ୭/୮ ମାଇଲ ରାସ୍ତା ପାଦରେ ଆସି ଅନ୍ନପାଳରେ ରାତି ୯ଟାରେ ପହଞ୍ଚିଲି। ସେ ରାତିଟି ଗୋଟିଏ ଦୋକାନ ଘରେ ବିଶ୍ରାମ ନେଲି। ମୋର ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଯାଦବ ନନ୍ଦ ମହାନ୍ତି, ଭଦ୍ରକରୁ ଜାମା, ପେଣ୍ଟ, ଶାଢ଼ି, ଧୋତି ଧରି ସେଠାରେ ପହଞ୍ଚିଲେ ଏବଂ ରାତିଟା ବିଶ୍ରାମ ନେଲେ। ସେ ଶିକ୍ଷକତା ସହ ଲୁଗାପଟା ବ୍ୟବସାୟ କରୁଥିଲେ ଧୁଷୁରୀ ହାଟରେ ହାଟପାଳି ଦିନ। ୧୨/୧୩ ବର୍ଷ ବୟସରେ ମୁଁ ଯେ ଗୋଟିଏ ଦିନରେ ଏତେ ବାଟ ଚାଲି ପାରୁଥିଲି ତା' ଭାବିଲେ ଆଜି ମୋତେ ବିସ୍ମୟ ଲାଗେ। ଆଜିକାର ପିଲାମାନେ ବିଶ୍ୱାସ କରିବେ ନାହିଁ।

ବର୍ଷଟି, ପୂରିଗଲା ବାଗୁରାଇ ସ୍କୁଲରେ । ନବମ ଶ୍ରେଣୀକୁ ଶ୍ରେଣୀରେ ଦ୍ୱିତୀୟ ହୋଇ ଉତ୍ତୀର୍ଣ୍ଣ ହୋଇଥାଏ। ମୋର ଇଚ୍ଛା ନ ଥାଏ ସେ ସ୍କୁଲରେ ପଢ଼ିବାକୁ। କାରଣ ସ୍ୱାଧୀନତା ପରେ ପରେ, ଭଦ୍ରକ ସହର ଚଳଚଞ୍ଚଳ ହୋଇ ଉଠିଥାଏ। ଭଦ୍ରକ ଓ ଉତ୍କଳର ବରପୁତ୍ର ହରେକୃଷ୍ଣ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ। ଭଦ୍ରକକୁ ବଡ଼ ବଡ଼ ନେତାଙ୍କର ଆଗମନ ହେଉଥାଏ। ଏହି ଉଦ୍ଦେଶ୍ୟରେ ଅନୁଷ୍ଠିତ ସଭାରେ ଯୋଗ ଦେବାକୁ ମୋର ପ୍ରବଳ ଆକାଂକ୍ଷା। ମାତ୍ର ତଳ ଶ୍ରେଣୀର ଛାତ୍ର ଥିବାରୁ ଆମର ବିଜ୍ଞ ଶିକ୍ଷକ ଛାତ୍ରାବାସର ତତ୍ତ୍ୱାବଧାରକ ଆମକୁ ସେ ସଭାକୁ ଯିବାକୁ ଅନୁମତି ଦେଉ ନଥିଲେ। ତେଣୁ ବାଗୁରାଇ ସ୍କୁଲରୁ ବଦଳି ସାର୍ଟିଫିକେଟ୍ ଆଣିବା ପାଇଁ ଦରଖାସ୍ତ କଲି। ମୋର ସୌଭାଗ୍ୟକୁ ମୋର ହିତୈଷୀ ଶ୍ରଦ୍ଧାସ୍ପଦ ହେଡ୍‌ମାଷ୍ଟର କିଶୋରୀ ବାବୁ ସେଦିନ ଅନୁପସ୍ଥିତ ଥା'ନ୍ତି। ତେଣୁ ଟି.ସି. ଆଣିପାରିଲି। ମୋର ଦୃଢ଼ବିଶ୍ୱାସ ସେ ସ୍କୁଲରେ ଉପସ୍ଥିତ ଥିଲେ, ମୋତେ ଟି.ସି. ଦେଇ ନ ଥା'ନ୍ତେ। ସ୍ନେହ ମିଶ୍ରିତ ମଧୁର କଥାରେ ପ୍ରଭାବିତ କରି ମୋର ସିଦ୍ଧାନ୍ତକୁ ବଦଳେଇ ଦେଇଥାନ୍ତେ।

ବାଗୁରାଇର ଗୋଟିଏ ବର୍ଷର ଛାତ୍ର ଜୀବନ ମୋ ଜୀବନଧାରାର ଏକ ମାଇଲଖୁଣ୍ଟ। ଛାତ୍ରାବାସରେ ବର୍ଦ୍ଧିଷ୍ଣୁ କିଶୋର ବୟସରେ ଅନ୍ୟମାନଙ୍କ ସହ ମିଳିମିଶି ଚଳିବାକୁ ମୁଁ ଶିଖିଲି। ଜୀବନରେ ସ୍ୱପ୍ନ ଓ କଳ୍ପନାର ଉନ୍ମେଷ ଏହିଠାରେ ଘଟିଥିଲା। ବାଗୁରାଇ ସ୍କୁଲ ପତ୍ରିକାରେ ପ୍ରକାଶ ପାଇଁ ମୁଁ ଗୋଟିଏ କବିତା ଦେଇଥିଲି। ତା'ର ନାମ ଥିଲା 'ବାରବାଟୀ'। ଲେଖାଟି ପତ୍ରିକାର ସଂପାଦକ ସଂସ୍କୃତ ପଣ୍ଡିତଙ୍କୁ ଅଭିଭୂତ କରିଥିଲା। ଅଷ୍ଟମ ଶ୍ରେଣୀର ଛାତ୍ରଟି ଏପରି ରାଧାନାଥୀୟ ଶୈଳୀ ଓ ଭାବରେ ଲେଖିପାରେ ବୋଲି ତାଙ୍କର ବିଶ୍ୱାସ ହେଉ ନଥିଲା। ତେଣୁ ସେ ମୋତେ ରାଧାନାଥଙ୍କ ଦରବାର କାବ୍ୟ ପଢ଼ି ନକଲ କରିଛୁ କି ବୋଲି ପଚାରିଥିଲେ। ମୁଁ କି ଉତ୍ତର ଦେବି ? ସେ ପର୍ଯ୍ୟନ୍ତ ମୁଁ ରାଧାନାଥଙ୍କ ଦରବାର କି ଅନ୍ୟ କାବ୍ୟ କିଛି ପଢ଼ି ନଥାଏ। ଜାତୀୟତା ଭାବରେ ଉଦ୍‌ବୁଦ୍ଧ ହୋଇ ଇତିହାସକୁ ମନେ ପକାଇ ଲେଖିଥାଏ କବିତାଟିଏ। ଏହି କବିତାଟି ଛାତ୍ରମାନଙ୍କ ମଧ୍ୟରେ ପ୍ରତିଯୋଗିତାରେ ପ୍ରଥମ ହୋଇଥିଲା। ସେ କାଳର ଓଡ଼ିଶାର ବିଖ୍ୟାତ କବି ଡକ୍ଟର ମାୟାଧର ମାନସିଂହ ସ୍କୁଲ ପରିଦର୍ଶକ ଥା'ନ୍ତି। ସେ ସ୍କୁଲର ବାର୍ଷିକ ଉତ୍ସବରେ ମୋତେ ପ୍ରଥମ ପୁରସ୍କାର ଦେଇଥିଲେ କବିତାରେ। ମୁଁ ଆଜୀବନ ରହିଗଲି ମାନସିଂହ ପ୍ରେମୀ।

ସଂଗୀତ ଓ କାବ୍ୟକଳା ପ୍ରତି ଯେଉଁ ମମତା ମୋଠାରେ ଭରି ରହିଥିଲା ପିଲାଦିନୁ, ତାହା କ୍ରିୟଶୀଳ ହୋଇ କବିତାର ଫୁଲଫୁଟାଇବାକୁ ସମର୍ଥ କରି ପାରିଥିଲା ଅଷ୍ଟମ ଶ୍ରେଣୀରେ ସାଳନ୍ଦୀକୂଳସ୍ଥ ବାଗୁରାଇ ସ୍କୁଲ ଛାତ୍ରାବାସରେ। ଏହା ପଛରେ ନିଶ୍ଚୟ ଏକ ଅଦୃଶ୍ୟ ଶକ୍ତିର ପ୍ରଭାବ ରହିଛି। ସାଳନ୍ଦୀର ସ୍ୱଚ୍ଛଜଳ, ସାଳନ୍ଦୀ କୂଳସ୍ଥ ସବୁ ଗଛପତ୍ର ଘେରା ଶାନ୍ତିର କୁଟୀର ଏବଂ ଜ୍ୟୋତ୍ସ୍ନାଲୋକରେ ଉଦ୍‌ଭାସି ଉଠୁଥିବା ବାଉଦପୁର ଗାଁ' ଏବଂ ତା' ନୀଳାକ୍ଷୀ ସୁକେଶୀ ଛଳ ଛଳ ଛନ ଛନ କିଶୋରୀମାନେ ଯେ ମୋତେ ଅଲକ୍ଷରେ ପ୍ରଭାବିତ କରି ଚାଲିଥିଲେ

ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ମୋ ଭିତରେ କବିତା ଜନ୍ମ ନେଇଥିଲା ବାଉଦପୁର ବାଗୁରାଇ ପାଣି, ପବନ ଓ ମାଟିରେ। ମୋ ଜୀବନର ମୂର୍ତ୍ତିମନ୍ତ କବିତା ମିଳିଥିଲା ବାଗୁରାଇ ସ୍କୁଲଜୀବନର ପ୍ରାୟ ୧୩ ବର୍ଷ ପରେ। ଏକ ସୁଶ୍ରୀ କୋମଳାଙ୍ଗୀ ସରଳା ବାଳିକାଟିଏ ଯେ ବାଗୁରାଇ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ବାଉଦପୁର ଷ୍ଟେସନରୁ ଘନଛାୟା ଆମ୍ରଗଛ ତଳେ ମୋ ପ୍ରତୀକ୍ଷାରେ ଥିବ ତା କ'ଣ ମୁଁ କିଶୋର ବୟସରେ କଳ୍ପନା କରିଥିଲି ? ଯେଉଁ ମାଟି ଉପରେ ମୋ କୈଶୋର ଓ ତାରୁଣ୍ୟର ସ୍ୱପ୍ନିଳ ପାଦ ପଡ଼ି କବିତା କୁସୁମ ଫୁଟି ଉଠିଥିଲା, ଯେଉଁ ପବନର ମାଦକ ମୋ ଜୀବନର ରଜନୀଗନ୍ଧା ପାଇଟି ଯାଇଥିଲା, ତାର ସ୍ମୃତିରେ ମୁଁ ଆଜି ବିଭୋର।

(୨୬)

ଭଦ୍ରକ ହାଇସ୍କୁଲର ଶତବାର୍ଷିକ ଉତ୍ସବ। ମୋ ପରି ଜଣେ ପୁରାତନ ଛାତ୍ରର ପ୍ରାଣ ଉଲ୍ଲସି ଉଠିବା ସ୍ୱାଭାବିକ। ଭଦ୍ରକ ହାଇସ୍କୁଲ ବାଲେଶ୍ୱରରେ ନୁହେଁ, ସାରା ଓଡ଼ିଶାର ଶିକ୍ଷା ସଂସ୍କୃତିର ବିକାଶ କ୍ଷେତ୍ରରେ ଏକ ସୁପରିଚିତ ଆଦର୍ଶ ଅନୁଷ୍ଠାନ।

ଆଜି ମୋର ସ୍ପଷ୍ଟ ମନେ ପଡୁଛି। ୫୫ ବର୍ଷ ତଳର କଥା। ମଧ୍ୟ ଇଂରାଜୀ ବିଦ୍ୟାଳୟ ସାଧାରଣ ପରୀକ୍ଷା (Common examination) ଦେବା ପାଇଁ ଆମେ କେତେ ଜଣ ଛାତ୍ର କୋଠାରରୁ ଭଦ୍ରକସ୍ଥ ନାରାୟଣ ଚନ୍ଦ୍ର ହାଇସ୍କୁଲକୁ ଆସିଥାଉଁ। ମନ ବ୍ୟଗ୍ର; କିମିତି ପରୀକ୍ଷା ସରିବ; ଆମେ ପ୍ରଖ୍ୟାତ ଭଦ୍ରକ ହାଇସ୍କୁଲ ଏବଂ ତା'ର ପ୍ରବୀଣ ପ୍ରଧାନ ଶିକ୍ଷକ ସ୍ୱର୍ଗତ ଗୋକୁଳାନନ୍ଦ ନାୟକଙ୍କୁ ଦର୍ଶନ କରିବୁ। ପରୀକ୍ଷା ପରେ ଭଦ୍ରକ ହାଇସ୍କୁଲକୁ ଚାଲିଗଲୁ। ପ୍ରଧାନଶିକ୍ଷକ ମହୋଦୟ ଆସି ନ ଥାନ୍ତି। ନିରାଶ ମନରେ ଫେରି ଆସୁଥିଲୁ। ଭଦ୍ରକ ସହରର ପ୍ରଧାନ ରାସ୍ତାରେ ତାଙ୍କର ଦର୍ଶନ ମିଳିଲା। ମନର ଆନନ୍ଦ କହିଲେ ନ ସରେ। ସ୍ୱର୍ଗତ ଗୋକୁଳାନନ୍ଦ ନାୟକଙ୍କ ଖ୍ୟାତି ଯେ ଏତେ ବ୍ୟାପକ ଏବଂ ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣ ଯେ ଏତେ ପ୍ରବଳ ଥିଲା ତା ଆଜିର ପରିପ୍ରେକ୍ଷୀରେ ବିଶ୍ୱାସ କରି ହୁଏନି।

ମୋର ପିଲା ମନରେ ଏକ ତୀବ୍ର ବାସନା ଥାଏ। ଖ୍ୟାତନାମା ଶିକ୍ଷାନୁଷ୍ଠାନରେ ପାଠ ପଢ଼ିବି। ମାଇନର ପାଶ୍ ପରେ ମୋର ଅନିଚ୍ଛା ସତ୍ତ୍ୱେ ମୋତେ ବାଗୁରାଇ ହାଇସ୍କୁଲରେ ଭର୍ତ୍ତି କରାଗଲା। ସେତେବେଳେ ଏହି ସ୍କୁଲଟି ଶୃଙ୍ଖଳା ଶିକ୍ଷା ଓ ବ୍ୟକ୍ତିଗତ ଯତ୍ନ ନେବା ପାଇଁ ଭଦ୍ରକ ସବ୍‌ଡ଼ିଭିଜନରେ ବେଶ୍ ପ୍ରଶଂସିତ ହୋଇଥିଲା। ସ୍କୁଲର ତଦାନୀନ୍ତନ ପ୍ରଧାନ ଶିକ୍ଷକ ସ୍ୱର୍ଗତ କିଶୋରୀକିଙ୍କର ଦାସ ଜଣେ ଧାର୍ମିକ ଛାତ୍ରବତ୍ସଳ, ଜ୍ଞାନୀ ଲୋକ ଥିଲେ। ତାଙ୍କ ବ୍ୟକ୍ତିତ୍ୱର ପ୍ରବଳ ଆକର୍ଷଣ ଥିଲା। ମାତ୍ର ଅଷ୍ଟମ ଶ୍ରେଣୀ ଛାତ୍ର ଭାବରେ ତାଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ମୁଁ ପାଇ ନଥିଲି। ଦିନେ କିଜାଣି କାହିଁକି ସେ ଆମ ଶ୍ରେଣୀକୁ ଚାଲି ଆସିଥିଲେ। ଏବଂ ଆମ୍ଭମାନଙ୍କୁ କେତୋଟି ପ୍ରଶ୍ନ ପଚାରିଥିଲେ। ସେଥିରୁ ଗୋଟିଏ ହେଉଛି - "କୁସୁମ ପରଶେ ପଟ ନିସ୍ତରେ"- ବୁଝାଅ। ସମଗ୍ର ଶ୍ରେଣୀରେ ମୁଁ ଏକମାତ୍ର ଛାତ୍ର ଯେ

କି ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦଙ୍କ ସମ୍ପର୍କର ଉଦାହରଣ ଦେଇ ବାକ୍ୟଟିର ଅର୍ଥ ବୁଝାଇ ଥିଲି। ପ୍ରଧାନଶିକ୍ଷକ ମହୋଦୟ ଖୁସି ହୋଇଥିଲେ ଏବଂ ପରେ ତାଙ୍କ ଘରକୁ ମୋତେ ଡାକିଥିଲେ। ତାଙ୍କ ପ୍ରତି ମୁଁ ଆକୃଷ୍ଟ ହୋଇ ଆସୁଥିଲେ ହେଁ ସେ ସ୍କୁଲ ପ୍ରତି ମୋର ମମତା ବଢୁ ନ ଥିଲା। ନିୟମିତ ଅଧ୍ୟାପନା ସତ୍ତ୍ୱେ ସେଠାକାର ବାତାବରଣରେ ରକ୍ଷଣଶୀଳତା ଓ ସଂକୀର୍ଣ୍ଣତା ଭରିଥିବାର ମୁଁ ଉପଲବ୍ଧି କରୁଥିଲି। ତାର କାରଣ ବୋଧହୁଏ ଥିଲା ଛାତ୍ରାବାସର କଡ଼ା ନିୟମ ଓ ଛାତ୍ରାବାସ ପରିଚାଳକଙ୍କ ଅନୁଦାର ମନୋଭାବ ଓ ଦୂରଦୃଷ୍ଟିର ଅଭାବ। ଅପରପକ୍ଷରେ ଭଦ୍ରକ ହାଇସ୍କୁଲ ମୋ ନିକଟରେ ପ୍ରଗତିବାଦୀ ଓ ନୂତନ ଯୁଗ ନିର୍ମାଣର ଏକ ମନୋରମ ଭାବମୂର୍ତ୍ତି ଉପସ୍ଥାପିତ କରୁଥାଏ। ସ୍ୱାଧୀନତାର ଠିକ୍ ପରବର୍ତ୍ତୀ ବର୍ଷମାନଙ୍କରେ ଭଦ୍ରକ ହାଇସ୍କୁଲ ପ୍ରାଙ୍ଗଣରେ ରାଜ୍ୟମନ୍ତ୍ରୀ ଓ ତୁଙ୍ଗ ନେତାମାନଙ୍କର ସାମୟିକ ସମାବେଶ ଓ ତଜ୍ଜନିତ ବିରାଟ ସାଧାରଣ ସଭା ସେ ସ୍କୁଲରେ ମୋର ପଢ଼ିବାର ଇଚ୍ଛାକୁ ବଢ଼ାଇ ଚାଲିଥାଏ। ନବମ ଶ୍ରେଣୀ ଆରମ୍ଭରେ ମୁଁ ଭଦ୍ରକ ହାଇସ୍କୁଲକୁ ଚାଲି ଆସିଲି।

ଏଠାରେ ମୋର ଦୃଷ୍ଟିକୋଣ ପ୍ରସାରିତ ହେବାକୁ ଲାଗିଲା। ଶ୍ରେଣୀ ପାଠ, କବିତା ରଚନା ଓ ସଙ୍ଗୀତରେ ମୋର ସମପ୍ରକାର ଆଗ୍ରହ ଓ ଦକ୍ଷତା ଥିଲା। ପ୍ରଖ୍ୟାତ ସଙ୍ଗୀତ ଶିକ୍ଷୀ ଜଗବନ୍ଧୁ ସାହୁଙ୍କ ନିକଟରେ ସଙ୍ଗୀତ ଶିଖି, 'ସାଳନ୍ଦୀ' ପତ୍ରିକାରେ କବିତା ପ୍ରକାଶ କରି ଓ ପ୍ରତିଯୋଗୀ ମନୋଭାବ ନେଇ ପାଠପଢ଼ି ଛାତ୍ର ଜୀବନର ପୂର୍ଣ୍ଣ ଆନନ୍ଦ ପାଉଥିଲି। ଉତ୍କଳ ବିଶ୍ୱବିଦ୍ୟାଳୟର ମେଟ୍ରିକୁଲେସନ୍ ପରୀକ୍ଷାରେ ଲାଗ ଲାଗ ଦୁଇବର୍ଷ ଧରି (୧୯୪୮ ଓ ୧୯୪୯) ଭଦ୍ରକ ହାଇସ୍କୁଲ ପ୍ରଥମ ହେବାର ଗୌରବ ଅର୍ଜନ କରିଥାଏ। ଏତେ ବିଜ୍ଞ, ନିଷ୍ଠାପର ଓ ଦକ୍ଷ ଶିକ୍ଷକ ଅନ୍ୟତ୍ର କ୍ୱଚିତ୍ ଦେଖିବାକୁ ମିଳୁଥିଲେ। ପ୍ରଧାନଶିକ୍ଷକ ସ୍ୱର୍ଗତ ଗୋକୁଳାନନ୍ଦ ନାୟକ, ଇତିହାସ ଓ ଇଂରାଜୀ ଶିକ୍ଷକ ଶ୍ରୀଯୁକ୍ତ ବାଉଧର ପାଢ଼ୀ, ଇଂରାଜୀ ଶିକ୍ଷକ ଶ୍ରୀଯୁକ୍ତ ଗୌରଗୋପାଳ ଜେନା, ଶ୍ରୀଯୁକ୍ତ ଫଣୀଭୂଷଣ ନାୟକ, ଗଣିତ ଓ ବିଜ୍ଞାନ ଶିକ୍ଷକ ଶ୍ରୀଯୁକ୍ତ ପ୍ରାଣବନ୍ଧୁ ଜେନା, ସଂସ୍କୃତ ଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର ଓ ସାହିତ୍ୟ ଶିକ୍ଷକ ଶ୍ରୀଯୁକ୍ତ ହରିବନ୍ଧୁ ସାହୁ- ଏକକୁ ଆରେକ ଥିଲେ। ମନେ ହୁଏ ଅଧ୍ୟାପନା ସେମାନଙ୍କର କେବଳ ଜୀବିକା ନିର୍ବାହର ପନ୍ଥା ନ ଥିଲା ଜୀବନଯାପନର ଧାରା ଥିଲା। ସେମାନଙ୍କର ଶୃଙ୍ଖଳାଜ୍ଞାନ, ନିୟମାନୁବର୍ତ୍ତିତା ଓ ଉଦାରତା ଅତୁଳନୀୟ ଥିଲା।

ଶ୍ରେଣୀ ପରୀକ୍ଷାରେ ଦ୍ୱିତୀୟ ହୋଇ ଦଶମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବା ପରେ ପୂଜ୍ୟ ଗୁରୁଦେବ ଶ୍ରୀଯୁକ୍ତ ବାଉଧର ପାଢ଼ୀ ମୋତେ ଡାକି କହିଲେ, "ମନ ଦେଇ ଆଜିଠାରୁ ପଢ଼ାପଢ଼ି କର, ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପ୍ରଥମ ଦଶଜଣ ମଧ୍ୟରେ ଯେପରି ନାମ ରହେ।" ସେହିଦିନଠାରୁ ମୋ କବିତାର ସ୍ରୋତ ଧିମେଇବାକୁ ଲାଗିଲା। ଜ୍ଞାନ ଆହରଣର ପିପାସା ବଢ଼ିଲା। ତାଙ୍କର ତତ୍ତ୍ୱାବଧାନରେ ଦୁଇବର୍ଷ କାଳ ପଢ଼ା ପଢ଼ି କଲି। ଅଦମ୍ୟ ପରିଶ୍ରମ। ଦୁର୍ଭାଗ୍ୟକୁ ଆଶାନୁରୂପ ଫଳ ଫଳିଲା ନାହିଁ। ମୋର ଅସୁନ୍ଦର ହସ୍ତାକ୍ଷର କାଳ ହେଲା।

ବିଜ୍ଞାନ ଓ ଗଣିତ ଶିକ୍ଷକ ଶ୍ରୀଯୁକ୍ତ ପ୍ରାଣବନ୍ଧୁ ଜେନାଙ୍କ ଅକୁଣ୍ଠିତ ସାହାଯ୍ୟ ମୋ ଜୀବନରେ ଅବିସ୍ମରଣୀୟ ହୋଇରହିଛି, ରହିବ ମଧ୍ୟ। ଜ୍ଞାନପିପାସୁ ମେଧାବୀ ଛାତ୍ରମାନଙ୍କୁ ବିନା ପାରିଶ୍ରମିକରେ ଜ୍ଞାନ ବିତରଣ କରିବାକୁ ତାଙ୍କର ଉତ୍ସୁକତା ପ୍ରତ୍ୟେକ ଶିକ୍ଷକଙ୍କର ଅନୁକରଣୀୟ।

ପ୍ରଧାନ ଶିକ୍ଷକ ସ୍ୱର୍ଗତ ଗୋକୁଳାନନ୍ଦ ନାୟକ ସବୁଥିରେ ଥିଲେ ପ୍ରଧାନ। ପ୍ରତ୍ୟେକ ଶନିବାର ତାଙ୍କର ଧର୍ମ ପ୍ରବଚନ ଛାତ୍ରମାନଙ୍କ ମନରେ ଗଭୀର ରେଖାପାତ କରୁଥିଲା। ପିଲାମାନଙ୍କର ଚରିତ୍ର ଗଠନ ପାଇଁ ତାଙ୍କର ପ୍ରଚେଷ୍ଟା ବାସ୍ତବିକ ଶିକ୍ଷଣୀୟ। ତାଙ୍କ ବ୍ୟକ୍ତିତ୍ୱ ଓ କଥାର ଶକ୍ତି ଛାତ୍ରମାନଙ୍କୁ ବଶୀଭୂତ କରି ରଖୁଥିଲା। ଗୋଟିଏ ଦିନର ଘଟଣା। "ଆଦବକାଇଦା" ଉପରେ ଲେଖା ଗୋଟିଏ ଇଂରାଜୀ ସଂଦର୍ଭ ସେ ଆମକୁ ପଢ଼ାଉଥାନ୍ତି। ପ୍ରବନ୍ଧକାର ଲେଖିଥାନ୍ତି, "ଲୋକର ପୋଷାକ ପରିଚ୍ଛଦ ତାର ସାମାଜିକ ସ୍ଥିତି ଉପଯୋଗୀ ହେବା ଉଚିତ।" ସମଗ୍ର ଶ୍ରେଣୀରେ ମୁଁ ଥିଲି ଏକମାତ୍ର ଫୁଲ୍‌ପେଣ୍ଟ ପିନ୍ଧାଳି। ପ୍ରଧାନ ଶିକ୍ଷକଙ୍କ ବ୍ୟାଖ୍ୟା ଶ୍ଳେଷପୂର୍ଣ୍ଣ ମନେ ହେଉଥିଲା ଏବଂ ତାହା ମୋତେ ବିଦ୍ଧ କରୁଥାଏ। ଅର୍ଥନୈତିକ ଦୃଷ୍ଟିକୋଣରୁ ଫୁଲପେଣ୍ଟ ପିନ୍ଧିବାକୁ ସ୍ଥିର କରିଥିବା ମୋର ଯୁକ୍ତିବାଦୀ ମନ ଲଜ୍ଜାରେ ଝାଉଁଳି ପଡ଼ିଥିଲା।

ସଂସ୍କୃତ ଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ରଙ୍କର ଜାତୀୟତା ଓ ହିନ୍ଦୁ ସଂସ୍କୃତିର ଉତ୍କର୍ଷସୂଚକ ଉଦ୍‌ବୋଧନ ମୋ ପ୍ରାଣରେ ଜାତିପ୍ରେମର ଉଦ୍‌ବେଳନ ସୃଷ୍ଟି କରିଥିଲା।

ଅତୀତର ଭଦ୍ରକ ହାଇସ୍କୁଲ ବାଲେଶ୍ୱର ଜିଲ୍ଲାର ଶିକ୍ଷକ, ସଂସ୍କୃତି ଓ ପ୍ରଗତି ଜୀବନର ନାଭିକେନ୍ଦ୍ର ଥିଲା। ତାର କୃତୀ ଶିକ୍ଷକ ଓ ଛାତ୍ରମାନେ ଜାତୀୟ ଚେତନାର ଅଭିବୃଦ୍ଧି, ସ୍ୱାଧୀନତା ସଂଗ୍ରାମର ପ୍ରସାର ଓ ସ୍ୱାଧୀନତା ପରବର୍ତ୍ତୀ ନୂତନ ଯୁଗ ନିର୍ମାଣରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛନ୍ତି। ସମାଜ ଗତିଶୀଳ। ସମାଜର ସମସ୍ୟା ଚିରନ୍ତନ। ସମୟର ପରିବର୍ତ୍ତନ ସଙ୍ଗେ ନୂତନ ସମସ୍ୟାର ଆବିର୍ଭାବ ସ୍ୱାଭାବିକ। ଏକ ସୁଖ-ସମୃଦ୍ଧି- ସମନ୍ନ ସମାଜ ଗଠନ ଦିଗରେ ଭଦ୍ରକ ହାଇସ୍କୁଲ ତାର ଛାତ୍ରମାନଙ୍କ ମଧ୍ୟରେ ସମୟୋପଯୋଗୀ ନୂତନ ପ୍ରଚେଷ୍ଟାର ମନୋଭାବ ସୃଷ୍ଟି କରି ତାର ଗୌରବମୟ ଐତିହ୍ୟ ବଜାୟ ରଖିଥିବ।

## (୨୭)

"କାଞ୍ଚନ ଆଉଁସି ଦେଲା ମୋ କପାଳ କେତେ
ତାତି ଅଛି ଜାଣିବାକୁ ତା ହାତ ରଖିଲା,
ମୋ ଛାତିରେ, ସେତେବେଳେ ଇଚ୍ଛା ହେଲା ମୋର
ଦି' ଚାରି ମାସ ହେଲେ ଏ ଜରରହନ୍ତା ଓ
କାଞ୍ଚନ ଦିନରାତି ମୋ ଶେଯ ପାଖେ ବସି କରୁଥାନ୍ତା ଏପରି ଆଦର।"

*(କବି ରମାକାନ୍ତ)*

କିଏ ଜାଣେ ପ୍ରସିଦ୍ଧ ଇଂରାଜୀ କବି କହିଥିଲେ, 'ଜଣେ କବିର ଲେଖା ସାରା ବିଶ୍ୱକୁ ଏକ ଚିଠି'। କବି ରମାକାନ୍ତଙ୍କ ଅନୁଭୂତି ବିଶ୍ୱବ୍ୟାପୀ କୈଶୋରର ଅନୁଭୂତି। ପରିଣତ ବୟସରେ ସ୍ମୃତି ଚାରଣ କଲାବେଳେ କୈଶୋରର ସେ ରୋମାଞ୍ଚିତ ଅନୁଭୂତି ଭାଷାର ଲାଳିତ୍ୟରେ ବିମଣ୍ଡିତ ହୋଇ ଆତ୍ମପ୍ରକାଶ କରେ। ସେଦିନ ଯେ ସୁନ୍ଦରୀ ପୌଢ଼ା ଗ୍ରାମ୍ୟନାରୀଟି ମୋ କାନ୍ଧ ଉପରେ ଶ୍ରଦ୍ଧାର ହାତ ରଖି କହିଲା "ବାପୁବାବୁ ତୁମକୁ ଗାଁ ଲୋକେ ସବୁବେଳେ ମନେ ପକାଇବେ" ଯାର ପଛପଟେ ଠିଆ ହୋଇଥିଲା ତାର ତରୁଣୀ ପାଠୋଇ ଝିଅ, ତାର ତାରୁଣ୍ୟର ଅକୁହା ବାସନା, ମୋ ଭଳି ଜଣେ ତତ୍କାଳିକ ଶିକ୍ଷିତ ଯୁବକ  ଦିଅର ପ୍ରତି ସ୍ନେହ ପ୍ରକାଶର ପ୍ରତିବିମ୍ବ କି ?  ତାହା ସତ ହେଉ କି ନ ହେଉ ଗାଁର ଲେଖାଯୋଖା ଏହି ନୂଆ ବୋଉର ପ୍ରଶଂସାବାଚକ ଦରଦୀ ସ୍ପର୍ଶ ଓ କଥା ଯେ ମୋତେ ପଚାଶବର୍ଷ ତଳକୁ ଟାଣି ନେଲା ଏଥିରେ ତିଳେ ମାତ୍ର ସଂଦେହ ନାହିଁ। ସ୍ୱଚ୍ଛ ମନ ଅନାବିଳ ସ୍ନେହ ଅକୃତିମ ରୂପ ଲାବଣ୍ୟରେ ମୋ ଗାଆଁର ଝିଅବୋହୂମାନେ ମୋତେ ଯେ ପିଲାଟିବେଳୁ କେତେ ଆନନ୍ଦ ଦେଉଥିଲେ ଏବଂ ମୋ ମନରେ ନୂଆ ନୂଆ ଭାବ ଉଦ୍ରେକ କରୁଥିଲେ ଏହା କଳ୍ପନା କରି ହେବନି। ଏବେ ଯେଉଁ କଲେଜ ପଢ଼ା କିଶୋରୀଟି ସେହି ଗାଁରେ ବାହା ହୋଇଥିବା ମୋ ଭଉଣୀର ନାମୋଚ୍ଚାରଣରୁ ମୋତେ ଚିହ୍ନିଲା ଏବଂ ମୋର ଅର୍ଥନୀତି ବହି ପଢ଼ିଥିବାରୁ ଛଳ ଛଳ ଆଖିର ବିସ୍ମୟାନନ୍ଦରେ ଚାହିଁ ରହିଲା, ତା'ର ମାଆ ତରୁଣୀ ବୟସରେ ମୋର ବିଦ୍ୟାବୁଦ୍ଧି ଓ ଉଚ୍ଚ ଶିକ୍ଷା ପାଇଁ ବହୁ ବର୍ଷ ତଳେ ମୋ ପ୍ରତି ଯେ ଶ୍ରଦ୍ଧାଶୀଳ ଥିବ ଏହା କ'ଣ ଅବିଶ୍ୱସନୀୟ ? ସମୟ ଓ ଜୀବନ ଏକ ପ୍ରବହମାନ ନଦୀ, ଗଡ଼ିଚାଲେ ଆଗକୁ ଆଗକୁ ମହାକାଳ ଓ ମହାସାଗରରେ ବିଲୀନ ହୋଇଯିବାକୁ। ତେବେ ଏହି ମାଟି ଉପରେ ତାର ସ୍ଥିତି ଥିବାଯାଏ ସେ କଳକଳ ନାଦ କରି ଚାଲିଥିବ, ସ୍ପର୍ଶ ବା ଅସ୍ପର୍ଶର ଶାନ୍ତ ପ୍ରଲେପରେ ଅନ୍ୟକୁ ବିମୋହିତ କରୁଥିବ। ଆଜିଏ ପୃଥିବୀର ମଧୁମୟ ପରିବେଶରୁ ବିଦାୟ ନେବାବେଳ ନିକଟତର ହୋଇ ଆସୁଥିବା ବେଳେ ମନେ ପଡ଼ିଯାଏ, ମୋର କାଞ୍ଚନ ଯାଗାରେ ଚମ୍ପା, ମଲ୍ଲୀ, ପାର୍ବତୀ, ଆଦ, ସାଦ, ରତି, ସୁକୁଟୀକଥା, ପାଠ ସାଥୀ ବା ଖେଳସାଥୀ, ମନେ ପଡ଼ିଯାଏ ନବବିବାହିତା କେତେ ନୂଆବୋଉ,  ଧରମ ଭଉଣୀ, ମାଇଁ ହେରିକାଙ୍କ କଥା।

ଜହ୍ନରାତିରେ ଗାଁ ଦାଣ୍ଡରେ ଲୁଚକାଳି ଧାଁଦଉଡ଼ ଖେଳ ଖେଳୁଥିଲା ବେଳେ ଗୋରୀ ଛନ ଛନ ମଲ୍ଲିକୁ 'ଘେର' କହି ଜାବୋଡ଼ି ଧରିବାର ନିର୍ମଳ ଉଲ୍ଲାସ ମୁଁ କେତେ ଅନୁଭବ କରୁଥିଲି ମନେ ନାହିଁ, କି ସ୍ପନ୍ଦନ ଜାତ ହେଉଥିଲା ମୋର ଶିଶୁ ହୃଦୟରେ କହି ହେବନି, ତେବେ ତାର ବଡ଼ ଭଉଣୀ ପାଇ, ମୋର ବଡ଼ଭଉଣୀଙ୍କ କେଶୀ ମୃଦୁ ଭର୍ତ୍ସନାର ତାତ୍ପର୍ଯ୍ୟ ସେତେବେଳେ ମୁଁ ହୃଦୟଙ୍ଗମ କରି ନ ଥିଲି, ଏବେ ମନେପଡ଼ିଲେ ସେମାନଙ୍କ ଗାଳିର ଅର୍ଥ ବୁଝି ହସ ଲାଗେ। ସେମାନେ ସେତେବେଳକୁ 'ବଡ଼' ହୋଇ ଯାଇଥିଲେ। ପୁରୁଷ ପିଲାର ସ୍ପର୍ଶଠାରୁ ଦୂରରେ ରହିବାର ଅନିବାର୍ଯ୍ୟତା ଉପଲବ୍ଧି କରିଥିଲେ। ମୋର ଯୌବନ ସଂପର୍କରେ ସମ୍ୟକ ଜ୍ଞାନ ହେବା ପୂର୍ବରୁ ମାଲ୍ଲୀ ମୋ ସାହିର ଜନୈକ ମୃତଦାର ଯୁବକର

ଦ୍ୱିତୀୟ ପତ୍ନୀ ହୋଇଯାଇଥିଲା। ଗୋଟିଏ ପୁଅ ଓ ଝିଅର ମାଆ ହେବାର ଗୌରବ ଅର୍ଜ୍ଜନ କରି ଅକାଳରେ ସେ ଇହଧାମ ତ୍ୟାଗ କରିଗଲା।

ହଁ ମୋର ସମବୟସୀ ଝିଅ ପାର୍ବତୀ ଗୋଲମୁହଁ ଗୌରବର୍ଣ୍ଣ ସ୍ୱାସ୍ଥ୍ୟବତୀ। ରାଢ଼ୀ ଘରର ଝିଅ, ଚୂଡ଼ା କୁଟି, ଉଷ କରି ମୂଲ ଲାଗି ବାପା ମାଆ ପୋଷନ୍ତି କୁଟୁମ୍ବ। ପାଠ କାହିଁକି ପଢ଼ିବ ପାର୍ବତୀ ବନାମ ପାର? ମୋର ଶିକ୍ଷକ ଯାଦବ ମହାନ୍ତିଙ୍କର ଗୋଟିଏ ବଡ଼ ଆମ୍ବବଗିଚା ଥାଏ ପାର୍ବତୀର ଘର ପଛକୁ। ରଜ ବେଳେ ସେ ବଗିଚାର ଗୋଟିଏ ଆମ୍ବଗଛରେ ଦୋଳି ଲଗାଯାଏ। ଆମେ ସାହିପିଲାଏ ଏବଂ ପାର୍ବତୀ ଦୋଳି ଖେଳୁ, ଆକାଶକୁ କ୍ଷେପିଯାଏ ଦୋଳି। ଛିଟ ଶାଢ଼ି ପିନ୍ଧି ଦୋଳି ଖେଳେ ପାର୍ବତୀ। ସେ ବୟସରେ ମୋର କି ପାର୍ବତୀର ମନ ସପନରେ ଭଲୁ ନଥିଲା, ମାତ୍ର ଆମ୍ବଗଛର ଶୀତଳ ଛାୟାରେ ଦିପହରେ ଆମ୍ବ ଜଗିବା ସହ ଖେଳିବାର ଆନନ୍ଦ ମିଳୁଥିଲା ଯଥେଷ୍ଟ। ବୟସଗୁ ପାର୍ବତୀ ବାହା ହୋଇଗଲା। ବୟାଙ୍ଗ ନାମକ ଏକ ଗାଁ'କୁ। ମୁଁ କଲେଜରେ ପଢୁଥିଲାବେଳେ ସେହି ଗାଁ ଦେଇ ବାସ୍ ଧରିବାକୁ ଧାମନଗର ଯାଉଥିଲା ବେଳେ ତା ଶାଶୁଘରେ ତାକୁ ଦେଖା କରିଥିଲି। ବୋହୂ ବେଶରେ ସେ ଅଧିକ ସୁନ୍ଦର ଦିଶୁଥିଲା, ତାର ସଂଯତ ସ୍ନେହପୂର୍ଣ୍ଣ ଅତିଥି ଚର୍ଚ୍ଚାରେ ମୁଁ ଅନୁଭବ କରୁଥିଲି ଭ୍ରାତୃପ୍ରେମ ନା ଆଉ କିଛି ଆଜି ମନେ ପଡୁନି ତାର ସୁଖୀ ଜୀବନରେ ମୁଁ ନିଶ୍ଚିତ ରୂପେ ଆନନ୍ଦିତ ହୋଇଥିଲି।

ପାର୍ବତୀର ଘର ପାଖରେ ଚମ୍ପାର ଘର। ବାପା ଶ୍ରୀଧରନାୟକ ଦୋକାନିଟିଏ କରି ଗୁଜୁରାଣ ମେଣ୍ଟାଏ। ଭାଇଟି କଲିକତାରେ ଜନୈକ ବଂଗାଳି ଘରେ କାମ କରୁଥିଲାବେଳେ ପୂର୍ବବଂଗ ରିଫ୍ୟୁଜି ଝିଅଟିକୁ ବିବାହ କରି କଲିକତାରେ ସ୍ଥାୟୀ ବାସିନ୍ଦା ହୋଇଯାଇଛି। ଆଉ ଗାଁକୁ ଆସୁନି। ଚଂପା ଓ ତାର ବଡ଼ଭଉଣୀ ହୀରା ବେଶ୍ ସୁନ୍ଦରୀ ଥିଲେ କିଛି ପାଠ ପଢ଼ିଥିଲେ ସାହି ଟୋକାଙ୍କର ଆଖିଥାଏ ସେମାନଙ୍କ ଉପରେ। ମୁଁ ଜାଣେ କିଏ କେତେବେଳେ ଦୋକାନରୁ ସଉଦା କିଣିବାକୁ ଗଲାବେଳେ ବାପାମାଆଙ୍କ ଅନୁପସ୍ଥିତିର ସୁଯୋଗ ନେଇ ସେମାନଙ୍କୁ ପ୍ରେମ ନିବେଦନ କରୁଥିଲେ। ହୀରା ସୂର୍ଯ୍ୟପୁରରେ ବିବାହ କଲା ମୋ ସ୍କୁଲ ସହପାଠୀର ଭାଇକୁ। ଚଂପା ଗ୍ରୀଷ୍ମଛୁଟିରେ ଘରେ ଥାଏ। ମୁଁ କଲିକତାରେ ପଢୁଥାଏ ଆଇ.ଏ.। ଏଙ୍ଗେଲୋ ସୁଇସର ଗୋଟିଏ ସୁନେଲି ଘଣ୍ଟା ପିନ୍ଧିଥାଏ ହାତରେ। ନୂଆଘଣ୍ଟା। ଚଂପାଙ୍କ ଦୋକାନକୁ କ'ଣ ଗୋଟିଏ କିଣିବାକୁ ଯାଇଥାଏ। ମୋର ବାଁ ହାତରେ ଥିବା ଘଣ୍ଟାଟିକୁ ଧରି ଚମ୍ପା କହୁଥାଏ "ବାସୁଭାଇ କି ସୁନ୍ଦର ଘଣ୍ଟାଟିଏ। ମୋତେ ଗୋଟିଏ ଆଣିଦେବନି।" ଫୁଟିଲା ଗୋଲାପ ପରି ଜକ୍ ଜକ୍ କରୁଥାଏ ତାର ମୁହଁ, ନାଚିଯାଉଥାଏ ତା ଈଷତ୍ ଦୀର୍ଘ ଆଖିର ନୀଳ ତୋଳା, ଅଧରରେ ସ୍ମିତହାସ। ନାରୀର ଆଦ୍ୟ ଯୌବନର ଉଷ୍ମସ୍ପନ୍ଦିତ ହାତର ସ୍ପର୍ଶ ମୋ ହୃଦୟରେ ଏକ ଅବର୍ଣ୍ଣନୀୟ କଂପନ ଖେଳାଇ ଦେଲା। ମୁଁ ସଦାସର୍ବଦା ମୋର ଆତ୍ମସମ୍ମାନ ପ୍ରତି ସଜାଗ ଥାଏ। କାଳେ ତା ବାପା ମାଆ କି ଆଉ କେହି ଦେଖିଦେବ ଏହି ଭୟରେ ଜିନିଷର ଦାମ ଦେଇ ଦ୍ରୁତ ପଦରେ ନିଷ୍କ୍ରାନ୍ତ ହେଲି ସେହି ଅନ୍ଧାରିଆ ନିରୋଳା ଦୋକାନ ଘରୁ। ଚଂପା

କିଛି ବର୍ଷ ପରେ ବାହା ହୋଇ ଦୂର ଗାଆଁକୁ ଚାଲିଗଲା। ସେତେବେଳେ ଯୌତୁକର ଘୃଣ୍ୟ ପ୍ରଥା ଗାଁ ଗଣ୍ଡାରେ ପ୍ରଚଳିତ ନ ଥିଲା। ସୁନ୍ଦରୀ ଝିଅମାନେ ସହଜରେ ସ୍ୱଚ୍ଛନ୍ଦ ପରିବାରରେ ଅବଶ୍ୟ ନିଜ ଜାତିରେ ବାହା ହୋଇ ଯାଉଥିଲେ। ଚଂପା ଯେ ସୁଖରେ ତାର ପିଲା ପିଲିଙ୍କ ଗହଣରେ ଦିନ କାଟିଥିବ ଏ ବିଶ୍ୱାସ ମୋର ଅଛି। ମାତ୍ର ମୋ ମନରେ ରହିଯାଇଛି ଗୋଟିଏ ଅବଶୋଷ, ଏକ ସରଳା କିଶୋରୀର ଇଚ୍ଛା ମୁଁ ପୂରଣ କରି ପାରିବାରସୁଯୋଗ ପାଇଲି ନାହିଁ, ମୋ ଦର ଘଣ୍ଟାର ଟିକ୍ ଟିକ୍ ଶବ୍ଦ ଚଂପାର ହୃଦୟରେ ସ୍ପନ୍ଦନ ସୃଷ୍ଟି କରିନି। ସମୟ ବହି ଚାଲିଛି ବିନା ଘଣ୍ଟାରେ ଚଂପାର କଅଁଳ ଅଂଗୁଳି ସ୍ପର୍ଶରେ ମୁଁ ଶିହରି ଉଠିଥିଲେ ବି କବିତାଟିଏ ଲେଖିନଥିଲି, ଯାହା ଏ ଘଟଣାର ପ୍ରାୟ ଦଶ ବର୍ଷ ପରେ ଆଉ ଏକ ଶିକ୍ଷିତା ବାଳିକାର ସ୍ପର୍ଶରେ ଲେଖିଥିଲି 'ଯେ ହାତର ସ୍ପର୍ଶ ଲାଗି ଅଂଗେ ମୋର ଜଳିଥାନ୍ତା ନିଆଁ ଇତ୍ୟାଦି ଇତ୍ୟାଦି।'

ଏବେ ମୋ ପିଲାବେଳର ସହପାଠିନୀଙ୍କ କଥା ଟିକିଏ କୁହେଁ। କେତେବା ଝିଅ ସେ କାଳରେ ପାଠ ପଢୁଥିଲେ ଗାଆଁରେ। ଯେଉଁ କେତୋଟି ଟିପ ଗଣନ୍ତା ଝିଅ ଗାଁ ପ୍ରାଥମିକ ବିଦ୍ୟାଳୟରେ ପଢୁଥିଲେ ସେମାନେ ଥିଲେ ଉଚ୍ଚବର୍ଣ୍ଣର, ବ୍ରାହ୍ମଣ କରଣ ବା ଖଣ୍ଡାୟତ। ଆମ ଗାଁର ଜମିଦାର ବଂଶର କେତୋଟି କରଣ ଝିଅ ମୋ ସାଂଗରେ ପଢୁଥିଲେ। ଏକା ଶ୍ରେଣୀରେ ବା ତଳ ଶ୍ରେଣୀରେ। ପତଳି ଗୋରା ଝିଅଟିଏ ଡାକ ନାମ ତାର ସୁକୁଟା, ନିମ୍ନ ପ୍ରାଥମିକ ସ୍କୁଲରୁ ପାଶ୍ କରିଛି କି ନାହିଁ ଘର ଯୋଗ୍ୟା ହୋଇ ଘରେ ରହିଲା। ତା'ର ମାଆ ମରିଯାଇଥାଏ। ଅଳ୍ପବୟସରେ ସେ ବାହା ହୋଇଗଲା ଜଣେ କିରାଣୀକୁ। ମୋର ତଳ ଶ୍ରେଣୀରେ ପଢୁଥିବା ମହାନ୍ତି ଘରର ଝିଅ ସାଦ ଓ ଆଦକୁ ମୁଁ ହାଇସ୍କୁଲ ପଢ଼ା ଶେଷ କଲା ପର୍ଯ୍ୟନ୍ତ ବାହା ନ ହୋଇ ଗାଁରେ ଥିବା ଦେଖିଛି। ଗାଁର ଅନ୍ୟାନ୍ୟ ଝିଅଙ୍କ ଠାରୁ ମହାନ୍ତି ଘରର ଝିଅମାନେ ଥିଲେ ଅଧିକ ପରିଷ୍କାର ପରିଚ୍ଛନ୍ନ ଓ କଥା କହିବାରେ ଚତୁରୀ। କନକଗୋରୀ ଚାନ୍ଦମୁହିଁ ସାଦ ଥିଲା ଲାବଣ୍ୟମୟୀ ଆଦି ଶ୍ୟାମଳୀ ତନ୍ୱୀ ତଥା ଚତୁରୀ। ମହାନ୍ତି ସାହି ଦେଇ ଗାଁ ମୁଣ୍ଡରେ ଥିବା ମୋର ଖଚି ଜାଗା ବୁଢ଼ୀକାଳନ୍ଦୀ ପୀଠକୁ ଗଲାବେଳେ ଉଙ୍କିମାରି ଆଦସାଦକୁ ଦେଖିବାକୁ ପ୍ରୟାସ କରେ। ବେଳେବେଳେ ତାଙ୍କ ବାରଣ୍ଡାରେ ତାଆସ ଖେଳ ଖେଳିବାର ସୁଯୋଗ ମିଳେ। ସେତେବେଳେ ଦୁଇ ସୁନ୍ଦରୀ କିଶୋରୀଙ୍କ ଦର୍ଶନ ସୁଧା ଆକଣ୍ଠପାନ କରିନିଏ। କଲେଜରେ ପଢୁଥିଲାବେଳେ ଗାଁକୁ ଆସିଲେ ଆଦ (ଆଦରମଣି)କୁ ସୂତାରେ କ'ଣ ସବୁ ସିଲାଇ କରୁଥିବାର ଦେଖେ, ଏହି ଦୃଶ୍ୟ ମୋ ତରୁଣ ପ୍ରାଣରେ ଯେଉଁ ଭାବ ଜାତ କରିଥିଲା ତାର ପରିପ୍ରକାଶ ଘଟିଥିଲା କେତୋଟି କବିତାରେ। କବିତା କହୁ ସେ କଥା।

ଡାଲିଭେଟ ଅଧର ସ୍ଫୁରି ଉଠିଅଛି ନୟନେ ଖେଳଇ ଚପଳା। ମୁଁ ତ ସେହି ପଥେ ଯାଏ ସେହି ପଥେ ଆସେ ନୟନ ସୂଚୀରେ ମୋହୃଦଗୁନ୍ଥି ତୁମରି ହୃଦରେ ଜଡ଼ାଇ"।

ଗାଁର ମାନୀ ପ୍ରତାପୀ ଜମିଦାର ଶ୍ରୀଧର ମହାନ୍ତିଙ୍କ ଦୁଇଟି କନ୍ୟା, କାଳି ଅପା ଓ ରତି ଅପା, ମୋଠାରୁ ସାନ। କିଶୋରାବସ୍ଥାରେ ତାଙ୍କୁ ଦେଖିଛି ମାତ୍ର ବିଶେଷ ମିଶିବାର

ସୁଯୋଗ ପାଇନି। ପରବର୍ତ୍ତୀକାଳରେ ସେମାନଙ୍କର ଅତି ନିବିଡ଼ ଓ ସ୍ନେହାସ୍ପଦ ହେବାର ସୁଯୋଗ ପାଇଛି। କାଳିଅପାଙ୍କ ବଡ଼ ଭଉଣୀ ପ୍ରକୃତରେ ଅତ୍ୟନ୍ତ ସୁନ୍ଦରୀ ଥିଲେ ଏବଂ ସେ ସମୟରେ ବ୍ରହ୍ମଘରାପାଟଣାର ଏକ ସଂଭ୍ରାନ୍ତ ଯୁବକ ଯିଏ ବାରିପଦା ସ୍କୁଲରେ ଶିକ୍ଷକ ଥିଲେ, ତାଙ୍କୁ ବାହା ହୋଇଥିଲେ। ଘୋଡ଼ାଳ ପାଲିକିରେ ଆସିଥିବା ସେହି ବର ଓ ଢାକ୍ ଜମକପୂର୍ଣ୍ଣ ଶୋଭାଯାତ୍ରା ଗ୍ରାମବାସୀଙ୍କ ପାଇଁ ଥିଲା ଅତୀବ ଆକର୍ଷଣୀୟ। କିଛି ବର୍ଷରେ କାଳିଅପାଙ୍କ ବଡ଼ଭଉଣୀ ଗଗୀଅପାଙ୍କ ମୃତ୍ୟୁ ଘଟିବାରୁ ତାଙ୍କର ସ୍ୱାମୀ ରବି ମହାନ୍ତିଙ୍କୁ ଶାଳିକା କାଳି ବିବାହ କରିଥିଲା। ରବିବାବୁ ଥିଲେ ଜଣେ ସ୍ୱନାମଧନ୍ୟ ଶିକ୍ଷକ ଓ ଶିକ୍ଷା ପ୍ରଶାସକ। ସ୍କୁଲ ଇନ୍‌ସ୍‌ପେକ୍ଟର ଭାବେ କାର୍ଯ୍ୟ କରି ଅବସର ନେଇଥିଲେ। ମୁଁ ସମ୍ବଲପୁରରେ ଅଧ୍ୟାପକ ଥିଲାବେଳେ ରବିବାବୁଙ୍କ ପ୍ରଥମ ସ୍ତ୍ରୀର ପ୍ରଥମ ପୁଅ ଭାସ୍କର ମୋ ପାଖରେ ରହି ବିଏ ବାଣ୍ କଲା। କାଳି ଅପାଙ୍କର ଦୁଇ ପୁଅ। ନିଜ ବଡ଼ ଭଉଣୀର ତିନିପୁଅଙ୍କୁ ନିଜର ପୁଅ ଭଳି ସ୍ନେହ କରି ସମସ୍ତଙ୍କର ସେ ପ୍ରୀତିଭାଜନ। ବୟସରେ ସାନ ହେଲେ ବି,ଗ୍ରାମ୍ୟ ସଂପର୍କରେ ସେ ପିଉସୀ ହୋଇଥିବାରୁ ମୋତେ ସାନ ଭଳି ସ୍ନେହ କରନ୍ତି। ବାସୁ ବୋଲି ଡାକନ୍ତି। ବାସ୍ତବରେ କାଳି ଅପା ଜଣେ ଆଦର୍ଶ ସ୍ନେହମୟୀ ମାଆ ଓ କର୍ତ୍ତବ୍ୟପରାୟଣା ଜାୟା ଏବଂ ଗୃହିଣୀ।

ରତି ଅପା ଗୌରବର୍ଣ୍ଣ, ସୁଢ଼ଳ ସୁଠାମ ବଦନା, ଦୀର୍ଘାଙ୍ଗିନୀ। ସଂପର୍କର ଉଚ୍ଚାସନରେ ବସିଥିବାରୁ ମୋତେ ପୁତୁରା ଭଳି ଦେଖନ୍ତି ଏବଂ ସ୍ନେହ ଅଜାଡ଼ି ଦିଅନ୍ତି। ସମ୍ବଲପୁର ଗଂଗାଧର ମେହେର କଲେଜରେ ପ୍ରଥମେ ଅଧ୍ୟାପକ ଚାକିରି କଲାବେଳେ ରତି ଅପା ଓ ସ୍ୱାମୀ ମଥୁରା ମୋହନ ମହାପାତ୍ର ସମ୍ବଲପୁରରେ ଥା'ନ୍ତି। ଦୂରସ୍ଥାନରେ ଏକା ଗାଁର ଲୋକ। ସଂପର୍କ ନିବିଡ଼ତର ହେବା ସ୍ୱାଭାବିକ। ନବ ବିବାହିତା ତରୁଣୀ ରତି ଅପା ପାଇଁ କଲିକତାର ଗୋଟିଏ ଚପଲ ଆଣି ଦେବା ଉଦ୍ଦେଶ୍ୟରେ ମୁଁ ତାଙ୍କର ପାଦ ମାପ ନିଜେ ନେଲାବେଳେ ସଂପର୍କର ମାନ୍ୟତା ସତ୍ତ୍ୱେ ମୋର ଅବିବାହିତ ତରୁଣ ପ୍ରାଣରେ ଜଣେ ସୁନ୍ଦରୀତରୁଣୀଙ୍କ ଅଂଗସ୍ପର୍ଶର ଅବର୍ଣ୍ଣନୀୟ ଅନୁଭୂତି କ୍ଷଣକ ପାଇଁ ହେଲେ ମଧ ମୋ ଦେହ ଥରାଇ ଦେଇଥିଲା। ସଂଭ୍ରମ ରକ୍ଷା କରିବାର ଶକ୍ତି ମୁଁ ହରାଇ ନ ଥିଲି। ସେହି ରତି ଅପା ପ୍ରୌଢ଼ାବସ୍ଥାରେ କିଛି ଦିନ ତଳେ ଭିଣେଇ ରବିବାବୁଙ୍କ ଏକ ଦଶାହ ଦିନ ବହୁ ବର୍ଷ ପରେ ମୋତେ ଓ ମୋର ସ୍ତ୍ରୀଙ୍କୁ ଦେଖି ଯେପରି ଉତ୍ଫୁଲିତ ହୋଇ ମୋତେ ଆଲିଙ୍ଗନ କରିନେଲେ ତାହା ମୋ ପ୍ରତି ପ୍ରଗାଢ଼ ଅନାବିଳ ସ୍ନେହ ଓ ମାତୃତ୍ୱର ସ୍ୱଚ୍ଛସରର ଥିଲା ଜ୍ୱଳନ୍ତ ଦୃଷ୍ଟାନ୍ତ।

ଆମ ଘରଟି ମାଝୀସାହିରେ। ଆମ ଘରକୁ ଲାଗି କେତେଗୁଡ଼ିଏ ମାଝୀ ଘର, ଦ୍ୱିତୀୟ ମହାଯୁଦ୍ଧ ପରେ କଲିକତା ସହରରେ ସେମାନେ ମାଛ ଋଷ ଓ ବ୍ୟବସାୟ କରି ବେଶ୍ ଧନୀ ଓ ସ୍ୱଚ୍ଛଳ ହୋଇଯାଇଥିଲେ। ଆର୍ଥିକ ସ୍ୱଚ୍ଛଳତା ଓ ଘରର ମୁରବୀମାନଙ୍କର ବଂଗବାସୀଙ୍କ ସହ ସଂପର୍କ ଏହି ପରିବାରର ନାରୀମାନଙ୍କୁ ପୋଷାକ ପରିଚ୍ଛଦ ଦୃଷ୍ଟିରୁ ବେଶ୍ ଆକର୍ଷଣୀୟ କରିଦେଇଥିଲା। କେତେକ ତରୁଣୀ ଓ ମଧ୍ୟବୟସ୍କା ନାରୀମାନଙ୍କର ଦୈହିକ ସୌନ୍ଦର୍ଯ୍ୟ ମଧ ଥିଲା ଦର୍ଶନୀୟ। ଆମ ଘର ସାମ୍ନାରେ ଥିବା ଘରର କୃଷ୍ଣ ମାଝୀ ଓ ଶିବମାଝୀଙ୍କ ସ୍ତ୍ରୀ ଗୋରୀ,

ମୋର ନୂଆ ବୋଉ। ମୁଁ ଭଲ ପାଠ ପଢ଼ି କାନ୍ଦଣା ଲହରୀ ଦଶମସ୍କନ୍ଧ ପଢ଼ି ଶୁଣାଉଥିଲି। ତେଣୁ ସେମାନେ ମୋତେ ବେଶ୍ ଆଦର କରୁଥିଲେ। କୃଷ୍ଣ ଭାଇ ଓ ତାଙ୍କ ସ୍ତ୍ରୀ ଆଉ ନାହାନ୍ତି, ଶିବଭାଇଙ୍କ ଦ୍ୱିତୀୟ ସ୍ତ୍ରୀ ଏବେବି ଜୀବିତ ଏବଂ ମୋତେ ଓ ମୋ ସ୍ତ୍ରୀଙ୍କୁ ଗାଁରେ ଦେଖିଲେ ଖୁସି ହୁଅନ୍ତି। ତାଙ୍କ ପାଖ ଘର ହରି ମାଝୀଙ୍କର ସେ ଘରି ଭାଇ ଧର୍ମସୂତ୍ରରେ ମୋର ଭିଣୋଇ ଏବଂ ସେମାନଙ୍କ ସ୍ତ୍ରୀ ଭଉଣୀ - ତାଙ୍କ ଘରେ ଗେହ୍ଲୀନାନୀ ଦୁଃଖୀନାନୀ ବେଶ୍ ସୁନ୍ଦରୀ ଥିଲେ। ମୋତେ ସ୍ନେହ କରୁଥିଲେ। ଦରକାର ବେଳେ ଟଙ୍କା ଧାର ମଧ୍ୟ ଦେଉଥିଲେ। ଦ୍ୱିତୀୟା ନାନୀ ସେହି ଘରର ମୋ ବୋଉର ଧରମଝିଅ। ନିଜର ଭଉଣୀ ପରି ବ୍ୟବହାର କରେ। ବୋଉର ସେବା ମଧ୍ୟ କରେ। ଏମାନଙ୍କର ଅକୃତିମ ସ୍ନେହ ପର ଆପଣାର ପ୍ରଭେଦ ଭୁଲାଇ ଦିଏ। ଆମ ଘରଠାରୁ କିଛି ଦୂରରେ ସାହିର ସବୁଠୁଁ ଧନୀଘର ବିଷ୍ଣୁ ମାଝୀର ସ୍ତ୍ରୀ ଥିଲା ସୁରସିକା ସୁନ୍ଦରୀ, ମାତ୍ର ବିରହବିଦଗ୍ଧା। ସ୍ୱାମୀ ବିଷ୍ଣୁ ମାଝୀ ବର୍ଷରେ ଥରେ ଅଧେ ଆସି ସ୍ତ୍ରୀର ବ୍ୟଥା ବିଧୂରିତ ପ୍ରାଣକୁ କେତେବା ଶାନ୍ତି ଦେବ! ଏହି ବିରହ ବିଦଗ୍ଧା ରମଣୀଟି ମୋ ହାତରେ କାକୁତିମିନତି ଭରା ଚିଠି ଲେଖେ ସ୍ୱାମୀ ନିକଟକୁ। ଦିଅର ଭାବରେ ମୋତେ ଥଟ୍ଟା କରେ, ସ୍ନେହ ବି କରେ। ପିଲାଟିବେଳୁ ମୁଁ ଶାନ୍ତ ଶିଷ୍ଟ ଓ ପାଠରେ ମନଯୋଗୀ ଥିବାରୁ ମୋତେ ଆମ ସାହି ଓ ଗାଁର ଜଣାଶୁଣା ନାନୀ ନୂଆବୋଉ ଖୁଡ଼ି ମାଇଁ ମାନେ ଅକୁଣ୍ଠିତ ସ୍ନେହ ଢାଳି ଦେଉଥିଲେ। ମାଆମାନଙ୍କୁ ସଶ୍ରଦ୍ଧ ବ୍ୟବହାର ବୋଧହୁଏ ସଂଚରିତ ହୋଇଗଲା ସେମାନଙ୍କ ଝିଅ ପୁଅଙ୍କ ନିକଟକୁ। ସେମାନେ ଶିଶୁ କିଶୋର ଓ ତରୁଣ ଥିଲା ବେଳେ ମୋତେ ଅଶେଷ ଶ୍ରଦ୍ଧା ସମ୍ମାନ କରିଛନ୍ତି। ସେମାନଙ୍କର ଜଣେ ହିତୈଷୀ ଉଚ୍ଚଶିକ୍ଷିତ ଦାଦାଭାଇ ମାମୁଁ ଭାବି ଏବେ ମୁଁ ସାଆନ୍ତନ୍ତରରେ ପହଞ୍ଚି ଗାଁକୁ ଗଲେ ଯେଁ ଆତ୍ମୀୟ ବ୍ୟବହାର ସବୁ ଗ୍ରାମବାସୀଙ୍କ ଠାରୁ ପାଉଛି, ମୋତେ ବିସ୍ମିତ କରାଉଛି ଯେ ଆଧୁନିକ ସଭ୍ୟତା, ସହରୀ ପ୍ରଭାବ ନାନାଘାତ ପ୍ରତିଘାତ ସତ୍ତ୍ୱେ ଗାଁରେ ମିଳିମିଶି ଚଳିବାର ଯୁଗ ଯୁଗ ଯୁଗ ବ୍ୟାପୀ ଧାରା ଭବିଷ୍ୟତରେ ଅବ୍ୟାହତି ହୋଇ ରହିବ ଏବଂ ନିଜପରର ମନ୍ଦ ଭାବନା ସଂକୁଚିତ ରହି ଅନାବିଳ ପ୍ରେମର ବଂଧନରେ ଗ୍ରାମ୍ୟଜୀବନକୁ ସରସ ସୁନ୍ଦର କରି ରଖିବ।

ଏପରି ଏକ ମଧୁର ପରିବେଶରେ ଜୀବନର ବାଲ୍ୟକୈଶୋର ନିରବଚ୍ଛିନ୍ନ ଭାବେ କଟାଇ ଏବଂ ପରବର୍ତ୍ତୀ କାଳରେ ସାମୟିକ ଭାବେ ରହି ମୁଁ ପାଇଛି ଅମୂଲ୍ୟ ସଂପଦ - ସ୍ନେହ, ସୌହାର୍ଦ୍ଦ୍ୟ, ଶ୍ରଦ୍ଧା ଓ ସମ୍ମାନ। ପ୍ରତିଦାନରେ କ'ଣ ବା ଦେଇଛି ମୋ ଗାଁର ସରଳ ମଣିଷଙ୍କୁ, ଖେଳସାଥୀ, ଭାଇ ଭଉଣୀ, ମା ନୂଆ ବୋଉ ଝିଅ ଝିଆରୀ ନାତିନାତୁଣୀ, ଅନ୍ତରଙ୍ଗ ବଂଧୁ ଓ ମାନସୀଙ୍କୁ? ସେଇଥିପାଇଁ ଅନ୍ତରରୁ ନିର୍ଗତ ହୁଏ କୃତଜ୍ଞତାର ସ୍ୱର :-

"ଯା ପେୟେଛି ସେବା ମୋର ଅକ୍ଷୟଧନ
ଯା ପେୟେ ବଡ଼ୋ ସେଇ ନୟ
ଚିର ଭରିୟା ରବେ କ୍ଷଣିକ ମିଳନ
ଚିର ବିଚ୍ଛେଦ କରି ଜୟ" *(ରବିଠାକୁର)*

(୨୮)

"ଜୟଗୋ ଉତ୍କଳ ଲକ୍ଷ୍ମୀ ଏକମାତ୍ର
ସୁନ୍ଦରୀ ତୁ ବସୁଧାରେ
ପ୍ରାକୃତିକ ଶୋଭା-ରାଶି ରହିଛନ୍ତି
ତୋ ଅଂଗରେ ଏକ ଧାରେ.....
କାହିଁ ସୁଶୀତଳ ଧବଳଉପଳ
ହୋଇଛି ପଲଙ୍କାୟିତ
ପଲ୍ଲବ ବ୍ୟଜନ ଧରିତରୁଗଣ
ଚଉଦିଗେ ଦଣ୍ଡାୟିତ ।" *(ଗଂଗାଧର ମେହେର)*

ସ୍ୱଭାବ କବି ଗଂଗାଧରଙ୍କ ଏହି କବିତାଗୁଡ଼ିକ ପଢ଼ିଲାବେଳେ ମୋ ପିଲା ଦିନର ଗାଁର ଛବି ଆଖି ଆଗରେ ନାଚି ଉଠେ। ସତେ ସେ ସମୟରେ ଗାଁଗୁଡ଼ିକ କେତେ ସୁନ୍ଦର ଥିଲା। ଶସ୍ୟ ଶ୍ୟାମଳ ଓଡ଼ିଶାରେ ଥିଲା ପ୍ରକୃତିରଐଶ୍ୱର୍ଯ୍ୟ ଥିଲା ପ୍ରକୃତିର ବିପର୍ଯ୍ୟୟ। ଋତୁଗୁଡ଼ିକ ଠିକ୍ ସମୟରେ ଯେଝା ଯେଝାର ବୈଚିତ୍ର୍ୟ ଦେଖାଇ ଯାଉଥିଲେ। ଗାଁ ମୁଣ୍ଡରେ ଥିଲା ପ୍ରଶସ୍ତ ପଡ଼ିଆ, ଆମ୍ବ ଜାମ୍ବ ବର ଅଶ୍ୱତ୍ଥ ତାଳ ଖଜୁରି ପିଜୁଳି ଗଛରେ ଭରପୂର। ବସନ୍ତର ଆଗମନ ଆମ୍ବଡ଼ାଳ ଉପରୁ କୋକିଳର ମଧୁର ସ୍ୱନରେ ଜଣା ପଡ଼ିଯାଉଥିଲା। ଆମ୍ବ ବଉଳର ବାସନାରେ ଆମ ପିଲାମନ ମତୁଆଲା ହୋଇଉଠୁଥିଲା। ଗାଁ ଶେଷ ଗୋଚର ପଡ଼ିଆ, ସକାଳେ ସଂଜେ ଗୋରୁଗାଈଙ୍କ ଗୋଠ ଚରି ଚରି ଗାଈଆଳ ପିଲାର ଡାକରାରେ ଚାଲିଯାଉଥିବେ ମଝିବିଲକୁ ଅଧିକ ଘାସ ଖାଇ ଥଣ୍ଡା ନଈ ଜଳ ପିଇ ସ୍ୱେଚ୍ଛାରେ ଡ଼ିଆଁ କୁଦା ମାରିବାକୁ, ହମ୍ବା ହମ୍ବା ରଡ଼ି ଦେଇ ସଂଜ ନଇଁ ଆସୁଥିବାବେଳେ ଫେରୁଥିବେ ଗୁହାଳକୁ, ପେଜ ତୋରାଣି ପିଇ ଆରାମରେ ପଡ଼ି ରହିବାକୁ, ମଝିରେ ମଝିରେ ମାଛି ଡାଆଁସଙ୍କ ଦୌରାତ୍ମ୍ୟରେ ଗୋଡ଼ଲାଞ୍ଜଝାଡ଼ି ଦେବାକୁ। ଖରାଦିନର ଦିପହରେ ପାକଲା ଆମ୍ବ ଲୋଭରେ ବିଲ ଫେରନ୍ତା ବାପା, ଘର କାମ କରି ଥକି ଯାଇଥିବା ବୋଉ ବଡ଼ଭାଇ ଭାଉଜ ଶୋଇପଡ଼ିଥିବା ବେଳେ ଆମେ ଚୁପ୍‌ଚାପ୍ ଚାଲିଯାଉଁ ଗାଁମୁଣ୍ଡ ବଗିଚାକୁ। ସୁଲୁସୁଲୁ ପବନରେ ଗ୍ରୀଷ୍ମର ତାପ ଜଣାପଡ଼େନି। ଉକ୍ତ ସମୟରେ କେତେଦିନ ଧରି ଆମ୍ବଗଛ ଡାଳରେ ବଂଧା ପଟାଝୁଲିରେ ଦୋଳିଖେଳୁ ବାଳକ ବାଳିକା, ପ୍ରତିଯୋଗୀର ମନୋଭାବ ନେଇ। କିଏ କେତେ ଉଚ୍ଚ ଆକାଶର ନୀଳିମାକୁ ଆଖିରେ ତୋଳି ଆଣେ, ପବନର ଶୀତଳ ମହକ ଆଘ୍ରାଣ କରେ ସେହି ଏକା ଜାଣେ। ଅନ୍ୟକୁ ଜଣେଇବାର ଆବଶ୍ୟକତା ନ ଥାଏ କି ଭାଷା ନଥାଏ। ତେବେ ଆନନ୍ଦ ଉଲ୍ଲାସର ଆଭାସ ଫୁଟି ଉଠେ ଆଖିରେ ମୁହଁରେ। ଗ୍ରୀଷ୍ମପରେ ଆସିଯାଏ ବର୍ଷା। ଘଡ଼ଘଡ଼ି ଚଡ଼ ଚଡ଼ି ବିଜୁଳି ଚମକରେ

ଚରିଯାଉ, ପୁଣି ଶୀତଳ ମେଘ ବର୍ଷଣକୁ ଉତ୍କଣ୍ଠାରେ ଚାହିଁ ରହୁ। ମେଘ ନ ହେଲେ କଳଶ କଳଶ ପାଣି ଦାଣ୍ଡରେ ଢାଳି, ମାଟିକାଦୁଅରେ ଗଡ଼ିଯାଇଁ, ଗୀତ ଗାଇ ଗାଇ "ବେଙ୍ଗ୍ ଗଡ଼ାଗଡ଼ି ଗଡ଼େଇ ଦେଏ। ଗଡ଼ିଆ ପୋଖରୀ ପୂରେଇ ଦେଏ, କେବେ ବର୍ଷା ଆସିବ, ଶୋଷିଲା ମାଟି ତୃପ୍ତ ହେବ ଶୁଖିଲା ମାଟି ଫୁଲିଉଠିବ, ବିଲରେ ବୁଣା ବିହନ ଗଜୁରିବ-ଏହି ଆଶାରେ ଆକାଶକୁ ଉତ୍କଣ୍ଠିତ ନୟନରେ ଚାହିଁ ଥାଏ ଚାଷୀ, ଆମେ ଶୁଖିଲା ନଈ ପୋଖରୀର ଉଚ୍ଛୁଳା ରୂପର ସ୍ୱପ୍ନ ଦେଖୁଁ। ବଢ଼ିପାଣିରେ ନଈନାଳର ସୀମା ଲିଭିଗଲେ, ମାଇଲ ମାଇଲ ବ୍ୟାପୀ କ୍ଷେତ ଉପରେ ମାଟିଆ ପାଣିର ଢେଉ ଖେଳିଲେ, ସମୁଦ୍ରର ଦୃଶ୍ୟ ଦେଖି ନାଚି ଉଠିବାର ସମୟକୁ ଅପେକ୍ଷା କରୁଁ। 'ଆଷାଢସ୍ୟ ପ୍ରଥମ ଦିବସେ' ଦକ୍ଷିଣ ମେଘ ଦେଖୁ ଆକାଶରେ। ଶ୍ରାବଣରେ ଧାରାବୃଷ୍ଟିର ଅବିରାମ ଗୁଞ୍ଜନ ଶୁଣୁ। କେତେବେଳେ ଆସିଯାଏ ବନ୍ୟା, ସମୁଦ୍ର ପାଲଟିଯାଏ ଗାଁ ବିଲ ଡଙ୍ଗାରେ ଜହ୍ନ ରାତିରେ ଗାନ କୀର୍ତ୍ତନ କରି ନବକେଳିର ଆନନ୍ଦ ଭୋଗକରୁଁ।

ଏବେ ଆମ ଶୈଶବର ପଚାଶ ବର୍ଷ ପରେ ଗାଁଗଣ୍ଡାର ଚିତ୍ର ବଦଳିଗଲାଣି, ପ୍ରକୃତିର ଆଉ ନିର୍ବାଦ ପରିପ୍ରକାଶ ନାହିଁ, ଋତୁମାନେ ଠିକ୍ ସମୟରେ ଆଗର ବୈଚିତ୍ର୍ୟମୟ ରୂପରେ ଧରାବକ୍ଷରେ ପଦାର୍ପଣ କରୁନାହାନ୍ତି। ଧରିତ୍ରୀ ହତଶ୍ରୀ ହୋଇଗଲା ନା? ଏହି ଧରାର ଚତୁର ଜୀବ ମଣିଷ ଆଉ ସରଳ ଉନ୍ମୁକ୍ତମନରେ ପ୍ରକୃତି ଦେବୀଙ୍କୁ ସ୍ୱାଗତ କରୁନାହାନ୍ତି। ଯେଉଁଥିପାଇଁ ଋତୁମତୀ ପ୍ରକୃତି ଶୂନ୍ୟ ଆକାଶରେ ଉଡ଼ି ବୁଲୁଛି। କୁଣ୍ଠାର ସହ ଆସୁଛି ବିଳମ୍ବରେ ଅନିୟମିତ ଭାବେ ଧରାପୃଷ୍ଠକୁ। ଆମ ସଂଖ୍ୟାତ ଏହି ପଚାଶ ବର୍ଷ ଭିତରେ ଅଢ଼େଇଗୁଣ ବଢ଼ିଗଲା। ୪୦ କୋଟିରୁ ୧୦୦ କୋଟି ଉର୍ଦ୍ଧ୍ୱକୁ। ଖାଦ୍ୟ ଅଭାବ ଏଡ଼ାଇବା ପାଇଁ, ସଭ୍ୟ ଭାବରେ ବଂଚି ରହିବା ପାଇଁ ଗୋଚର ବଗିଚା ନ ରଖି ସେଗୁଡ଼ିକ ଚାଷରେ ଲଗାଇ ଦେଲୁଁ କିମ୍ବା ସେ ଜମିରେ ଘର ତୋଳିଲୁଁ। ଗଛକାଟି ଜାଳେଣି କଲୁଁ। ଗଛର ଉପାଦେୟତା ବୁଝିଲୁ ନାହିଁ। ଅର୍ଥକାରୀ ଗଛ ଲଗାଇଲୁ, ହାଇବ୍ରିଡ୍ ଗଛ, କମ୍ ଉଚ୍ଚ ଫଳ ବହୁତ। କାହୁଁ ପାଇବୁଁ ଶୀତଳ ଛାୟା? ମଧୁର ସୁଲୁ ସୁଲିଆ ପବନ? ନଈ ନାଳ ବଂଧବାନ୍ଧି କରାଳ ବନ୍ୟାକୁ ଅବରୁଦ୍ଧ କଲୁ ସତ, ମାତ୍ର ଉଚ୍ଛୁଳା ନଈନାଳର ମନୋରମ ଦୃଶ୍ୟ, ଗାଏଁ ଗାଏଁ ପୋଖରୀ ଗାଡ଼ିଆ ନଈ ଭରା ବର୍ଷ ବ୍ୟାପୀ ଶୀତଳ ଜଳର ମୃଦୁତରଙ୍ଗ ଆଉ ମିଳିଲା ନାହିଁ। ବଣ ଜଙ୍ଗଲର କାଠିକୁଟା ପତର ଭାସି ଆସି ଚାଷ ଜମିରେ ପଡ଼ି ପଚି ଯେଉଁ ଉର୍ବରତା ଆଣିଦେଉଥିଲା ତାହା ଆଜି ସ୍ୱପ୍ନ ଗୋଚର ଜମି ନାହିଁ, ପଡ଼ିଆ ଜମି ନାହିଁ। ଗରିବ ହରିଜନଙ୍କୁ ସାହାଯ୍ୟ କରିବା ଆଳରେ ଏଗୁଡ଼ିକ ବାଣ୍ଟିଦେଲୁଁ। ଗାଁରେ ଘାସ ବେଶି ମିଳୁନି, ବଳଦ ସଂଖ୍ୟା କମିଗଲାଣି। ଟ୍ରାକ୍ଟରରେ ଜମି ହଳ ହେଉଛି, ସବୁଜ ଘାସ ନ ଥିବାରୁ ଗାଈ କ୍ଷୀର ଆଉ ମିଠା ଲାଗୁନି, ସବୁଆଡ଼େ କୃତ୍ରିମ ଖାଦ୍ୟ, ରାସାୟନିକ ସାର ବଗିଚା ନାହିଁ ନଈ ପାଣି ପ୍ରଚୁର ନାହିଁ। ଗାଁ ପିଲାଙ୍କ ସ୍ୱାଭାବିକ ଖେଳ ପଡ଼ିଆଁ ତିଆଁ ଓ ନଈ ପହଁରା କାହୁଁ ଦିଶିବ?

ଗାଁରୁ ଗାଁକୁ ଚାଲି ଚାଲି ଗଲାବେଳେ ପଥ ଧାରରେ ଦିଶୁଥିଲା କେତେ ଗଛ, କେତେ ଛୋଟ ବଡ଼ ନାଳ, ପାଣି ଭର୍ତ୍ତି, ବର୍ଷା ଋତୁରେ ଫୁଲଫୁଟା, ମାଛର ଖେଳ, ବେଙ୍ଗ ଚେଙ୍ଗ କଙ୍କଡ଼ାର ସର୍ତକ ଗତି। ଆଜି ସେଗୁଡ଼ିକ ବିରଳ। ମଣିଷ ପ୍ରକୃତି ସଂଗରେ ବାଦ ସାଜି ଚାଲିଛି। ବାଡ଼ିବଗିଚା କାଟି ରାସ୍ତା ଘର ଚାଷ ଜମି କରିଛି। ଆମ ସଂସ୍କୃତିରେ ପ୍ରକୃତି ଥିଲା ଆମର ମିତ୍ର। ଏ ବିଶ୍ୱର ପରିବେଶ ଥିଲା ସ୍ଥାନ ଓ କାଳର ନିରବଚ୍ଛିନ୍ନ ସ୍ରୋତ। ଆମେ ଭାବୁଥିଲୁଁ ନଟରାଜଙ୍କ ଅନନ୍ତନୃତ୍ୟ ପ୍ରତିଫଳିତ କରେ ଶୂନ୍ୟତା ଭିତରେ ସୃଷ୍ଟି, ଶୂନ୍ୟତା ଭିତରେ ପ୍ରକୃତିର ଲାସ୍ୟ। ପ୍ରକୃତିର ନିରବଚ୍ଛିନ୍ନତା ହେଉଛି ଅସୀମତାର ପ୍ରତୀକ। ତାହା ମଣିଷ ମନକୁ ପ୍ରଭାବିତ ଓ ସ୍ୱପ୍ନାୟିତ କରେ। ଆମେ ଉପନିଷଦୀୟ ଢଙ୍ଗରେ ଭାବୁଥିଲୁ ନଦୀ ସମୁଦ୍ରରେ ବିଲୀନ ହେଲାଭଳି ଆମ ଶରୀରର ଷୋଳ କଳା ପୁରୁଷ ସହିତ ବିଲୀନ ହୋଇଯାଏ। କବି ଚନ୍ଦ୍ରଶେଖରଙ୍କ ଭାଷାରେ ଜୀବନ ଥିଲା ଆମର ବୃକ୍ଷ, ନଦୀ ତାର ପ୍ରବହମାନତା। ମଣିଷ ଅନ୍ତରର ଭାଷା ଫୁଟି ଉଠୁଥିଲା ନଦୀର ମୁଖରେ- 'ଆମି ଚଞ୍ଚଳ ହେ ଆମି ସୁଦୂରର ପିପାସୀ।' ଗାଁର ପାଣି ପବନରେ ଗଢ଼ା କବି ସୀତାକାନ୍ତଙ୍କ ହୃଦୟରୁ ଗୁଞ୍ଜରି ଉଠେ। "କୁଳୁକୁଳୁ ନଈ ବହେ, ବହି ଯାଏ ସମୟର ନଈ / ତରଙ୍ଗର ବିଛଣାରେ ତାରା ଆଖି ମଳି ଉଠେ, ନଈ ବି ପାହାଡ଼ ଓ ସମୁଦ୍ରର ବାଲି ଓ କାଦୁଅର କଥା କହି କହି" ଏଇ କେତେବର୍ଷ ହେଲା ଆମ ଗାଁରୁ ଉଦ୍ରକ ପର୍ଯ୍ୟନ୍ତ ଚାଲି ଆସିଲେ, ଦିଶେ ନା ସ୍ଥାନେସ୍ଥାନେ ବଗିଚା, ନାନା ଫୁଲ ଫଳ ଗଛର ସମାବେଶ, ନଈର ଉଚ୍ଛଳ ତରଙ୍ଗ, କବିର ମନରେ ଆନନ୍ଦ ଉଲ୍ଲାସର ଗୀତ ଆସିବ କେଉଁଠୁ? ତା ବଦଳରେ ସ୍ଫୁରିତ ହେବ ବିଷାଦର ସ୍ୱର। କାହିଁକି ନା ଆମେ ବିଜ୍ଞାନ ବଳରେ ପ୍ରକୃତିର ସ୍ୱଚ୍ଛନ୍ଦ ଲୀଳାକୁ ନିୟନ୍ତ୍ରିତ କରି ଦେଇଛୁ। ଦରଦହୀନ ଚିତ୍ତରେ ଧ୍ୱଂସ କରି ଚାଲିଛୁ ସବୁଜ ଶ୍ୟାମଳ ପଲ୍ଲବିତ ବୃକ୍ଷରାଜି। ବିଗତ ଚାରି ଦଶନ୍ଧି ଭିତରେ ଆମ ରାଜ୍ୟର ବନାଞ୍ଚଳ ପ୍ରାୟ ୬୭ ହଜାର କିଲୋମିଟରରୁ ୫୭ କିଲୋମିଟରକୁ କମିଆସିଛି। ଆମ ରାଜ୍ୟର ଅତି ଆକର୍ଷଣୀୟ ଏବଂ ଉପକାରୀ ଜଙ୍କା ଆମ୍ବବଣ ଲୋପ ପାଇ ଆସୁଛି। ଅବିଚାରିତ ଭାବେ ଖଣିଜ ଧାତୁ ଉତ୍ତୋଳନ, ଶିଳ୍ପ ପ୍ରତିଷ୍ଠା, ରାସାୟନିକ ଚିଙ୍ଗୁଡ଼ିଚାଷ ଆମର ଚାଷ ଜମି ଓ ଜଳ ସଂପଦକୁ ନଷ୍ଟ କରିଦେଉଛି 'ମରାଳ ମାଳିନୀ' ଚିଲିକାର ସୌନ୍ଦର୍ଯ୍ୟର ଦ୍ରୁତ ଅବକ୍ଷୟ ଘଟୁଛି। ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର ପାହାଡ଼ ପର୍ବତ ଘେରା ଜଙ୍ଗଲରେ କେତେ ଯେ ସୌନ୍ଦର୍ଯ୍ୟ ଭରି ରହିଛି, କେତେ ଯେ ନିର୍ଝରଣୀ କୁଳୁକୁଳୁ ଗାନ ଗାଇ ବହିଯାଉଛି ତାକୁ କାନ ଦେଇ, ଶୁଣିବାକୁ ସତୃଷ୍ଣ ଆଖିରେ ଦେଖିବାକୁ, ଆମର ମନ ନାହିଁକି ବେଳନାହିଁ। ଅଭାବ ଓ କର୍ମ ଜଞ୍ଜାଳରେ ପେଷି ହୋଇ ଆମେ ପ୍ରକୃତିର ଅଭାବିତ ଶାନ୍ତି ସନ୍ତୋଷଦାନକୁ ଉପେକ୍ଷା କରୁଛୁ। ପାଶ୍ଚାତ୍ୟର ସହରୀ ସଭ୍ୟତା ଚିକ୍ ଚିକ୍ ମଣିଷ ଗଢ଼ା ଦ୍ରବ୍ୟ ଆମକୁ ଏତେ ବେଶି ଆଚ୍ଛନ୍ନ କରିଛି ଯେ ସେଗୁଡ଼ିକ ଆହରଣ ପାଇଁ ଆମେ ବ୍ୟସ୍ତ। ଗ୍ରାମାଞ୍ଚଳର ପୂର୍ବର ଶାନ୍ତ ସନ୍ତୋଷ ଭରା ପରିବେଶ, ପ୍ରକୃତି ଓ ମଣିଷ ସହ ଆତ୍ମୀୟତା ରକ୍ଷା କରି ସହଜ ସୁନ୍ଦର ଜୀବନ ଯାପନ କରିବାକୁ ଆମର ଆଗ୍ରହ ନାହିଁ। ଗାଁର ଯୁବକ

ଯୁବତୀ ଋଷ ପ୍ରତି ଆଗ୍ରହୀ ନୁହଁନ୍ତି। ନିଜ ବାଡ଼ି ଘରେ ଉଚ୍ଚ ଜମିରେ ନୂଆ ନୂଆ ଫଳ ପରିବା ଋଷ କରି ଆଧୁନିକ ଯାନବାହନର ସାହାଯ୍ୟ ନେଇ ଅଧିକ ଅର୍ଥ ଉପାର୍ଜନ କରିବାକୁ ଆଗେଇ ଆସୁନାହାନ୍ତି। ଆମ ରାଜ୍ୟ ଓ ଦେଶରେ ଫଳଫୁଲ ମାଛକ୍ଷୀର ଉତ୍ପାଦନର ପ୍ରଚୁର ସୁଯୋଗ ଅଛି। ଭାରତର କେତେକ ରାଜ୍ୟ ଏ ଦିଗରେ ବେଶ୍ ଆଗେଇ ଗଲେଣି। ତାର ଫଳ ସ୍ୱରୂପ ନବେ ଦଶକରେ ଆମ ଦେଶରେ ଫଳ ଉତ୍ପାଦନ ବର୍ଷକୁ ୫.୬ ପ୍ରତିଶତ ହାରରେ, କ୍ଷୀର ୫.୧୬ ପ୍ରତିଶତ, ମାଛ ୩.୫ ପ୍ରତିଶତ ଓ କୁକୁଡ଼ା ୫.୬୬ ପ୍ରତିଶତ ହାରରେ ବୃଦ୍ଧି ପାଇଛି। ଗାଁର ଯୁବକ ଯୁବତୀମାନେ ଏଥିପ୍ରତି ଆକୃଷ୍ଟ ହେଲେ ଆୟକାରୀ ଉତ୍ପାଦନ ବଢ଼େଇବା ସହ ଗ୍ରାମ୍ୟଜୀବନ ଅଧିକ କର୍ମତତ୍ପର, ଗ୍ରାମ୍ୟପରିବେଶ ଅଧିକ ସବୁଜ ସୁନ୍ଦର, ଶୀତଳ ସ୍ୱଚ୍ଛ ଜଳ ବେଷ୍ଟିତ ହେବ। ଗ୍ରାମୀଣ କୃତି ଶୀର୍ଣ୍ଣ ନ ହୋଇ, ନବ କଳେବର ବନ୍ଧନ କରିବ। ଆମେ ଗାଇବା 'ମରିତେ ଋଇନା ଆମି ସୁନ୍ଦର ଭୁବନେ।'



# ଶେଷକଥା :

## ମୋ ଦେଶ ଓ ରାଜ୍ୟର ସାମଗ୍ରିକ ଗ୍ରାମୀଣ ଚିତ୍ର

(୧)

ମାଟିରେ ଜନମ ଆମ ମାଟିରେ ନିଃଶେଷ, ମାଟିରେ ତ ଖେଳ। ଧୂଳିମାଟିରେ ନିଃଶ୍ୱାସ। ମାଟି, ପାଣି, ପବନ, ଆକାଶ, କିରଣ - ଏସବୁକୁ ନେଇ ଜୀବନ ଗଢ଼ା। ମାଟିରେ ଭରି ରହିଛି ଜୀବନୀ ଶକ୍ତି, ମାଟିରେ ବି ଭରି ଅଛି ନାନା ପ୍ରକାର ଦୂଷିତ ପଦାର୍ଥ। ବିଭିନ୍ନ ଜୀବଜନ୍ତୁଙ୍କ ପାଇଁ ଯାହା ଖାଦ୍ୟ ମଣିଷ ପାଇଁ ହୁଏତ ଅଖାଦ୍ୟ। ଅବାରିତ ଭାବେ ଗତି କରୁଥିବା ନଈନାଳର ପାଣି କେତେବେଳେ ସ୍ୱଚ୍ଛ ତ କେତେବେଳେ ଗୋଳିଆ, କେଉଁଠି ସ୍ୱଚ୍ଛ ମଧୁର ଜଳ ତ କେଉଁଠି ପଙ୍କୁଆ। ମଣିଷ ତାର ଆବଶ୍ୟକତାନୁଯାୟୀ ବ୍ୟବହାର କରେ। ଆଦିମ ମଣିଷ ବିଶେଷଭାବେ ବାଛବିଚାର କରୁ ନଥିଲା କେଉଁଟାତା ପାଇଁ ଉପଯୋଗୀ କେଉଁଟା ନୁହେଁ, ସ୍ୱାସ୍ଥ୍ୟ ସଂବନ୍ଧୀୟ ଜ୍ଞାନ, ପରିଷ୍କାର ପରିଚ୍ଛନ୍ନତା ବଢ଼ିବା ସଂଗେ ସଂଗେ ଜାତ ହେଲା ପ୍ରକୃତିଦର ଦ୍ରବ୍ୟକୁ ଖୁବ ପରିମାର୍ଜିତ କରି ସେ ବ୍ୟବହାର କରିବାକୁ ଲାଗିଲା। ଗାଁର ପାଣିପବନ କେତେ ସ୍ୱଚ୍ଛ ନିର୍ମଳ, କେତେ ସ୍ୱାସ୍ଥ୍ୟକର ଜାଣିହେବ ଗାଁଲୋକଙ୍କ ଦେହ ଓ ପୋଷାକ ପରିଚ୍ଛଦର ପରିଷ୍କାର-ପରିଚ୍ଛନ୍ନତାରୁ। କଥାରେ ଅଛି ଗାଁ ପରିମଳ ଧୋବାତୁଠରୁ ଜଣାଯାଏ। ଲୋକଙ୍କ ଆର୍ଥିକ ଅବସ୍ଥା, ଖାଦ୍ୟରୀତି, ଚଳିଚଳନ ଓ ସୌନ୍ଦର୍ଯ୍ୟବୋଧ ନିର୍ଣ୍ଣୟ କରେ ସେମାନଙ୍କ ସ୍ୱାସ୍ଥ୍ୟ ଦେହ ଓ ସୌନ୍ଦର୍ଯ୍ୟ। ସହରବାସୀଙ୍କଠାରୁ ତ ଗାଁ ଲୋକେ ଅଧିକ ଗରିବ। ପ୍ରକୃତି ସହ ମିଶିଯିବାର ନିଃସଙ୍କୋଚତା ଅନେକ ସମୟରେ ସେମାନଙ୍କୁ ରୋଗାକ୍ରାନ୍ତ କରେ। ଯଦିଓ ବହୁ ସମୟରେ ପ୍ରକୃତି ଦିଏ ଯଥେଷ୍ଟ ଉନ୍ମାଦନା ଉଲ୍ଲାସ ଓ ଅଜଣା ଶକ୍ତି।

ଗାଁ ଲୋକଙ୍କର ପୁରାତନ ଧାରଣା, ଜୀବନଯାପନ ପ୍ରଣାଳୀ ସେମାନଙ୍କୁ ଆଧୁନିକ ସ୍ୱାସ୍ଥ୍ୟରକ୍ଷା ରୋଗ ପ୍ରତିଷେଧକଠାରୁ ଦୂରେଇ ରଖିଥାଏ। ଶିକ୍ଷାର ବିସ୍ତାର, ଗ୍ରାମ୍ୟ ଉନ୍ନୟନ ଯୋଜନା ମାଧ୍ୟମରେ ସ୍ୱାସ୍ଥ୍ୟ-ସଚେତନତା ସୃଷ୍ଟି ଗାଁର ପରିବେଶ ଓ ଲୋକଙ୍କ ସ୍ୱାସ୍ଥ୍ୟରେ ଅନେକ ପରିବର୍ତ୍ତନ ଆଣିଛି। ତଥାପି ସହର ତୁଳନାରେ ଗାଁଲୋକଙ୍କ ନିକଟରେ ପୁଷ୍ଟିକର ଖାଦ୍ୟ, ସ୍ୱାସ୍ଥ୍ୟପ୍ରଦ ଅଭ୍ୟାସ ଓ ଚିକିତ୍ସା ସୁଯୋଗ ଏବଂ ସଚେତନତା ଯଥେଷ୍ଟ କମ। ଗାଆଁ ମୋ ରାଜ୍ୟର ଜନସ୍ୱାସ୍ଥ୍ୟ ସଂବନ୍ଧରେ ପ୍ରକୃତ ଚିତ୍ର ଏତେଟା ମନୋରମ କି ସନ୍ତୋଷଜନକ ନୁହେଁ।

୧୯୯୦ ମସିହାରୁ 'ଜାତିସଂଘ ଉନ୍ନୟନ କାର୍ଯ୍ୟକ୍ରମ' (UNDP) ତରଫରୁ ମାନବ ବିକାଶ ସୂଚକାଙ୍କ (Human Development Index, H.D.I) ପ୍ରକାଶ ପାଇ ଆସୁଛି। ଏହାକୁ ଅନୁସରଣ କରି ଭାରତର ଯୋଜନା କମିଶନ ଆମ ଦେଶର ବିଭିନ୍ନ ରାଜ୍ୟର ମାନବ ବିକାଶ ସୂଚକାଙ୍କ (HDI) ନିର୍ଣ୍ଣୟ କରିଛି ୨୦୦୨ ମସିହାରେ, ଏଥିରେ ସ୍ୱାସ୍ଥ୍ୟ (ଜୀବନ ଧାରଣର ସମ୍ଭାବିତ କାଳ) ଶିକ୍ଷା (ସାକ୍ଷରତା ଓ ମାଧମିକ ଶିକ୍ଷା) ଏବଂ ଆର୍ଥିକ ସ୍ୱଚ୍ଛଳତା (ମୁଣ୍ଡପିଛା ଜାତୀୟତ ଉତ୍ପାଦ) ଅନ୍ତର୍ଭୁକ୍ତ।

ଯୋଜନା କମିଶନ୍ ଅନୁସାରେ ଗ୍ରାମାଞ୍ଚଳ ଲୋକଙ୍କ ପାଇଁ ଦୈନିକ ମୁଣ୍ଡପିଛା ୨୪୦୦ କେଲୋରି ଓ ସହରୀ ଲୋକଙ୍କ ପାଇଁ ୨୧୦୦ କେଲୋରି ନିହାତି ଦରକାର। ଏଥି ପାଇଁ ୧୯୭୩-୭୪ରେ ମୁଣ୍ଡପିଛା ମାସକୁ ଖର୍ଚ୍ଚ ଗ୍ରାମାଞ୍ଚଳରେ ଟ.୪୯ଙ୍କା ଏବଂ ସହରରେ ଟ ୫୭ ଦରକାର ହେଉଥିଲା। ପରବର୍ତ୍ତୀକାଳରେ ମୂଲ୍ୟସୂଚାଙ୍କୁ ବିଚାର କରି ଅର୍ଥ ଆବଶ୍ୟକତାର ପରିମାଣ ବଢ଼ିଛି ଦାରିଦ୍ର୍ୟର ସୀମାରେଖା ଅତିକ୍ରମ କରିବାକୁ। ଏହି ପନ୍ଥାନୁସାରେ ହିସାବ କରି କୁହାଯାଇଛି ଯେ ଆମ ଦେଶରେ ୧୯୭୩/୭୪ରେ ୫୪.୯ ଶତାଂଶ ଲୋକ ଦରିଦ୍ର ଥିଲେ। ତାହା କମି ୧୯୯୩-୯୪ରେ ୩୬ ଶତାଂଶ ଓ ୧୯୯୯-୦୦ ରେ ୨୬.୧ ପ୍ରତିଶତ ହୋଇଛି। ୧୯୯୯-୨୦୦୦ରେ ଗ୍ରାମାଞ୍ଚଳରେ ୨୭.୧ ପ୍ରତିଶତ ଓ ସହରାଞ୍ଚଳରେ ୨୩.୬ ପ୍ରତିଶତ ଲୋକ ଗରିବ ଥିଲେ। ଦଶମ ଯୋଜନା (୨୦୦୨-୨୦୦୭)ରେ ଲକ୍ଷ୍ୟ ରଖାଯାଇଛି ଏହି ପାଞ୍ଚବର୍ଷ ଭିତରେ ୫ ପ୍ରତିଶତ ଲୋକଙ୍କୁ ଦାରିଦ୍ର୍ୟ ସୀମାରେଖା ଉପରକୁ ଅଣାଯିବ ଏବଂ ୨୦୧୨ ମସିହା ବେଳକୁ ଦେଶରେ ମାତ୍ର ୧୫ ପ୍ରତିଶତ ଲୋକ ଗରିବ ଥିବେ। ଜିଲ୍ଲାଓ୍ୱାରୀ ମାନବ ବିକାଶ ସୂଚକାଙ୍କ (H.D.I)ସବୁ ରାଜ୍ୟରେ ନିର୍ଣ୍ଣୟକରାଯାଇନି। କେବଳ ମଧ୍ୟପ୍ରଦେଶ, କର୍ଣ୍ଣାଟକ, ଆନ୍ଧ୍ରପ୍ରଦେଶ ଓ ହରିଆନାରେ ଏହା ନିର୍ଣ୍ଣୟ କରାଯାଇଛି।

ନିକଟରେ କେ ଶ୍ରୀ ନିବାସନ ଓଏସ୍ କେ ମହାନ୍ତି ଜାତୀୟ ପରିବାର ଓ ସ୍ୱାସ୍ଥ୍ୟ ସର୍ଭେ (National Family and Health survey) ପ୍ରଥମ ଓ ଦ୍ୱିତୀୟର ତଥ୍ୟ ଉପରେ ଭିତ୍ତି କରି ପରିବାରରେ ଶିକ୍ଷିତ ଲୋକର ସ୍ଥିତି, ପକ୍କା ଅଧା ପକ୍କାଘର, ଶୌଚାଳୟ ବିଜୁଳି ଶକ୍ତି, ରେଡ଼ିଓ ଟିଭି, ପାନୀୟ ଜଳର ଉପଭୋଗ ବିଷୟକୁ ନେଇ, ବିଭିନ୍ନ ରାଜ୍ୟର ଗ୍ରାମାଞ୍ଚଳ ଓ ସହରାଞ୍ଚଳର ବିଭିନ୍ନ ଗୋଷ୍ଠୀ ଲୋକଙ୍କର ସ୍ୱଚ୍ଛଳ-ଜୀବନ ଉପରେ ଏକ ଆଲେଖ୍ୟ ଦେଇଛନ୍ତି। ଛଅପ୍ରକାର ଦ୍ରବ୍ୟକୁ ୬ଟି ମୂଲ୍ୟ (Point) ଦିଆଯାଇଛି - ପ୍ରତ୍ୟେକକୁ ଗୋଟିଏ କରି। ଯେଉଁ ପରିବାରରେ ଏହି ଛଟି ଦ୍ରବ୍ୟରୁ କିଛି ନାହିଁ ତା'ର ମୂଲ୍ୟ ଶୂନ୍ୟ (୦) ତାକୁ ଅତିମାତ୍ରାରେ ବଂଚିତ ପରିବାର ଏବଂ ଯାହାର ସୁବିଧା-ମୂଲ୍ୟ ଏକରୁ ଦୁଇ ପଏଣ୍ଟ ଭିତରେ ତାକୁ ମାମୁଲିଭାବେ ବଂଚିତ (Moderate Deprivation) ପରିବାର କୁହାଯାଇଛି। ଏହି ସୂତ୍ରରେ ସେମାନେ ଦେଖାଇଛନ୍ତି ଯେ ସମଗ୍ର ଦେଶ ୧୯୯୨-୯୩ରେ ୪.୪ ଶତାଂଶ ପରିବାର ଅତିମାତ୍ରାରେ ବଂଚିତ ଥିଲେ,ଅର୍ଥାତ୍ ସେମାନଙ୍କର ଶିକ୍ଷିତ ଲୋକ, ଟିଭି, ରେଡ଼ିଓ ବିଜୁଳିବତୀ ପାନୀୟ ଜଳ ନ ଥିଲା, ଏହି ଅନୁପାତ ୧୯୯୮-୯୯ରେ କି ୨.୮ ପ୍ରତିଶତ ହେଲା। ୧୯୯୨-୯୩ ଓ ୧୯୯୮-୯୯ ଭିତରେ ସାଧାରଣ ଭାବେ ବଂଚିତ (Moderately deprived) ପରିବାର ଅନୁପାତ ୨୫.୪ ପ୍ରତିଶତରୁ ୧୯.୬ ପ୍ରତିଶତକୁ ହ୍ରାସ ପାଇଛି। ଏହି ସମୟ ଭିତରେ ଅତିମାତ୍ରାରେ ବଂଚିତ ପରିବାର ଅନୁପାତ ଗ୍ରାମାଞ୍ଚଳର ୫.୩ ଶତାଂଶରୁ ୩.୭ ଶତାଂଶକୁ କମିଛି। ସାଧାରଣ ଭାବେ ବଂଚିତ ପରିବାର ୩୧.୪ ଶତାଂଶରୁ ୨୫.୨ ଶତାଂଶକୁ ହ୍ରାସ ପାଇଛି।

୧୯୯୮-୯୯ରେ ବିଭିନ୍ନ ରାଜ୍ୟରେ ଅତିମାତ୍ରାରେ ବଞ୍ଚିତ ପରିବାରରେ ଅନୁପାତ ବିଭିନ୍ନ ଥିଲା। ପଞ୍ଜାବରେ ୦.୨ ପ୍ରତିଶତ ପରିବାର, କେରଳରେ ୦.୪ ପ୍ରତିଶତ ପରିବାର, ବିହାରରେ ୧୦ ପ୍ରତିଶତ ପରିବାର ଏବଂ ଓଡ଼ିଶାରେ ୭.୮ ପ୍ରତିଶତ ପରିବାର ଅତିମାତ୍ରାରେ ବଂଚିତ ଥିଲେ। ସାଧାରଣ ଭାବେ ବଂଚିତ ପରିବାର ମୋଟ ପରିବାରର ୩୩.୮ ପ୍ରତିଶତ ଥିଲା ଓଡ଼ିଶାରେ ଏବଂ ୩୬.୮ ପ୍ରତିଶତ ଥିଲା ବିହାରରେ। ଓଡ଼ିଶାର ଗ୍ରାମାଞ୍ଚଳର ୭.୬ ପ୍ରତିଶତ ପରିବାର ଅତିମାତ୍ରାରେ ଏବଂ ୩୬.୯ ପ୍ରତିଶତ ସାଧାରଣ ଭାବେ ବଂଚିତ ଥିଲେ ମୌଳିକ ସୁବିଧାରୁ। ୧୯୯୮-୯୯ରେ କେବଳ ବିହାରରେ ଏହି ଅନୁପାତ ଓଡ଼ିଶାଠାରୁ ଅଧିକ। ଆମ ପଡ଼ୋଶୀ ରାଜ୍ୟ ପଶ୍ଚିମବଂଗରେ ଅତିମାତ୍ରାରେ ଏବଂ ସାଧାରଣ ଭାବେ ବଂଚିତ ପରିବାରର ଅନୁପାତ ଯଥାକ୍ରମେ ୫.୯. ଓ ୩୩.୭ପ୍ରତିଶତ ଥିଲା, ଆନ୍ଧ୍ର ପ୍ରଦେଶରେ ଥିଲା ୫.୯ ଓ ୨୮.୮ ପ୍ରତିଶତ।

୧୯୯୮-୯୯ରେ ହରିଜନ ପରିବାର ମଧ୍ୟରେ ଅତିମାତ୍ରା ଓ ସାଧାରଣ ଭାବେ ବଂଚିତ ପରିବାର (AD, MD) ଅନୁପାତ ଥିଲା ୩୩.୮ ପ୍ରତିଶତ, ଆଦିବାସୀ ଗୋଷ୍ଠୀରେ ଏହି ଅନୁପାତ ଥିଲା ୩୬.୮ ପ୍ରତିଶତ। ଓଡ଼ିଶାରେ ହରିଜନ ପରିବାରର ୫୮୬.୭ ପ୍ରତିଶତ ବିହାରରେ ୬୬.୮ ପ୍ରତିଶତ ପରିବାର ଏହି ଶ୍ରେଣୀର ଥିଲେ, ଆଦିବାସୀ ଗୋଷ୍ଠୀରେ ଏହି ଶ୍ରେଣୀର ପରିବାର ଅନୁପାତ ଓଡ଼ିଶାରେ ଥିଲା ୬୪.୪ ପ୍ରତିଶତ ଏବଂ ବିହାରରେ ୬୪.୮ ପ୍ରତିଶତ।

ହିନ୍ଦୁ ପରିବାରର ୪୮.୫ ପ୍ରତିଶତ ବିହାରରେ ଏବଂ ୪୪.୨ ପ୍ରତିଶତ ଓଡ଼ିଶାରେ ଅତିମାତ୍ରା ଓ ସାଧାରଣ ଭାବେ ବଂଚିତ ଥିଲେ ଗ୍ରାମାଞ୍ଚଳରେ। ମୁସଲମାନଙ୍କ କ୍ଷେତ୍ରରେ ବିହାରରେ ୫୭.୯ ପ୍ରତିଶତ, ଓଡ଼ିଶାରେ ୩୮.୫ ପ୍ରତିଶତ ପରିବାର ଅତିମାତ୍ରା ଓ ସାଧାରଣ ଭାବେ ବଂଚିତ ଥିଲେ। ଗ୍ରାମୀଣ ଭାରତରେ ୩୨.୭ ପ୍ରତିଶତ ମୁସଲମାନ ଓ ୨୯.୧ ପ୍ରତିଶତ ହିନ୍ଦୁ ପରିବାର ଅତିମାତ୍ରା ଓ ସାଧାରଣ ଭାବେ ବଂଚିତ ଥିଲେ।

ଉପରୋକ୍ତ ବିବରଣୀରୁ ଜଣାଯାଏ ଯେ ଭାରତର ବିଭିନ୍ନ ରାଜ୍ୟରେ ମୌଳିକ ଛଅଟି ଦ୍ରବ୍ୟ ଉପଭୋଗରୁ ବଂଚିତ ଥିବା ପରିବାରର ଅନୁପାତରେ ତାରତମ୍ୟ ରହିଛି। ଗ୍ରାମାଞ୍ଚଳରେ ହିନ୍ଦୁ ମୁସଲମାନ ପରିବାର ମଧ୍ୟରେ ଉପଭୋଗର ତାରତମ୍ୟ ଦୃଷ୍ଟିଗୋଚର ହେଉଛି। ତୁଳନାତ୍ମକ ଭାବେ ୯୦ଦଶକରେ ବଂଚିତ ପରିବାର ଅନୁପାତ କମିଛି। ବିହାର ଓ ଓଡ଼ିଶାରେ ଅନୁପାତ ସର୍ବାଧିକ।

(୨)

ମଣିଷ ଜୀବନରେ କେତେ ପ୍ରକାର ସୁଖ ଥାଏ ଯାହା ଧନୀ ଗରିବ, ରଜା ପ୍ରଜା ଉଚ୍ଚନୀଚ ଭେଦ ଭାବ ମାନେ ନା। ସେ ସୁଖ ମଧ୍ୟରେ ଶ୍ରେଷ୍ଠତମ ହେଉଛି ନାରୀ ପୁରୁଷର ସଂଗମ ଓ ବାତ୍ସଲ୍ୟ। ଗୁଲୁଗୁଲିଆ ହର୍ଷୋତ୍‌ଫୁଲ୍ଲ ସନ୍ତାନଟିକୁ ଦେଖି ଶିକ୍ଷିତ ଅଶିକ୍ଷିତ ସବୁ ମାଆ ଗାଇ ଉଠେ।

"କଇଁଥ କାକୁଡ଼ି ନଳିତାପିତା :
ବାବୁଲି ହେବ ମୋ ଜଗତଜିତା
କହିବେ ରେ ଲୋକେ କିଏ ତା ମାତା।"

ନୀରୋଗ ହୃଷ୍ଟପୁଷ୍ଟ ପିଲାଟିକୁ ଦେଖିଲେ ଆନନ୍ଦ ଉଚ୍ଛ୍ୱାସ ମାଆ ମନରୁ ସ୍ୱତଃସ୍ଫୂର୍ତ୍ତ ବାହାରି ଆସେ। ମାତ୍ର ଆମ ଦେଶ ଓ ରାଜ୍ୟରେ ବିଶେଷତଃ ଗାଁ ଭୂଇଁରେ କେତେ ପିଲା ଆଶାନୁରୂପ ଶକ୍ତ ସବଳ ସ୍ଫୁର୍ତ୍ତିବାନ ଅଛନ୍ତି ? ସ୍ୱାଧୀନତା ପ୍ରାପ୍ତିର ପୂର୍ବେ ତ ଏ ସଂକ୍ରାନ୍ତରେ କିଛି ସଠିକ୍ ଖବର ଆମ ପାଖରେ ନ ଥିଲା, ଗବେଷଣାଭିତ୍ତିକ ସଂବାଦ ନ ଥିଲେ ହେଁ ସାଧାରଣରେ ଦୃଶ୍ୟମାନ ଚେହେରା ଦେଖି ଜାଣି ହେଉଥିଲା, ଏ ଦେଶର ଅଧିକାଂଶ ପିଲା, ଓ ବୟସ୍କ ଲୋକ ପୁଷ୍ଟିହୀନ ଖାଦ୍ୟଭାବରେ ଆକ୍ରାନ୍ତ, ରୁଗ୍ଣ କଂକାଳସାର ଯାହା ଦେଶପ୍ରେମୀ ମାନବବାଦୀ କବିଙ୍କୁ ଉଦ୍‌ବୁଦ୍ଧ କରିଥିଲା, ଲେଖିବାକୁ ଉତ୍ସାହଦୀପ୍ତ କବିତା 'ଉଠ କଙ୍କାଳ ଉଠ'।

ଏବେ ଭାରତ ସରକାର ଓ ବେସରକାରୀ ଗବେଷଣା ପ୍ରତିଷ୍ଠାନ ସର୍ବେକ୍ଷଣ ମାଧ୍ୟମରେ ଦେଶର ଶିଶୁ ଓ ମାତାପିତାଙ୍କ ସ୍ୱାସ୍ଥ୍ୟ ଅଧ୍ୟୟନ କରି ବହୁ ମୂଲ୍ୟବାନ ତଥ୍ୟ ଉପସ୍ଥାପନ କରୁଛନ୍ତି। ସେଗୁଡ଼ିକ ଆମ ଲୋକଙ୍କ ଦେହ ସୌଷ୍ଠବର ନିଖୁଣ ଚିତ୍ର ଦେଉଛି। ଦେଶବାସୀଙ୍କ ପୁଷ୍ଟିହୀନତା ଆବଶ୍ୟକ ପୁଷ୍ଟିକର ଖାଦ୍ୟ ବିନା ରୁଗ୍ଣାବସ୍ଥା କେବଳ ପରିମିତ କେଲୋରି ଅଭାବ ଯୋଗୁଁ ଘଟେନାହିଁ। ଆବଶ୍ୟକ ପରିମାଣ କେଲୋରି ଯୋଗାଉ ଥିବା ଖାଦ୍ୟ ପରିମାଣ ମିଳୁଥିଲେ ହେଁ, ସେଥିରୁ ଶକ୍ତି (Energy) ନିଃସୃତ ହୋଇ ଶରୀରରେ ମିଶିବା ପାଇଁ ନିରାପଦ ପାନୀୟ ଜଳ, ସ୍ୱାସ୍ଥ୍ୟ ପ୍ରତି ଯତ୍ନ ଏବଂ ପରିବେଶର ସ୍ୱଚ୍ଛତା ଦରକାର ବୋଲି ସ୍ୱାସ୍ଥ୍ୟବିଶେଷଜ୍ଞ ଡ଼କ୍ଟର ସୁଖାଟ୍‌ମେ (Sukhatme) ମତ ଦିଅନ୍ତି।

ଅବଶ୍ୟ ଗୁରୁତର ପୁଷ୍ଟିହୀନତା ଖାଦ୍ୟାଭାବ ଯୋଗୁଁ ଘଟେ, ମାତ୍ର ସାମାନ୍ୟ ଓ ମାମୁଲି ଧରଣର ପୁଷ୍ଟିହୀନତା ପ୍ରତିକୂଳ ପରିବେଶ ହେତୁ ଘଟିପାରେ। ଖାଦ୍ୟାଭାସ କେତେଦୂର ବ୍ୟକ୍ତିର ପୁଷ୍ଟି ସାଧନ କରିଛି ତାହା ତାର ଶାରୀରିକ ଗଠନ, ଜୀବ-ରାସାୟନିକ ଓ ଶରୀର-କ୍ରିୟାରୁ ଜାଣି ହୁଏ। ଆମର ଜାତୀୟପୁଷ୍ଟି ପରିଚ୍ଛଳନା ବ୍ୟୁରୋ। (National Nutrition Monitoring Bureau (NNMB) ୧୯୭୫-୭୯, ୧୯୮୯-୯୦ ଓ ୧୯୯୬-୯୭ରେ ନଅଟି ରାଜ୍ୟର ଜାତୀୟ ନମୁନା ସର୍ଭେ ଉପରେ ଭିତ୍ତିକରି ଏ ବିଷୟରେ ଉପାଦେୟ ଅଧ୍ୟୟନ କରିଛି। ଜାତୀୟ ପରିବାର ସ୍ୱାସ୍ଥ୍ୟ ସର୍ଭେ (୧୯୯୨-୯୯ ଓ ୧୯୯୮-୯୯)ରୁ ମଧ୍ୟ ଏ ସଂକ୍ରାନ୍ତରେ ବହୁ ତଥ୍ୟ ମିଳେ। ଜାତୀୟ ପୁଷ୍ଟିପରିଚ୍ଛଳନା ବ୍ୟୁରୋର ଅଧ୍ୟୟନରୁ ଜଣାଯାଏ ଯେ ସମଗ୍ର ଦେଶରେ ୨୦୦୦-୦୧ରେ ୪୭.୭ ପ୍ରତିଶତ ଶିଶୁ ଆବଶ୍ୟକ ପୁଷ୍ଟିସାର ପାଉ ନଥିଲେ। ଏହି ଅନୁପାତ ଗରିବଙ୍କ ଅନୁପାତଠାରୁ ଯଥେଷ୍ଟ ଅଧିକ। ତେଣୁ କେବଳ ଦାରିଦ୍ର୍ୟ ପୁଷ୍ଟିହୀନତାର କାରଣ ନୁହେଁ। ଜାତୀୟ ପରିବାର ଓ ସ୍ୱାସ୍ଥ୍ୟ ସର୍ଭେ (NFHS) ରୁ ଜଣାଯାଏ ଯେ ୧୯୯୮-୯୯ରେ ଭାରତର ଗ୍ରାମାଞ୍ଚଳରେ ୨୦.୩ ଶତାଂଶ ଶିଶୁ ଗୁରୁତର ପୁଷ୍ଟିହୀନତା ଦ୍ୱାରା ଆକ୍ରାନ୍ତ ଥିଲେ ୩୦.୨ ଶତାଂଶ ମାମୁଲି ଭାବେ ଆକ୍ରାନ୍ତ ଥିଲେ। ଏପରି ମୋଟ ପୁଷ୍ଟିହୀନ ଶିଶୁଙ୍କ ଅନୁପାତ ଥିଲା। ୫୦.୫ ପ୍ରତିଶତ। ସହରାଞ୍ଚଳରେ ୧୨ ଶତାଂଶ ଶିଶୁ ଗୁରୁତର ଭାବେ ପୁଷ୍ଟିହୀନ ଓ ୨୭ ପ୍ରତିଶତ ସାଧାରଣ ଭାବେ ପୁଷ୍ଟିହୀନ ଥିଲେ। ମୋଟ ଅନୁପାତ ହେଉଛି ୩୯ ପ୍ରତିଶତ। ପ୍ରାୟ ଅର୍ଦ୍ଧେକ ଶିଶୁ ଏ ଦେଶରେ

ସେମାନଙ୍କର ଶାରୀରିକ ଓ ମାନସିକ ସମ୍ଭାବନାରେ ପହଞ୍ଚି ପାରନ୍ତି ନାହିଁ । ଭାରତର ଶିଶୁ ସଂଖ୍ୟା ସମଗ୍ର ବିଶ୍ୱର ଶିଶୁ ସଂଖ୍ୟାର ୨୦ ପ୍ରତିଶତ ହେଲେ ହେଁ ପୁଷ୍ଟିହୀନ ଶିଶୁଙ୍କର ୪୦ପ୍ରତିଶତ କେବଳ ଭାରତରେ।

ବିଭିନ୍ନ ରାଜ୍ୟ ମଧ୍ୟରେ ଓଡ଼ିଶା ବିହାର ଓ ମଧ୍ୟପ୍ରଦେଶରେ ପୁଷ୍ଟିହୀନ ଶିଶୁ ଅନୁପାତ ଅଧିକ। କେରଳ, ତାମିଲନାଡୁ ଓ ଆନ୍ଧ୍ରପ୍ରଦେଶରେ ପୁଷ୍ଟିହୀନ ଶିଶୁ ଅନୁପାତ ଯଥାକ୍ରମେ ୨୭.୪, ୩୭.୭ ଓ ୩୮.୭ ପ୍ରତିଶତ ଥିଲାବେଳେ ଓଡ଼ିଶା,ବିହାର ଓ ମଧ୍ୟପ୍ରଦେଶରେ ଯଥାକ୍ରମେ ୫୫.୨, ୫୫.୦ ଏବଂ ୫୫.୭ ପ୍ରତିଶତ ଥିଲା। ଓଡ଼ିଶାର ଗ୍ରାମାଞ୍ଚଳରେ ୫୬.୪ ପ୍ରତିଶତ ଓ ସହରାଞ୍ଚଳରେ ୪୫.୫ ପ୍ରତିଶତ ଶିଶୁ ପୁଷ୍ଟିହୀନ। ଆଦିବାସୀମାନଙ୍କ ମଧ୍ୟରେ ପୁଷ୍ଟିହୀନତା ଅଧିକ। ମହାରାଷ୍ଟ୍ରର ଆଦିବାସୀ ଅଞ୍ଚଳରେ ୧୯୯୮-୯୯ରେ ୭୩.୬ ପ୍ରତିଶତ ଶିଶୁ ପୁଷ୍ଟିହୀନ ଥିଲେ।

ଜାତୀୟ ପୁଷ୍ଟି ପରିଲକ୍ଷନା ବ୍ୟୁରୋର ଅଧ୍ୟୟନରୁ ଜଣାଯାଏ ଯେ ୨୦୦୦-୦୧ ମସିହାରେ ୯ଟି ରାଜ୍ୟରେ ଗ୍ରାମାଞ୍ଚଳରେ ଅବିରତ ଶକ୍ତି ଅଭାବ (Chronic Energy Deficiency - ED) ଭୋଗୁଥିଲେ ୩୭.୪ ପ୍ରତିଶତ ପୁରୁଷ ଓ ୩୯. ୪ ପ୍ରତିଶତ ମହିଳା। ନିମ୍ନମାନର ଖାଦ୍ୟ ଓ ପିଲାଦିନର ସଂକ୍ରାମକ ରୋଗ ପୁଷ୍ଟିହୀନତାର କାରଣ। କେରଳର ଗ୍ରାମାଞ୍ଚଳରେ ମାତ୍ର ୨୨.୪ ପ୍ରତିଶତ ପୁରୁଷ ଓ ୧୮.୭ ପ୍ରତିଶତ ନାରୀ ଶକ୍ତି ଅଭାବ ଭୋଗ କରନ୍ତି। ଓଡ଼ିଶାର ଏହି ଅନୁପାତ ଯଥାକ୍ରମେ ୩୮.୬ ଓ ୪୬.୦ ପ୍ରତିଶତ ପଶ୍ଚିମବଂଗରେ ୪୦.୫ ଓ ୪୫.୯ ପ୍ରତିଶତ। ୯ଟି ବଡ଼ ରାଜ୍ୟର ଗ୍ରାମାଞ୍ଚଳରେ ୩୭.୪ ପ୍ରତିଶତ ପୁରୁଷ ଓ ୩୯.୪ ପ୍ରତିଶତ ନାରୀ ଶକ୍ତି ଅଭାବ ଦ୍ୱାରା ଆକ୍ରାନ୍ତ। କେରଳ ମଧ୍ୟପ୍ରଦେଶ, ଗୁଜୁରାଟ ବାଦ ଦେଲେ ଅନ୍ୟ ୬ଟି ରାଜ୍ୟ ତାମିଲନାଡୁ, କର୍ଣ୍ଣାଟକ, ପଶ୍ଚିମବଂଗ, ଆନ୍ଧ୍ରପ୍ରଦେଶ, ମହାରାଷ୍ଟ୍ର, ଓଡ଼ିଶାରେ ପୁରୁଷ ଅପେକ୍ଷା ନାରୀମାନେ ଅଧିକ ସଂଖ୍ୟାରେ ଶକ୍ତିର ଅଭାବରେ ଆକ୍ରାନ୍ତ। ଜାତୀୟ ପରିବାର ସ୍ୱାସ୍ଥ୍ୟ ସର୍ଭେରୁ ଜଣାଯାଏ ୩୬ ପ୍ରତିଶତ ବିବାହିତା ନାରୀ କ୍ରମାଗତ ଶକ୍ତିର ଅଭାବ ଭୋଗ କରନ୍ତି। ଦାରିଦ୍ର୍ୟ ସହ ପୁଷ୍ଟିହୀନତାର ସଂପର୍କ ଥିଲେ ହେଁ ଦାରିଦ୍ର୍ୟ ଏକମାତ୍ର କାରଣ ନୁହେଁ। ପରିବେଶର ସୁସ୍ଥାବସ୍ଥା ମଧ୍ୟ ଅନ୍ୟ ଏକ କାରଣ। ତେବେ ଅନୁଧ୍ୟାନରୁ ଜଣାଯାଇଛି ଯେ ୧୦ ପ୍ରତିଶତ ଦାରିଦ୍ର୍ୟ କମିଲେ ପୁଷ୍ଟିହୀନତା ୩ ପ୍ରତିଶତ ଓ ଗୁରୁତର ପୁଷ୍ଟିହୀନତା ୭ ପ୍ରତିଶତ କମିଯାଏ।

ସବୁଜ ପରିବା ଖାଇଲେ ଶିଶୁଙ୍କର ପୁଷ୍ଟିହୀନତା ହ୍ରାସ ପାଏ। ମାଆମାନଙ୍କର ଶିକ୍ଷା ଓ ଗର୍ଭାବସ୍ଥାରେ ମାଆର ଚିକିତ୍ସା ପିଲାର ପୁଷ୍ଟିହୀନତା କମାଇଦିଏ। କାମ କରା ନାରୀର ଶିଶୁ ପୁଷ୍ଟିହୀନ ହେବାର ସମ୍ଭାବନା ଅଧିକ।

ଓଜନ ଭିତ୍ତିରେ ୨୦-୨୧ ପ୍ରତିଶତ ଗ୍ରାମୀଣ ଶିଶୁ ଗୁରୁତର ଭାବେ ପୁଷ୍ଟିହୀନ, ୩୦-୩୯ ପ୍ରତିଶତ ସାଧାରଣତ ଭାବେ ପୁଷ୍ଟିହୀନ। ବୟସାନୁସାରେ ଉଚ୍ଚତା ବିଚାରକୁ ନେଲେ ଦେଖାଯାଏ ଯେ ୨୫ ପ୍ରତିଶତ ଗୁରୁତର ଭାବେ ଓ ୨୪ ପ୍ରତିଶତ ସାଧାରଣ ଭାବେ ପୁଷ୍ଟିହୀନ।

ଗୁରୁତର ପୁଷ୍ଟିହୀନତା ଦୂର କରିବା ଆମର ସର୍ବପ୍ରଧାନ ଓ ପ୍ରଥମ ଲକ୍ଷ୍ୟ ହେବା ଉଚିତ। ଏଥିପାଇଁ ଖାଦ୍ୟ ବଦଳରେ କାମ ଯୋଜନାକୁ ବ୍ୟାପକ କରିବାକୁ ହେବ। ବୟସ୍କ ଲୋକଙ୍କ ଶକ୍ତିର ଅଭାବ ଶୈଶବ କାଳର ଓ ମାଆର ପୁଷ୍ଟିହୀନତା ଯୋଗୁଁ ଘଟୁଥିବାରୁ ଶିଶୁ ଓ ମାଆର ସ୍ୱାସ୍ଥ୍ୟ ପ୍ରତି ଅଧିକ ଯତ୍ନ ନେବାକୁ ହେବ। ଦାରିଦ୍ର୍ୟ ଦୂରୀକରଣ କ୍ଷେତ୍ରରେ ଆମ ଦେଶ ଯଥେଷ୍ଟ ସଫଳତା ହାସଲ କରିଥିଲେ ହେଁ ସେହି ତୁଳନାରେ ପୁଷ୍ଟିହୀନତା ବା ଶକ୍ତି-ଅଭାବ ଦୂର କରିବାକୁ ସକ୍ଷମ ହୋଇନାହିଁ। ଆର୍ଥିକ ଅବସ୍ଥାର ଉନ୍ନତି ସହ ସ୍ୱାସ୍ଥ୍ୟସେବା ଓ ପରିବେଶର ସ୍ୱଚ୍ଛତାର ପ୍ରସାର ଦିଗରେ ସଯତ୍ନ ଦୃଷ୍ଟିଦେବାକୁ ପଡ଼ିବ।

ଡ଼ି.ଏନ. ରାଓ ଏବଂ ଆର୍.ଏଲ.ଭାଟ୍‌ଙ୍କ ଅଧ୍ୟୟନ ଅନୁସାରେ ୧୯୮୯ରେ ୫୩ଟି ଦେଶ ମଧ୍ୟରେ ସ୍ୱାସ୍ଥ୍ୟର ମାନ କ୍ଷେତ୍ରରେ ଯୁକ୍ତରାଷ୍ଟ୍ର ଆମେରିକାର ସ୍ଥାନ ପ୍ରଥମ ଥିଲା ବେଳେ ଭାରତ ସ୍ଥାନ ୪୯ ତମ ଥିଲା। ମାନନିର୍ଦ୍ଧାରଣ କରାଯାଇ ଥିଲା। ଜନ୍ମବେଳେ ବଂଚିରହିବାର ସମ୍ଭାବିତ ବର୍ଷ ହଜାରରେ ମୃତ୍ୟୁ ସଖ୍ୟା ଶିଶୁ ମୃତ୍ୟୁହାର ଓ ଶିଶୁର ସ୍ୱଳ୍ପ ଓଜନ ଭିତ୍ତିରେ।

(୩)

ଗ୍ରାମାଞ୍ଚଳରେ ଅର୍ଥନୈତିକ ଅବସ୍ଥାର ଯେଉଁ ପରିବର୍ତ୍ତନ ଘଟୁଛି ସେଥିରେ ଅପେକ୍ଷାକୃତ ସ୍ୱଚ୍ଛଳ ଶିକ୍ଷିତ ପରିବାରମାନେ ଅଧିକ ଉପକୃତ ହେଉଛନ୍ତି। ଗ୍ରାମାଞ୍ଚଳରେ ଯେଉଁମାନେ ଗରିବ ଅଛନ୍ତି ସେମାନଙ୍କ ମଧ୍ୟରୁ ବେଶି ଭାଗ କ୍ଷେତ ମୂଲିଆ ଓ ନାମମାତ୍ର ଚଷା ଏବଂ ଗରିବ କାରିଗର, ବଢ଼େଇ, କମାର, କୁମ୍ଭାର ଓ ତନ୍ତୀ ଶ୍ରେଣୀର ଲୋକ। ତେବେ ଏମାନଙ୍କ ମଧ୍ୟରୁ ଅଧିକ ଉଦ୍‌ଯୋଗୀ ଲୋକ ଗ୍ରାମ ବାହାରକୁ ଯାଇ ବା ଗ୍ରାମରେ ରିକ୍ସାଟଣାଠାରୁ ଆରମ୍ଭ କରି ମରାମତି (Repairing) କାମ ଆଦି କରି ଆର୍ଥିକ ଅବସ୍ଥାର ଉନ୍ନତି କରିପାରୁଛନ୍ତି। ଗ୍ରାମାଞ୍ଚଳ ଲୋକଙ୍କର ଉପଭୋଗ ସାମଗ୍ରୀର ରୂପରେଖ ବଦଳି ଗଲାଣି। ପୂର୍ବେ କାହିଁ କେଉଁଠି ଗ୍ରାମମାନଙ୍କରେ ସ୍କୁଟର, ରେଡ଼ିଓ ଥିଲା। ଏବେ ପ୍ରୟୋଗାତ୍ମକ ଅର୍ଥନୀତି ଗବେଷଣାର ଜାତୀୟ ସଂସଦ ସର୍ଭେରୁ ଜଣାଯାଏ ଯେ ଭାରତର ମୋଟ ସାଇକେଲ, ରେଡ଼ିଓ, ସ୍କୁଟର ଓ ଟିଭିର ପ୍ରାୟ ୭୯ ପ୍ରତିଶତ ଗ୍ରାମାଞ୍ଚଳ ଲୋକେ ବ୍ୟବହାର କରୁଛନ୍ତି। ପ୍ରାୟ ୯୦ ଭାଗରୁ ଉର୍ଦ୍ଧ୍ୱ ଗ୍ରାମରେ ବିଜୁଳିବତି ଓ ସବୁଦିନିଆ ସଡ଼କର ସଂଯୋଗ ସ୍ଥାପନ ହୋଇଛି। ତେଣୁ ଗାଁମାନଙ୍କରେ ଅଧିକାଂଶ ଘରେ ଜାଳେଣି କାଠ ପରିବର୍ତ୍ତେ ଇଲେକ୍ଟ୍ରିକ୍ କିମ୍ବା ଗ୍ୟାସ ବ୍ୟବହାର ହେଉଛି। ଗାଁ ଲୋକଙ୍କର ଦୈନନ୍ଦିନ ଖାଦ୍ୟର ରୂପ ମଧ୍ୟ ବଦଳି ଗଲାଣି। ବହୁସଂଖ୍ୟକ ଲୋକ ମୁଢ଼ି ଚୁଡ଼ା ପଖାଳ ପରିବର୍ତ୍ତେ ରୋଟି ପାଉଁରୁଟି ସରୁଚକୁଳି ଖାଉଛନ୍ତି। ସହରବାସୀଙ୍କ ଭଳି ବହୁ ପରିବାରରେ ଚା, ବିସ୍କୁଟ, ବିଶେଷତଃ ପିଲାମାନଙ୍କ ପାଇଁ ସୁଦୃଶ୍ୟ ପ୍ୟାକିଙ୍ଗ୍ କରା ସୌଖୀନ ଖାଦ୍ୟ ବ୍ୟବହାର ହେଉଛି। ସଂକ୍ଷେପରେ ଗାଁଲୋକଙ୍କର ରୁଚି ପରିବର୍ତ୍ତିତ ହୋଇ ଚାଲିଛି।

ସାକ୍ଷରତା ଓ ଶିକ୍ଷାର ପ୍ରସାର, ରାସ୍ତାଘାଟର ଉନ୍ନତି, ଖାଦ୍ୟପେୟର ପରିବର୍ତ୍ତନ, ରେଡ଼ିଓ, ଟିଭି. ଏସ୍‌ଟିଡ଼ି ବୁଥ୍ ମାଧ୍ୟମରେ ବାହାର ଜଗତ ସହ ପରିଚୟ ବୃଦ୍ଧି ଗ୍ରାମ୍ୟଜୀବନ

ଧାରା ଓ ମନୋଭାବରେ ଯେ ପରିବର୍ତ୍ତନ ଆଣିବ ଏହା ଆବଶ୍ୟମ୍ଭାବୀ।

ଆମ ଦେଶର ଅନୁସୂଚିତ ଜାତି ଓ ଜନଜାତିର ଲୋକମାନେ ପୂର୍ବାପେକ୍ଷା ଅଧିକ ଶିକ୍ଷିତ ଓ ସଚେତନ ଓ ସଂଘବଦ୍ଧ ହୋଇଯିବାରୁ ଅସ୍ପୃଶ୍ୟତା ଓ ଜାତିଗତ ଘୃଣା ବହୁ ପରିମାଣରେ ହ୍ରାସ ପାଇଛି। ନିମ୍ନଜାତିର ଲୋକଙ୍କର ଉଚ୍ଚଜାତିର ଲୋକଙ୍କ ପ୍ରତି ପୂର୍ବର ଭୟ ଓ ଭକ୍ତି ନାହିଁ। ଉତ୍ତରପ୍ରଦେଶର ବାଲ୍ମୀକ ଓ ବେହରିଜ ଜାତିର ଲୋକ, ତାମିଲନାଡୁର ଚକ୍‌ଲିୟାର, ପରିୟାର ଓ ପଲ୍ଲାର ଓଡ଼ିଶାର ହାଡ଼ି, ପାଣ, କଣ୍ଡରା ଓ ଧୋବା ଆଜ ଉଚ୍ଚଜାତିର ଲୋକଙ୍କୁ ଭୟ କିମ୍ବା ଅଯଥା ଭକ୍ତି କରୁନାହାନ୍ତି। ସ୍ୱାଧୀନତାର ଠିକ୍ ପରବର୍ତ୍ତୀ ଦଶକରେ କୃଷି ସମସ୍ୟା ଓ କୃଷକ ସଂଗଠନ ରାଜନୀତି କ୍ଷେତ୍ରରେ ଯେପରି ଆକର୍ଷଣୀୟ ବିଷୟ ତାହା ବର୍ତ୍ତମାନ ହୋଇନାହିଁ। କ୍ଷେତ ମୂଲିଆଙ୍କ ସଂଗଠନ ବିଭିନ୍ନ ରାଜନୈତିକ ଦଳର ଟ୍ରେଡ୍‌ୟୁନିୟନ୍‌ର ଆଗ୍ରହର ବିଷୟ ହୋଇ ରହିନି। ସମ୍ଭବତଃ କ୍ଷୁଦ୍ର ଚାଷୀଙ୍କର ଅର୍ଥନୈତିକ ପ୍ରଭାବ ହ୍ରାସ ଓ କ୍ଷେତମୂଲିଆଙ୍କର ଅଣ କୃଷିକ୍ଷେତ୍ରରେ ନିଯୁକ୍ତି ସଂଧାନ ଚାଷୀ ଓ ଚାଷମୂଲିଆଙ୍କୁ ରାଜନୀତିର ଏକ ଶକ୍ତିଶାଳୀ ଅଂଗ ରୂପେ ବଜାୟ ରଖିନାହିଁ। ଗ୍ରାମାଞ୍ଚଳର ବଡ଼ଚାଷୀଙ୍କୁ ନେଇ ମହେନ୍ଦ୍ର ସିଂ ଟିକାୟତ ଓ ନାଞ୍ଜୁ ଦାସାମୀ ସଂଗଠନ କରିଛନ୍ତି। ସରକାରୀ ବା ବେସରକାରୀ ଚାକିରିର ଆକର୍ଷଣ କୃଷିକୁ ପଛକୁ ଠେଲି  ଦେଇଛି। ଦିନ ଥିଲା ଯେତେବେଳେ ଉର୍ଦ୍ଦୁ କବି ଘାଘଙ୍କ ପ୍ରସିଦ୍ଧ ପଂକ୍ତି କୃଷିର ଭୂୟସୀ ପ୍ରଶଂସା କରୁଥିଲା: "ଉତ୍ତମ ଖେତି ମଧମ ବାଆନ୍ ନିଷିଦ୍ଧ ଚାକ୍‌ରି ।" ବର୍ତ୍ତମାନ ଗାଁ ଲୋକେ କହୁଛନ୍ତି "ଉତ୍ତମ ଚାକ୍‌ରି ମଧମ ବାଆନ୍ ନିକୃଷ୍ଟ କୃଷି ଭିଖ୍ ମହାନ୍" ମଣ୍ଡଳ କମିଶନ କାର୍ଯ୍ୟକାରୀ ହେବା ଘଟଣା ଅନଗ୍ରସର କୃଷକ ଶ୍ରେଣୀକୁ ଚାକିରି ଆଡ଼କୁ ଆକର୍ଷି ଆଣିଛି। କୃଷି ପ୍ରତି ଅବହେଳା, ଜାତିଭେଦର କଠୋରତା ହ୍ରାସ ଉଚ୍ଚଜାତି ଓ ଧନୀଙ୍କ ପ୍ରତି ସାଧାରଣରେ ଆନୁଗତ୍ୟ କ୍ଷୟ କୃଷିଭିତ୍ତିକ ଗ୍ରାମ୍ୟ ସଂସ୍କୃତିକୁ ଦୋହଲାଇ ଦେଇଛି। ରାଜନୀତିର ବିଷଚକ୍ରରେ ଲୋକସଂଖ୍ୟା ଭିତ୍ତିରେ ଜାତିର ପ୍ରାଧାନ୍ୟ ବଢ଼ିଛି। ଆଞ୍ଚଳିକ ତଥା ଜାତୀୟ ରାଜନୈତିକ ଦଳଗୁଡ଼ିକ ଗ୍ରାମବାସୀଙ୍କ ସମର୍ଥନ ଲାଭ ପାଇଁ ଜାତିକୁ ଆଧାର କରି ପ୍ରାର୍ଥୀ ମନୋନୟନ ଓ ନିର୍ବାଚନ ପ୍ରଚାର ଚଳାଇଛନ୍ତି। ସାମଗ୍ରିକ ଭାବେ କୃଷି ତଥା ଗ୍ରାମ୍ୟ ଅର୍ଥନୀତିକୁ ମୁଖ୍ୟ ଆଧାର କରି ସୁଚିନ୍ତିତ ରାଜନୈତିକ ଦର୍ଶନ ବା ଆଭିମୁଖ୍ୟ କୌଣସି ରାଜନୈତିକ ଦଳଠାରେ ପରିଦୃଶ୍ୟ ହେଉନାହିଁ। ସମ୍ଭବତଃ ୧୯୭୭-୮୦ର ଜନତା ଦଳର ଚରଣ ସିଂହ ଏ କ୍ଷେତ୍ରରେ ଶେଷ ପ୍ରଧାନ ପ୍ରବକ୍ତା।

ବିଭିନ୍ନ ବୃତ୍ତି ସଂପର୍କରେ ଗ୍ରାମବାସୀଙ୍କର ଉଚ୍ଚମନ୍ଦ ଭ୍ରାନ୍ତ ଧାରଣା କ୍ରମଶଃ ଭଙ୍ଗିଯାଉଛି। ବୃତ୍ତି କ୍ଷେତ୍ରରେ ଜାତିଗତ ପାର୍ଥକ୍ୟ ବା ଚିନ୍ତା ଆଉ ପ୍ରଯୁଜ୍ୟ ହେଉନାହିଁ। ଗ୍ରାମର ଧନୀ ଚାଷୀ ଓ ଅନ୍ୟ ଧନିକ ଶ୍ରେଣୀର ଲୋକ ସହରରେ ମଧ ଆସ୍ଥାନ ଜମାଇବାକୁ ଚାହୁଁଛନ୍ତି। କେତେକ ଉଭୟ ସହର ଓ ଗ୍ରାମରେ ପ୍ରାସାଦ ନିର୍ମାଣ କରି ଉଭୟ ସ୍ଥାନରେ ଜୀବନଯାପନର ଆନନ୍ଦ ଲାଭ କରିବା ସଂଗେ ସଂଗେ ନିଜ ବ୍ୟକ୍ତିତ୍ୱ - ସାମାଜିକ ରାଜନୈତିକ ପ୍ରଭାବ ବିସ୍ତାର କରିବାକୁ ଚାହୁଁଛନ୍ତି। ଫଳରେ ଗ୍ରାମ ଓ ସହର ମଧ୍ୟରେ ଆଦାନପ୍ରଦାନ ଓ

ସଂପର୍କ ନିବିଡ଼ତର ହୋଇ ଉଠୁଛି । ତେଣୁ କୃଷିକୁ କେନ୍ଦ୍ର କରି ଗଢ଼ି ଉଠିଥିବା ଗ୍ରାମ୍ୟ ସଂସ୍କୃତି ସ୍ଥିର ହୋଇରହିନି । ଅଣକୃଷି କ୍ଷେତ୍ରରେ ସାଫଲ୍ୟ ଅର୍ଜନ କରିପାରି ନଥିବା ଲୋକ କୃଷିକୁ ଶେଷ ଆଶ୍ରୟ ରୂପେ ବରଣ କରିଛି ଏବଂ ଏଥିରୁ ଦୁଃଖଦ ସନ୍ତୋଷ ଲାଭ କରୁଛି । ଦୀପଙ୍କର ଗୁପ୍ତାଙ୍କ ମତରେ ଗ୍ରାମୀଣ ଜନତା ନିସ୍ତେଜ-ରକ୍ତହୀନ । ଗ୍ରାମ୍ୟ ଅର୍ଥନୀତି ନିଷ୍ପ୍ରାଣ, କି ଧନୀ କି ଗରିବ ଗାଁ ଛାଡ଼ି ସହରକୁ ସମ୍ଭବ ହେଲେ ଦେଶ ବାହାରକୁ ଚାଲିଯିବାକୁ ଉଦ୍ୟମ କରୁଛନ୍ତି ।

ପ୍ରଫୁଲ୍ଲ ମହାନ୍ତି ତାଙ୍କ ବହି My Village and my Life ରେ ଶୈଶବକାଳର ଗାଆଁର ଶାନ୍ତ ସୁନ୍ଦର ପରିବେଶ ଏବଂ ସରଳ ଜୀବନର ଚିତ୍ର ଦେଇଥିଲେ । ୨୦ ବର୍ଷ ପରେ ତାଙ୍କ ପ୍ରଣୀତ ପୁସ୍ତକ Changing Villager Changing Life ରେ ପରିବର୍ତ୍ତନର ଚିତ୍ର ଦେଲେ । ଜଗତୀକରଣ ଓ ମହାବାତ୍ୟା କିପରି ଗ୍ରାମ୍ୟ ପରିବେଶକୁ ବଦଳାଇ ଦେଇଛି ବର୍ଣ୍ଣନା କରିଛନ୍ତି । ଅତୀତରେ ଗ୍ରାମମାନଙ୍କରେ ରାସ୍ତାଘାଟ ଡାକ୍ତରଖାନା ନ ଥିଲା । ଅଭାବ ଅନଟନ ଓ ରୋଗ ବ୍ୟାପକ ଥିଲା । ଗାଁରେ ସେ ଶିଖିଥିଲେ ଲୋକଙ୍କ ସହ ଓ ପ୍ରକୃତି ସହ ସଂପର୍କ ରଖିବାର ମୂଲ୍ୟ । ହାତର ସୃଜନୀ ଶକ୍ତି ସେ ଶିଖିଥିଲେ ଗାଁରୁ । ଏବେ ଲୋକେ ହାତ ଠାରୁ ଯନ୍ତ୍ର ଉପରେ ଅଧିକ ନିର୍ଭର କରୁଛନ୍ତି । ଗ୍ରାମରେ ଅର୍ଥନୈତିକ ଦର୍ଶନ ଯାହା ଥିଲା ତାହା ଏବେ ନାହିଁ, ଗାଁ ଲୋକେ ଯେତେ ଅଧିକ ପାରାଯାଏ ଉତ୍ପାଦନ କରୁଥିଲେ, କମ୍ ବ୍ୟୟ କରୁଥିଲେ ଏବଂ ନଷ୍ଟ କରୁ ନଥିଲେ । ଗାଁରେ ଯାନିଯାତରା ଥିଲା । ଋତୁ ପରିବର୍ତ୍ତନ ସହ ପୂଜାର୍ଚ୍ଚନା ଯାତ୍ରା ଉତ୍ସବ ବଦଳୁ ଥିଲା । ପ୍ରକୃତିଭିତ୍ତିକ ସଂସ୍କୃତି ଆଉ ଦିଶୁନାହିଁ । ଆମେ ପ୍ରକୃତିର ବିସ୍ମୟକର ପ୍ରଭାବ ସଂପର୍କରେ ସ୍କୁଲକଲେଜରେ ଶିଖୁଛୁ । କିନ୍ତୁ ପୂର୍ବେ ଲୋକେ ତା ଅଂଗେ ଅଂଗେ ଅନୁଭବ କରୁଥିଲେ । ଗାଁଲୋକଙ୍କ ପୃଥିବୀ ଆଉ ନାହିଁ । ପୂର୍ବର ଗ୍ରାମ ଆଉନାହିଁ । ତଥାପି ପ୍ରକୃତିର ଆକର୍ଷଣ ଓ ମହାତ୍ମ୍ୟ ନୂତନ ପ୍ରଯୁକ୍ତି ଲୋପ କରିପାରିବ ନାହିଁ । ତେଣୁ ପ୍ରଫୁଲ୍ଲ ମହାନ୍ତିଙ୍କ ଅଭିମତ ତାତ୍ପର୍ଯ୍ୟପୂର୍ଣ୍ଣ । ସେ କହନ୍ତି: "Although the details of that way of life can not be retrieved, the inspiration can. The inspiration is the best hope for the future of the world - The creativity of hands, the inner resources of human beings, life as a celebrations of humanity not of industrial goods. There is nothing romantic or nostalgic about this, if these values can not be transmitted to the future, there will not be one (Village Tales republished, 2004)

ଅତୀତ ଗ୍ରାମ୍ୟ ଜୀବନର ମାଧୁରୀ ଆଉ ଫେରି ଆସିବ ନାହିଁ ସତ, ତେବେ ପ୍ରେରଣା ତାର ଭୁଲି ହେବନି । ଏହି ପ୍ରେରଣା ହିଁ ଭବିଷ୍ୟତ ବିଶ୍ୱର ଶ୍ରେଷ୍ଠ ଆଶା । ହାତର ସର୍ଜନାତ୍ମକ କଳା, ମଣିଷର ଅନ୍ତର୍ନିହିତ ଶକ୍ତି ହିଁ ମାନବ ଜାତିର ଶ୍ରେଷ୍ଠ ସଂପଦ, ଶିଳ୍ପଜାତ ଦ୍ରବ୍ୟ ନୁହେଁ । ଏଥିରେ ରୋମାଞ୍ଚକର ବା ସ୍ମୃତିଚାରଣ ଆସକ୍ତି କିଛି ନାହିଁ । ଏହା ଏକ ମୂଲ୍ୟବୋଧ, ଏ ମୂଲ୍ୟବୋଧ ଯଦି ଭବିଷ୍ୟତକୁ ସଂକ୍ରମିତ ନହୁଏ, ଆଉ କିଛି ହେବନି । ପ୍ରଫୁଲ୍ଲ ମହାନ୍ତିଙ୍କ

ଭଳି ଆମେ ଯେଉଁମାନେ ଗାଁରେ ଜନ୍ମ ହୋଇ ସୁଖ ଦୁଃଖ ହସକାନ୍ଦ, ମାଢ଼ ଗୋଳ ପଢ଼ା ଖେଳ ଭିତରେ ଶୈଶବ କଟାଇଛେ ନିଶ୍ଚିତ ରୂପେ ମନେପକାଇବା ହଜିଲା ଦିନର ଅଭୁଲା କଥା,ସ୍ମୃତିପଟରେ ଭାସିଯିବ ଚଳମାନ ଛଅରତୁର ବର୍ଣ୍ଣାଢ୍ୟ ଶୋଭା ଏବଂ ଉପଲବ୍ଧି କରୁଥିବା ଫକିର ମୋହନଙ୍କ ଭଳି :-

"ସତ କଥା ନାହିଁ ତହିଁ ବିଶେଷ ସଂପଦି
ମାତ୍ର ଅଛି ତହିଁ ଚିର ବିମୋହିନୀ ଶକ୍ତି।"

ଯାନ୍ତିକ ଓ ଭୌତିକ ପରବିର୍ତ୍ତନ ନିଶ୍ଚିତ ରୂପେ ଆମ ଦେଶର ଜନସଂଖ୍ୟାରେ ଗରିବଙ୍କ ଅନୁପାତ ହ୍ରାସ କରିଛି। ତଥାପି ଜନସଂଖ୍ୟା ବୃଦ୍ଧି ହେତୁ ଏବେ ପ୍ରାୟ ୩୨ କୋଟି ଲୋକ ଗରିବ। ବିପିଏଲ୍ କାର୍ଡ ପାଇଥିବା ଗରିବଙ୍କ ଅନୁପାତ ମୋଟ ଜନସଂଖ୍ୟାର ୨୬ ପ୍ରତିଶତ। ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ଧନୀ ଗରିବଙ୍କ ମଧ୍ୟରେ ପାର୍ଥକ୍ୟ ବଢ଼ିଚାଲିଛି। ଏହି ପାର୍ଥକ୍ୟ ଜନସାଧାରଣଙ୍କ ମଧ୍ୟରେ ଭାତୃତ୍ୱ ପରିବର୍ତ୍ତେ ଈର୍ଷା ବିଦ୍ୱେଷ ବୃଦ୍ଧି କରୁଛି। ବିଦେଶାଗତ ଓ ଦେଶର ଉତ୍ପନ୍ନ ଝକଟକ୍ୟ ପୂର୍ଣ୍ଣ ବିଳାସବ୍ୟସନ ଦ୍ରବ୍ୟ ସବୁସ୍ତରର ଲୋକଙ୍କ ମନରେ ଉପଭୋଗର ଲାଳସାକୁ ତୀବ୍ର କରି ତୋଳୁଛି। ଏହି ଲାଳସା ପରିତୃପ୍ତ ନ ହେଲେ, ମନରେ ଦୁଃଖ, ଅସ୍ଥିରତା,ହିଂସା ସୃଷ୍ଟି ହେଉଛି। ଶାସନ ଓ ସମାଜ ପ୍ରତି ଅନୁରକ୍ତି ଓ ଆସ୍ଥା ହ୍ରାସ ପାଉଛି, ତେବେ ଗଣତାନ୍ତ୍ରିକ ଶାସନରେ ଲୋକପ୍ରତିନିଧିମାନଙ୍କ ସହଯୋଗମୂଳକ ଉନ୍ନୟନ କାର୍ଯ୍ୟକ୍ରମ ଲୋକଙ୍କ ମନରେ ଆଶା ଓ ବିଶ୍ୱାସ ସଂଚାର କରିଚାଲିଛି। ଦକ୍ଷିଣପୂର୍ବ ଏସିଆର ବିଭିନ୍ନ ଦେଶ ଓ ଚୀନ ଭଳି ଆମ ଦେଶରେ ଯେ ଦାରିଦ୍ର୍ୟ, ଅଭାବ ଅନଟନ ଓ ବେକାରି କ୍ରମଶଃ ଦୂର ହେବ ଏ ବିଶ୍ୱାସ ଜନ୍ମୁଛି। ସୁଚିନ୍ତିତ ଯୋଜନା ଓ ସୁଶାସନ ଦ୍ୱାରା ଗ୍ରାମାଞ୍ଚଳର ଆର୍ଥିକ ସାମାଜିକ ଅବସ୍ଥା ଯେ ଅଧିକ ଉନ୍ନତ ଓ ସୁଖମୟ ହେବ ଏବଂ ନୂତନ ଢାଞ୍ଚାରେ ଗ୍ରାମର ପ୍ରାକୃତିକ ସୌନ୍ଦର୍ଯ୍ୟର ପୁନରୁଦ୍ଧାର କରି ହେବ ଏହା ଚିନ୍ତା କରିବା ଅବାସ୍ତବ ହେବ ନାହିଁ। ଆସାମର କବି ଅନୁଭବ ତୁଳସୀଙ୍କ ସଂଗେ କଣ୍ଠ ମିଳାଇ ଆସ ଗାଇବା :-

"Give me that moment of dawn
heralded by chirping birds,
Give me pride, the glow of assurance
Give me a grain of humanity"

'ପକ୍ଷୀର କାକଳି ଡାକି ଆଣୁଥିବା ସକାଳଟିଏ ମୋତେ ଦିଅ,
ନିଶ୍ଚିତ ତାର ଆଲୋକ ଓ ମାନବିକତାର ଗର୍ବ ମୋତେ ଦିଅ।'



ସାହିତ୍ୟ ଓ ସମାଜବାଦ, ସାହିତ୍ୟ, ସମାଜ ଓ ଅର୍ଥନୀତି, ଶାସନ, ପ୍ରଶାସନ ଓ ପ୍ରଗତି, ପୂର୍ବାପର, ଦୃଶ୍ୟାନ୍ତର, ପ୍ରଣୟପାରିଧି, ଦୂର ଗାଆଁ ନଈ, ଶେଷବସନ୍ତର ଗୀତ, ଭୂମିପୁତ୍ର, ଭିନ୍ନ ଏକ ସୂର୍ଯ୍ୟୋଦୟ, ସିଂହାସନ, ଘୂର୍ଣ୍ଣ୍ୟାବର୍ତ୍ତ, ବିବସ୍ତ୍ର ବିଶ୍ୱକର୍ମା, ପ୍ରତିମୂର୍ତ୍ତି, ଅସ୍ତସୂର୍ଯ୍ୟ, ନିଷ୍ପେଷିତର କଥା, ବମ୍ବେରୁ ନାଇରୋବି, ଆମେରିକାରେ କିଛିଦିନ, ସମାଜ ଓ ଜୀବନ, ବିଶ୍ୱାୟନ ଏବଂ ଆମେ, ଛିନ୍ନରାଗ ଓ ଅନୁରାଗର ସମାଜ-ଅଙ୍ଗୀକାରବଦ୍ଧ ଭାବପ୍ରବଣ ଲେଖକ ।